ସାମାନ୍ୟ ସୂଚନା
ପ୍ରଫେସର ଡକ୍‌ଟର ଶରତ୍ ଚନ୍ଦ୍ର ରଥ,
ଏମ୍.ଏ., ଏମ୍.ଫିଲ୍., ପିଏଚ୍.ଡି
ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ଭୁବନେଶ୍ୱର
*ମୁଦ୍ରଣ* : ଦିବ୍ୟ ମୁଦ୍ରଣୀ, ଦିବ୍ୟ ବିହାର, ଭୁବନେଶ୍ୱର-୨

*ପ୍ରକାଶକ* : ଦିବ୍ୟ ପ୍ରକାଶନୀ, ଭୁବନେଶ୍ୱର
ପ୍ରଚ୍ଛଦ : ବିଭୁ ପ୍ରସୂନ
*ପ୍ରଥମ ପ୍ରକାଶ* : ମକର ସଂକ୍ରାନ୍ତି, ୨୦୦୫
*ପ୍ରାପ୍ତିସ୍ଥାନ* : ସ୍ନାତକୋତ୍ତର ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ଭୁବନେଶ୍ୱର
*ମୂଲ୍ୟ* : ସତୁରୀଟଙ୍କା ମାତ୍ର

**Samanya Suchana**
Dr. Sarat Chandra Rath
M.A., M. Phil., Ph.D,
Professor in Oriya,
Utkal University,Vani Vihar, Bhubaneswar.
Designing & Printing : Divya Mudrani
58/60, Divya Vihar, BBSR-2, Ph -2340136

Publisher :
Divya Prakasani, BBSR
First Edition : Makar Sankranti 2005
Available at : P.G. Department of Oriya
Utkal University, Vanivihar, Bhubaneswar
Price : Rupees Seventy Only

ମୋର ପରମାରାଧ୍ୟ
ଶ୍ରୀମା'ଶ୍ରୀଅରବିନ୍ଦଙ୍କ ପାଦ୍ମପଦ୍ମରେ
ଏହି ବହିଟିକୁ ସମର୍ପଣ କରି
ମୋ ବୋଉ
ଶ୍ରୀମତୀ ମନୋରମା ଦେବୀଙ୍କ
ହାତରେ ଅର୍ପଣ କଲି ।

॥ ବିନୀତ ॥
ଲେଖକ

# ଏହି ସଙ୍କଳନଟି ବିଷୟରେ....

ସାହିତ୍ୟ ତ କାଳକାଳରୁ ଥିଲା । ସାହିତ୍ୟ-ସଚେତନତା ଏକାବେଳେକେ ଆମ ଏବର କଥା । ସଚେତନତାରୁ ସମୀକ୍ଷା । ସାହିତ୍ୟକୁ ସେତୁକରି ଜଣେ ସମୀକ୍ଷକ ଯେତେବେଳେ ଆହୁରି ଆଗକୁ ଅନାଏ, ସେତେବେଳେ ଅତୀତଟି ମଧ୍ୟ ତାକୁ ପ୍ରାୟ ସେହି ଅନୁସାରେ ଖୁବ୍ ସ୍ୱତନ୍ତ୍ର ଭାବରେ ଦେଖାଯାଏ । ଏହି ସ୍ୱତନ୍ତ୍ର ଭାବରେ ଦେଖିବାରୁ ସ୍ୱତନ୍ତ୍ର ଭାବରେ ଏକ ମନ୍ଥନ ମଧ୍ୟ ସମ୍ଭବ ହୋଇଥାଏ । ସମୀକ୍ଷା ସେଇଥିରୁ ହିଁ ସୃଜନାତ୍ମକ ହେବାର ଅଧିକାରଟିଏ ଲାଭକରେ ।

ଡକ୍ଟର ଶରତ୍ ଚନ୍ଦ୍ର ରଥଙ୍କ ପ୍ରସ୍ତୁତ ସଂଗ୍ରହଟିରେ କିଛି ତତ୍ତ୍ୱଦୃଷ୍ଟି ରହିଛି, କିଛି ବିଶ୍ଳେଷଣାତ୍ମକ ଅନୁଧ୍ୟାନ ମଧ୍ୟ ରହିଛି । ସେ ବ୍ୟବହାର କରିଥିବା ଉପାଦାନ ତଥା ଉପକରଣଗୁଡ଼ିକ ତାଙ୍କର ସ୍ୱତନ୍ତ୍ରତା ଚିହ୍ନାଇ ଦେଉଛି । ତାଙ୍କର ଉପସ୍ଥାପନା ଓ ଶବ୍ଦ ସଂଯୋଜନା ଶୈଳୀ ମର୍ମସ୍ପର୍ଶୀ । ଆମେ ପାଠକମାନେ ନିଶ୍ଚୟ ଉପକୃତ ହେବା ।

'ସାମାନ୍ୟ ସୂଚନା' କେବଳ ସୂଚନା ମାତ୍ର ଆଦୌ ନୁହେଁ । ପାଠକରିବା ସମୟରେ ତାହା ଏକାଧିକ ଅନୁପ୍ରେରଣା ଯୋଗାଇ ଦେଉଛି ଓ ଆମକୁ ଆହୁରି ଆଗକୁ ଚିନ୍ତା କରିବା ନିମନ୍ତେ ଉତ୍ସାହିତ ବି କରୁଛି । ତାହା ହିଁ ତ ଯେକୌଣସି ପ୍ରବନ୍ଧ ପୁସ୍ତକର ଗୋଟିଏ ବୃହତ୍ ସାର୍ଥକତା ।

ଡକ୍ଟର ରଥ ଆହୁରି ଲେଖିବେ, ସାରସ୍ୱତ ଜଗତକୁ ଋଦ୍ଧିମନ୍ତ କରିବେ । ଆମକୁ ଏକ ନିବିଡ଼ତର ସାହିତ୍ୟ-ପରିଚିତି ଲାଗି ଅଧିକ ସନ୍ଦର୍ଭ ଆଣିଦେଉଥିବେ ।

ବିଶ୍ୱନୀଡ଼ମ୍
ବାପୁଜୀ ନଗର
ଭୁବନେଶ୍ୱର

**ଚିତ୍ତରଞ୍ଜନ ଦାସ**
୧୫.୦୮.୨୦୦୪

# ପଦେ ଅଧେ

ସେଦିନ କଥା ପ୍ରସଙ୍ଗରେ ବନ୍ଧୁ ଜଣକ କହିଲେ ଆଜିକାଲି ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ଯୁଗରେ ସାହିତ୍ୟ ପାଠର ବିଶେଷ ଆବଶ୍ୟକତା ନାହିଁ । ମୁଁ ତାଙ୍କୁ ପ୍ରଶ୍ନ କଲି 'କାହିଁକି ଓ କିପରି ?' ସେ ଉତ୍ତରରେ କହିଲେ – ''ସାରା ପୃଥିବୀ ଆଜି ମଣିଷର ହାତ ମୁଠାକୁ ଗୋଟାଇ ହୋଇ ଆସିଲାଣି । କାଉକୁ ଆହାର ଦେବା ବା ଚିଠିପତ୍ର ପାଇଁ ଡାକବାଲାକୁ ଅପେକ୍ଷା କରି ବସିବାର ସମୟ ଆଉ ନାହିଁ । ପୁତ୍ର କନ୍ୟାଙ୍କର ହେଉ ବା ଅନ୍ୟ କାହାର ହେଉ ଯିବା ଆସିବାରେ ବିଳମ୍ବ ଜନିତ ବ୍ୟସ୍ତତା ନିମନ୍ତେ ଅବକାଶ ଆଉ ପ୍ରାୟ ନାହିଁ । ପାଖରେ ମୋବାଇଲ ଫୋନ୍ ଅଛି ତ ଯୋଗାଯୋଗ ବ୍ୟବସ୍ଥା ଅହରହ ରହିଛି । ବିଜ୍ଞାନର ଏହି ଯୁଗରେ ସାହିତ୍ୟ ଅଲୋଡ଼ା ହୋଇଯିବା ସ୍ୱାଭାବିକ କଥା ।'' ଏ ସବୁ ଶୁଣି ଗୋଟିଏ ଉଦାହରଣ ଦେଇ ମୁଁ ସେହି ବନ୍ଧୁଙ୍କୁ କହିଲି – ''ଧରାଯାଉ, ପୁଅ ବିଦେଶରେ ଅଛି । ସେଠାରୁ ପ୍ରାୟ ପ୍ରତିଦିନ ନିଜର ଭଲମନ୍ଦ କଥା ପିତାମାତାଙ୍କୁ ଜଣାଉଛି । ଯେତେ ଜାଣିଲେ ମଧ୍ୟ ପିତାମାତାଙ୍କ ମନ ବୁଝୁନାହିଁ, ଚାରିଆଡ଼ ଖାଲିଖାଲି ଲାଗୁଛି, କେମିତିକେମିତି ଲାଗୁଛି । ଯାହା ଲାଗୁଛି ତାହା ହୁଏ ତ ବୁଝି ହେଉଛି, ମାତ୍ର ଶତ ପ୍ରତିଶତ ଅନ୍ୟକୁ ବୁଝାଇ ହେଉ ନାହିଁ । ଏହିପରି ଶତ ପ୍ରତିଶତ ବୁଝାଇ ନହେବା କଥାଟି ହିଁ ଭାବ । ଆଲୋଚ୍ୟ ଭାବଟି ବାତ୍ସଲ୍ୟ ଭାବ । ଏହାକୁ ମିଶାଇ କେତେଗୁଡ଼ିଏ ଭାବକୁ ନେଇ ମଣିଷର ମନ ଗଢ଼ା ହୋଇଛି । ମଣିଷ ଅଛି ତ ମନ ଅଛି । ମନ ଅଛି ତ ଭାବ ଅଛି । ଭାବ ଅଛି ତ ସାହିତ୍ୟ ଅଛି । ଅତଏବ ମଣିଷ ଅଛି ତ ସାହିତ୍ୟ ଅଛି ।'' ପୁଣି ଏକଥା ମଧ୍ୟ କହିଲି,'' ବିଜ୍ଞାନ ଆଦୌ ସାହିତ୍ୟର ବିରୋଧୀ ନୁହେଁ । ବିଜ୍ଞାନ ପ୍ରତିଷ୍ଠିତ ହୋଇଛି ବୋଲି ସାହିତ୍ୟ ଏକ ସ୍ୱପ୍ନ ନୁହେଁ । ବୌଦ୍ଧିକତାର ଅଭିବୃଦ୍ଧି ଘଟିଛି ବୋଲି ହୃଦୟବତ୍ତା ଏକ ମରୀଚିକା ନୁହେଁ । ବସ୍ତୁବାଦର ପ୍ରତିଷ୍ଠା ହୋଇଛି ବୋଲି ଭାବବାଦ ଏକ ଭ୍ରମ ନୁହେଁ । ସାହିତ୍ୟ ଥିଲା, ଅଛି ଓ ରହିବ । ବିଜ୍ଞାନ ସହିତ ଖୁସିରେ ରହିବ ।''

ପୁସ୍ତକଟିର ନାମ ମୁଁ ରଖିଛି ସାମାନ୍ୟ ସୂଚନା । ପୁସ୍ତକରେ ଯେଉଁ ବିଷୟରେ ଚର୍ଚ୍ଚା କରାଯାଇଛି, ସେଥିରୁ ପ୍ରତ୍ୟେକ ବିଷୟର ପରିସର ଏତେ

ବ୍ୟାପକ ଯେ ଚର୍ଚ୍ଚିତ ଅଂଶକୁ ସାମାନ୍ୟ ସୂଚନା କହିବା ସମୀଚୀନ । ପୁସ୍ତକର ପ୍ରଥମ ଭାଗରେ ସାହିତ୍ୟର ପରିଚୟ ଓ ପରିସର ସଂପର୍କରେ କିଛି ଆଲୋଚନା କରାଯାଇଛି । କେତେକ କହୁଛନ୍ତି ଯେ ପଞ୍ଚେନ୍ଦ୍ରିୟ ତୃପ୍ତିରେ ମଣିଷ ସନ୍ତୁଷ୍ଟ ହୋଇଯାଉଛି, ଆଉ ଅଧିକ କଥାରେ ତାହାର ଆଗ୍ରହ ନାହିଁ । ମୋ ବିଚାରରେ ଏକଥା ସତ୍ୟ ନୁହେଁ । ପଞ୍ଚେନ୍ଦ୍ରିୟର ତୃପ୍ତି ପ୍ରକୃତ ତୃପ୍ତିନୁହେଁ, ମନର ତୃପ୍ତି ହିଁ ପ୍ରକୃତ ତୃପ୍ତି । ମନ ହେଉଛି ପଞ୍ଚେନ୍ଦ୍ରିୟର ଅଧୀଶ୍ୱର । ସାହିତ୍ୟ ହେଉଛି ମନର ଭିତ୍ତିରେ ଚେତନଶୀଳତାର ଅଭିବ୍ୟକ୍ତି । ଅଗ୍ନି ଓ ତା'ର ଦାହିକା ଶକ୍ତି, ବରଫ ଓ ତା'ର ଶୀତଳତା, ସମୁଦ୍ର ଓ ତା'ର ଲହରୀ ପରି ଜୀବନ ସହିତ ସାହିତ୍ୟ ଓତପ୍ରୋତ ଭାବେ ଜଡ଼ିତ । ବିଶ୍ୱପ୍ରକୃତିର ଅନୁସନ୍ଧାନରେ ଉତ୍ତରିତ ବ୍ୟକ୍ତି ପ୍ରକୃତିର କଳାତ୍ମକ ଓ ମାର୍ମିକ ଉଚ୍ଚାରଣ ହିଁ ସାହିତ୍ୟ । ଏହା ଏକାଧାରରେ ମଣିଷକୁ ଅଗ୍ରଗମନ ପାଇଁ ସାମର୍ଥ୍ୟ ଦେଉଥିବା ଅନୁପ୍ରେରଣାଟିଏ ପୁଣି ବସ୍ତୁବାଦ ଓ ଭାବବାଦକୁ ଏକ ସଙ୍ଗରେ ମିଶାଇ ରଖୁଥିବା ଅଭୀପ୍ସାଟିଏ । ସମ୍ମାନାସ୍ପଦ ପାଠକବର୍ଗଙ୍କୁ ଏହି ଅନୁପ୍ରେରଣା ସମ୍ପର୍କରେ ଆଭାସ ପ୍ରଦାନ ନିମନ୍ତେ ମୁଁ ଉକ୍ତ ପୁସ୍ତକରେ କିଞ୍ଚିତ ପ୍ରୟାସ କରିଛି ।

ସାହିତ୍ୟିକ ସମାଲୋଚନା ବା ଆଲୋଚନା ବୋଲି ଯାହା କୁହାଯାଏ, ତାହା ମୌଳିକ ସୃଷ୍ଟିକୁ ଅଧିକ ଆକର୍ଷଣୀୟ ଓ ଆଦରଣୀୟ କରିଥାଏ । ଲେଖକର ଅବ୍ୟକ୍ତ କଥାକୁ ସମାଲୋଚକ କେତେକାଂଶରେ ବ୍ୟକ୍ତ କରେ । ମୋ ବିଚାରରେ ଲେଖକ ପକ୍ଷୀ ହେଲେ ସମାଲୋଚକ ତା'ର ପକ୍ଷ । ପକ୍ଷୀର ଗୁରୁତ୍ୱ ପକ୍ଷ ଦ୍ୱାରା ହିଁ ପ୍ରତିଷ୍ଠିତ ହୁଏ । ପୁଣି ଏକଥା ମଧ୍ୟ କୁହାଯାଇପାରେ ଯେ ସମାଲୋଚନା ହେଉଛି ଲେଖକୀୟ ଅନୁଭବ ଓ ପାଠକୀୟ ଅବବୋଧ ଭିତରେ ଏକ ସୁଦୃଢ଼ ସେତୁବନ୍ଧ । ଉକ୍ତ ପୁସ୍ତକରେ ସନ୍ନିବେଶିତ କେତେକ ପ୍ରବନ୍ଧରେ କେତେକ ନୂତନ ତଥ୍ୟ ଉପସ୍ଥାପିତ ହୋଇଛି । ଏହି ପ୍ରବନ୍ଧଗୁଡ଼ିକରୁ କେତେଗୋଟି ଭିନ୍ନଭିନ୍ନ ସମୟରେ ଉତ୍କଳ ପ୍ରସଙ୍ଗ, ଅମୃତାୟନ, ଗୋକର୍ଣ୍ଣିକା, କାବ୍ୟଲୋକ: ସମୟର ଶଙ୍ଖନାଦ, ତ୍ରିବେଣୀ, ଶତଦ୍ରୁ ଓ ଦୈନିକ ସମାଜ ପ୍ରଭୃତି ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିଲା । ଏହି ଅବସରରେ ମୁଁ ସେହି ସେହି ପତ୍ରପତ୍ରିକାର ସମ୍ପାଦକମାନଙ୍କୁ କୃତଜ୍ଞତା ଜଣାଉଛି ।

ଏହି ପୁସ୍ତକର ସାର୍ଥକ ରୂପାୟଣ ନିମନ୍ତେ ଯେଉଁମାନଙ୍କର ପ୍ରେରଣା, ପ୍ରୋତ୍ସାହନ, ସାହାଯ୍ୟ ଓ ସହଯୋଗ ମତେ ମିଳିଛି ସେମାନଙ୍କ ନିକଟରେ ମୁଁ କୃତଜ୍ଞ । ପୁସ୍ତକର ପାଣ୍ଡୁଲିପିଟିକୁ ଧୈର୍ଯ୍ୟର ସହ ଆମୂଳଚୂଳ ପଢ଼ି ମତାମତ

ଦେଇଥିବାରୁ ଜ୍ଞାନ ତପସ୍ୱୀ ପରମ ପୂଜ୍ୟ ପ୍ରଫେସର ଚିତ୍ତରଂଜନ ଦାସ (ଚିତ୍ତ ଭାଇ)ଙ୍କୁ ଏହି ଅବକାଶରେ ମୋର ବିନମ୍ର ପ୍ରଣାମ । ପ୍ରେରଣା ଓ ପ୍ରୋତ୍ସାହନ ନିମନ୍ତେ ଲବ୍ଧପ୍ରତିଷ୍ଠ ସାହିତ୍ୟିକ ଶ୍ରୀଯୁକ୍ତ ମହାପାତ୍ର ନୀଳମଣି ସାହୁ, ଶ୍ରୀଯୁକ୍ତ ସାତକଡ଼ି ହୋତା, ଶ୍ରୀଯୁକ୍ତ ଶରତ କୁମାର ମହାନ୍ତି, ଶ୍ରୀଯୁକ୍ତ ରମେଶ ଦାସ, ଡଃ ବାସୁଦେବ ସାହୁ, ଡଃ ସୌରୀନ୍ଦ୍ର ବାରିକ, ଡଃ କଇଳାଶ ପଟ୍ଟନାୟକ, ଡଃ ଗିରିବାଳା ମହାନ୍ତି, ଡଃ ରଘୁନାଥ ପଣ୍ଡା, ଡଃ ପ୍ରଫୁଲ୍ଲକୁମାର ମିଶ୍ର, ଡଃ ସନ୍ତୋଷ କୁମାର ଶତପଥୀ ଓ ଶ୍ରୀଯୁକ୍ତ ରମାକାନ୍ତ ମିଶ୍ରଙ୍କୁ କୃତଜ୍ଞତା ଜଣାଉଛି। ରାଜ୍ୟଗ୍ରନ୍ଥାଗାରର ସହକାରୀ ଗ୍ରନ୍ଥାଧ୍ୟକ୍ଷ ଶ୍ରୀଯୁକ୍ତ ଦେବରାଜ ମେହେରଙ୍କ ଆଗ୍ରହ ଓ ସହଯୋଗ ମୁଁ ଭୁଲିପାରିବି ନାହିଁ । ତାଙ୍କୁ କୃତଜ୍ଞତା ଜଣାଇବାକୁ ମୋ ପାଖରେ ଭାଷା ନାହିଁ । ସହକର୍ମୀ ଭାବରେ ସସ୍ନେହ ଶୁଭେଚ୍ଛାରେ ମତେ କୃତାର୍ଥ କରିଥିବା ଡଃ ସୁରେନ୍ଦ୍ର ନାଥ ଦାଶ, ଡଃ ସଂଘମିତ୍ରା ମିଶ୍ର, ଡଃ ବିଜୟ କୁମାର ଶତପଥୀ, ଡଃ ନାରାୟଣ ସାହୁ, ଡଃ ସନ୍ତୋଷ କୁମାର ତ୍ରିପାଠୀ ଓ ଡଃ ଲିପିହେମ୍ବ୍ରମଙ୍କୁ ଏଇ ଅବସରରେ ଅଶେଷ କୃତଜ୍ଞତା । ଜାତୀୟ ଗ୍ରନ୍ଥାଗାର (କଲିକତା)ର ଉପଗ୍ରନ୍ଥାଗାରିକ ଶ୍ରୀ ସାଫଲ୍ୟ କୁମାର ନନ୍ଦୀଙ୍କୁ ତାଙ୍କର ପ୍ରେରଣା ଓ ସହଯୋଗ ନିମନ୍ତେ କୃତଜ୍ଞତା ଜଣାଉଛି । ସେହି ଗ୍ରନ୍ଥାଗାରର ଅବସର ପ୍ରାପ୍ତ ଉପଗ୍ରନ୍ଥାଗାରିକ ଶ୍ରୀ ଅବକାଶ ଜେନାଙ୍କୁ ମୋର ଅଶେଷ କୃତଜ୍ଞତା । ତଥ୍ୟ ସଂଗ୍ରହ କ୍ଷେତ୍ରରେ ମୋର ଛାତ୍ର ଗବେଷକ ଶ୍ରୀମାନ୍ ବିକାଶ ଚନ୍ଦ୍ର ମହାରଣାଙ୍କୁ ସହଯୋଗ ନିମନ୍ତେ ସାଧୁବାଦ ଜଣାଉଛି । ପୁସ୍ତକର ପ୍ରଚ୍ଛଦ ପଟ୍ଟ ରୂପାୟନରେ ସହଯୋଗ ନିମନ୍ତେ ମୋର ଛାତ୍ର ଶ୍ରୀମାନ୍ ବିଭୁପ୍ରସୂନ ଦାସଙ୍କୁ ଅଶେଷ ସାଧୁବାଦ ।

ଗୌରୀନଗର ନିବାସୀ ସାହିତ୍ୟାନୁରାଗୀ ନାଟ୍ୟଶିଳ୍ପୀ ଶ୍ରୀଯୁକ୍ତ ନାରାୟଣ ପରିଡ଼ାଙ୍କ ଶ୍ରଦ୍ଧା ଓ ଆନ୍ତରିକତା ନିମନ୍ତେ ମୁଁ ତାଙ୍କ ନିକଟରେ ଚିର କୃତଜ୍ଞ । ଏହି ଅବକାଶରେ ତାଙ୍କୁ ବିନମ୍ର ପ୍ରଣାମ । ସମସ୍ତଙ୍କର ଶୁଭ କାମନା ସହ ରହୁଛି ।

**ଶରତ ଚନ୍ଦ୍ର ରଥ**

ଭୁବନେଶ୍ୱର
୧୨ ଜାନୁୟାରୀ, ୨୦୦୫

# ସୂଚୀପତ୍ର




୧. ସାହିତ୍ୟର ପରିଭାଷା ଓ ପରିସର ------------------ ୧

୨. କବି ଓ କବିତ୍ୱ ---------------------------- ୨୮

୩. ସ୍ରଷ୍ଟାସିଏ ଦ୍ୱିତୀୟ ଈଶ୍ୱର ---------------------- ୩୪






୪. ପୁରୁଷୋତ୍ତମ ତତ୍ତ୍ୱ ଓ ଶ୍ରୀଜଗନ୍ନାଥ ----------------- ୪୧

୫. ଶ୍ରୀଜଗନ୍ନାଥ ଜଣାଣରେ ବ୍ୟାଜସ୍ତୁତି --------------- ୫୦

୬. ଭଂଜ ସାହିତ୍ୟରେ ଶ୍ରଦ୍ଧାର ସ୍ୱରୂପ ----------------- ୫୬

୭. ଭଂଜ ସଂଗୀତମାଳା - ଏକ ଅଧ୍ୟୟନ --------------- ୭୧

୮. ମେଘଦୂତ : ସ୍ରଷ୍ଟା କାଳିଦାସ ଓ ରାଧାନାଥ ----------- ୮୪

୯. ବିଶ୍ୱବୋଧ ଓ କବି ଗୋପବନ୍ଧୁ ------------------ ୯୬

୧୦. ପଦ୍ମପାଖୁଡ଼ାର କବି ପଦ୍ମଚରଣ ---------------- ୧୦୬

୧୧. ସୂର୍ଯ୍ୟମୁଖୀର କବି ପଦ୍ମଚରଣ ------------------ ୧୩୨

୧୨. ପୂଜ୍ୟପୂଜା ବିଭବ ଓ ଉପେନ୍ଦ୍ର ତ୍ରିପାଠୀ ----------- ୧୪୧

୧୩. ସେ ଗାଁର କିଆ ଫୁଲ ଓ କବି ଜୀବନାନନ୍ଦ ------- ୧୪୬

୧୪. ନାରୀ କବି ସୁନ୍ଦରମଣି ପଟ୍ଟନାୟକଙ୍କ
ସୃଷ୍ଟିରେ ଦେଶାତ୍ମବୋଧ --------------------- ୧୫୫

# ସାହିତ୍ୟର ପରିଭାଷା ଓ ପରିସର

*''ସାହିତ୍ୟ ବାଡ଼ ଉଠାଇବ, ବାଡ଼କୁ ଭାଙ୍ଗିବ, ସଂସ୍କାରଗତ ସଂଜ୍ଞାଗୁଡାକୁ ବଦଳାଇବ, ଆତ୍ମଶ୍ରଦ୍ଧା ଗୁଡ଼ାକ ଲାଗି ନୂଆନୂଆ ଡେଣା ଆଣିଦେବ । ଗୋଟାଏ ଦେଶର, ଗୋଟାଏ ଜାତିର ଅଥବା ଗୋଟାଏ ଭାଷାର ସାହିତ୍ୟ ହୋଇ ମଧ୍ୟ ତାହା ଜୀବନର ବିଶ୍ୱବଳୟ ଗୁଡ଼ିକୁ ସ୍ପର୍ଶ କରିବାକୁ ସ୍ପର୍ଦ୍ଧା ରଖିଥିବ ।''*

ପ୍ରବନ୍ଧ - ସାହିତ୍ୟରେ ଚୟନ ଓ ଅଚୟନ

(ଚିତ୍ତରଞ୍ଜନ ଦାସ)

ସହିତ ଶବ୍ଦରେ 'ଯତ୍' ପ୍ରତ୍ୟୟ ଯୁକ୍ତ ହୋଇ ସାହିତ୍ୟ ଶବ୍ଦ ନିଷ୍ପନ୍ନ ହୋଇଛି । ଏହାର ଅର୍ଥ ହେଉଛି ଶବ୍ଦ ଓ ଅର୍ଥର ଯଥାଯଥ ସହଭାବ । ପଞ୍ଚମବେଦ ଭାବରେ ସାହିତ୍ୟର ସ୍ଥିତି ସ୍ୱୀକୃତ । ଚାରିବେଦର ସାର ନିର୍ଯ୍ୟାସ ଏଥିରେ ମୂର୍ତ୍ତିମନ୍ତ । କାବ୍ୟ ମୀମାଂସା ଗ୍ରନ୍ଥରେ ଆଚାର୍ଯ୍ୟ ରାଜଶେଖର ଏହି କଥାଟିକୁ ଉଲ୍ଲେଖ କରିଛନ୍ତି । ଗ୍ରନ୍ଥର ଦ୍ୱିତୀୟ ଅଧ୍ୟାୟରେ ସେ କହିଛନ୍ତି -

*'ପଞ୍ଚମୀ ସାହିତ୍ୟ ବିଦ୍ୟା ଇତି ଯାଯାବରୀୟଃ ।*
*ସା ହି ଚତସୃଣାମପି ବିଦ୍ୟାନାଂ ନିସ୍ୟନ୍ଦଃ ।।'*

ମୁକ୍ତ ଆକାଶ ସହ ନୀଳିମାର, ସତେଜ ଘାସ ସହ ସବୁଜିମାର, ସଜଫୁଲ ସହ ମଧୁରିମାର ସମ୍ପର୍କ ଯେପରି ନିବିଡ଼, ମନୁଷ୍ୟ ଜୀବନ ସହିତ ସାହିତ୍ୟର ସମ୍ପର୍କ ସେପରି ନିବିଡ଼ । ଜୀବନର ଭିତ୍ତିରେ ସାହିତ୍ୟର ଅଭିବ୍ୟକ୍ତି ସଂଗଠିତ । ସାହିତ୍ୟ ହେଉଛି ଜୀବନର କଳାତ୍ମକ ଭାଷ୍ୟ । ଜୀବନର ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ,ଔଦାର୍ଯ୍ୟ, ଓ ଗାମ୍ଭୀର୍ଯ୍ୟର ସମନ୍ୱୟ ସାହିତ୍ୟରେ ଅନୁଭବ୍ୟ । ଏ ଜୀବନ ବ୍ୟକ୍ତି-ଜୀବନ, ସମାଜ-ଜୀବନ, ରାଷ୍ଟ୍ର-ଜୀବନ ତଥା ବିଶ୍ୱ-ଜୀବନକୁ ନେଇ ପରିପୁଷ୍ଟ । ସାହିତ୍ୟ ସମଗ୍ର ସମାଜର ହିତ ସାଧନ ନିମନ୍ତେ ଉଦ୍ଦିଷ୍ଟ । ତେଣୁ କୁହାଯାଏ 'ହିତଂ ସନ୍ନିହିତଂ ତତ୍ ସାହିତ୍ୟମ୍' । ହୃଦୟବତ୍ତା ହିଁ ସାହିତ୍ୟର ମୂଳ । ହୃଦୟବତ୍ତା ନାହିଁ ତ ସାହିତ୍ୟର ସୃଷ୍ଟି, ସମୀକ୍ଷା ଓ ଗ୍ରହଣଶୀଳତା ନାହିଁ । ହୃଦୟକୁ ହୃଦୟ ସହିତ ଯୋଡ଼ିଦେବାର ସ୍ୱର୍ଣ୍ଣସେତୁ ହେଉଛି ସାହିତ୍ୟ । ସ୍ଥୂଳମନ ନୁହେଁ ସୂକ୍ଷ୍ମମନର ସହ ଏହି ହୃଦୟବତ୍ତାର ସଂପର୍କ ନିବିଡ଼, ଅତଏବ ସୂକ୍ଷ୍ମମନ ସହ ସାହିତ୍ୟର ସମ୍ବନ୍ଧ ସ୍ୱତନ୍ତ୍ର ଓ ନିତ୍ୟ ନୂତନ । ସୂକ୍ଷ୍ମମନ ଗିରିକନ୍ଦର ହେଲେ ସାହିତ୍ୟ

ତହିଁରୁ ଝରି ଆସୁଥିବା ଝରଣା ଧାର, ସୂକ୍ଷ୍ମମନ ନୀଳସାଗର ହେଲେ ସାହିତ୍ୟ ତହିଁରେ ନାଚି ଉଠୁଥିବା ତରଙ୍ଗମାଳ, ସୂକ୍ଷ୍ମମନ ବସନ୍ତବନ ହେଲେ ସାହିତ୍ୟ ତହିଁର ଲୀଳାଲାବଣ୍ୟ ।

ସାହିତ୍ୟ ଏକ ପାଠ, ପୋଥି ବା ପୁସ୍ତକ ମାତ୍ର ନୁହେଁ, ଏକ ମାର୍ମିକ ଅଭିବ୍ୟକ୍ତି । ବଞ୍ଚିବାର ନିଶା, ଭଲ ପାଇବାର ପ୍ରବଣତା, ଅନ୍ୟର ସୁଖରେ ସୁଖୀ ହେବାର ମାଦକତା ଏବଂ ଅନ୍ୟର ଦୁଃଖରେ ଅନୁକମ୍ପାର ସାର୍ବଜନୀନ ଅଭିଲିପି ପୁଣି ପାଶୋରା ଦିନର ଅପାଶୋରା ଏକ ସ୍ମୃତିଲିପି ହେଉଛି ସାହିତ୍ୟ । ସେ ସ୍ମୃତିଲିପି କୁମାର ପୂର୍ଣ୍ଣିମାର ଜହ୍ନ ରାତିପରି ସ୍ନିଗ୍ଧସୁନ୍ଦର ହୋଇପାରେ ଅଥବା ଝଡ଼ଝଞ୍ଜାରେ ବିପର୍ଯ୍ୟସ୍ତ ଏକ ରାତିପରି ଭୟଙ୍କର ହୋଇପାରେ ।

ସାହିତ୍ୟ ସୁରଟିଏ ହୋଇ ବାଜିଉଠେ, ସ୍ୱପ୍ନଟିଏ ହୋଇ ସଞ୍ଚରି ଯାଏ, ସନ୍ତାନଟିଏ ହୋଇ ଜନ୍ମନିଏ, ଫୁଲଟିଏ ହୋଇ ଫୁଟିଯାଏ, ନଦୀଟିଏ ହୋଇ ବହିଯାଏ । କାହାପାଖରେ ସେ କେମିତି ରୂପନିଏ ତାହା ଜାଣିହୁଏନା । ଯାହାପାଖରେ ଯେଉଁ ରୂପରେ ଥାଉ ପଛକେ ଅନ୍ନମୟଠାରୁ ଆନନ୍ଦମୟ ଯାଏ ପାହାଚ ଚଢ଼ିବାକୁ ବଳଦିଏ, ହୋଇଯାଏ ସମକାଳୀନ ଜୀବନର ମନୋଜ୍ଞ ଓ ମହତ୍ତ୍ୱପୂର୍ଣ୍ଣ ଦଲିଲଟିଏ ।

ସାହିତ୍ୟ କେବଳ ଲେଖକମାନଙ୍କ ଜାଲରେ ଆବଦ୍ଧ ପକ୍ଷୀଟିଏ ମାତ୍ର ନୁହେଁ, ଲେଖକ ଠାରୁ ଧର୍ମ, ଜାତି, ଦେଶର ଭେଦକୁ ଅତିକ୍ରମ କରି ପାଠକ ପାଖରେ ପହଞ୍ଚିପାରୁଥିବା ମାନସହଂସଟିଏ । ପାଠକ ବିନା ପାଠରଚନା ନିରର୍ଥକ । ନିଜର ବ୍ୟକ୍ତିଗତ ଅନୁଭୂତିକୁ ଅକ୍ଷରରେ ସଜାଇ ଦେଲେ ତାହା ସାହିତ୍ୟ ହୁଏ ନାହିଁ । ଅନ୍ୟ ପ୍ରକାରେ କୁହାଯାଇପାରେ ଯେ ନିଜମନସ୍କ ହୋଇ ଅନ୍ୟର କଥା ଭାବିବାର ଅଭିବ୍ୟକ୍ତି ହିଁ ସାହିତ୍ୟ, ଯହିଁରେ ଅନ୍ୟମନସ୍କ ହୋଇ ନିଜ କଥା ଭାବିବାର ରୂପାୟଣ ଅଥବା ନିଜମନସ୍କ ହୋଇ ନିଜ କଥା ଭାବିବାର ବାଚାଳତା ନଥାଏ । ଆଗ୍ରହୀ ପାଠକ ହିଁ ବିବେକୀ ଗ୍ରାହକ ଯିଏ ସହଜରେ ବୁଝିପାରେ ଲେଖକୀୟ ଚିତ୍ତବୃତ୍ତିକୁ । ସହୃଦୟ ପାଠକଟିଏ ମଧ୍ୟ ଉଚ୍ଚମାନର ସାହିତ୍ୟିକ । ଏହି ସହୃଦୟତା ହିଁ ଭର୍ତ୍ତୃହରିଙ୍କ ମତରେ ଜୀବନର ଅସଲ ସାର୍ଥକତା । ସାହିତ୍ୟ, ସଂଗୀତର ରସଗ୍ରହଣ ନିମନ୍ତେ ସହୃଦୟତା ନଥିବା ମନୁଷ୍ୟର ଜୀବନକୁ ସେ ପଶୁଜୀବନ ସହ ସମାନ ବୋଲି କହିଛନ୍ତି ।

*'ସାହିତ୍ୟ ସଙ୍ଗୀତ-କଳା-ବିହୀନଃ ସାକ୍ଷାତ୍‌ପଶୁଃ ପୁଚ୍ଛବିଷାଣହୀନଃ ତୃଣଂ ନ ଖାଦନ୍ନପି ଜୀବମାନସ୍ତଦ୍ ଭାଗଧେୟଂ ପରମଂ ପଶୁନାମ୍ ॥'*
*( ନୀତିଶତକମ୍- ୧୨ ଶ୍ଳୋକ)*

ସାହିତ୍ୟ ହେଉଛି ବ୍ୟକ୍ତିଠାରୁ ବିଶ୍ୱକୁ ସଞ୍ଚରି ଯାଉଥିବା ମୂଲ୍ୟବୋଧ ସମ୍ପନ୍ନ ଏକ ଭାଷିକ ସଂରଚନା । ସମଗ୍ର ବିଶ୍ୱ ତା'ର ବାସଗୃହ, ସମଗ୍ର ବିଶ୍ୱଜୀବନ ତା'ର ଚାରଣଭୂମି । ଲେଖକର ଜୀବନ, ପାଠକର ଜୀବନ ଓ ବିଶ୍ୱଜୀବନ ସାହିତ୍ୟରେ ଗୋଟିଏ ସୂତ୍ରରେ ବନ୍ଧା । ଲେଖକର ଅନୁଭବ ଯେତେବେଳେ ପାଠକର ଅନୁଭବ-ଦର୍ପଣରେ ପ୍ରତିବିମ୍ବିତ ହୋଇ ପାଠକକୁ ଆପଣାର ଭଳି ବୋଧହୁଏ, ସେତେବେଳେ ସାହିତ୍ୟର ଆଭା ଝଲସି ଉଠେ । ନିଜକୁ ନ ବୁଝିଲେ ଅନ୍ୟକୁ ବୁଝିହୁଏ ନାହିଁ, ଅନ୍ୟକୁ ନବୁଝିଲେ ସାହିତ୍ୟ ଲେଖିହୁଏ ନାହିଁ । ଏହା ପ୍ରତିପାଦ୍ୟ ଯେ ବ୍ୟକ୍ତି ଭିତରେ ଥିବା ବିଶ୍ୱଗତ ସତ୍ତାର ଛନ୍ଦମୟ ଲିପିଶିଳ୍ପ ହିଁ ସାହିତ୍ୟ । ଅଭିବ୍ୟକ୍ତ ଛନ୍ଦମୟତାକୁ ରାଗରାଗିଣୀ ଅର୍ଥରେ ବୁଝିବାକୁ ହେବନାହିଁ । Rhythm ଅର୍ଥରେ ବୁଝିବାକୁ ହେବ । ସେ ଗଦ୍ୟ ଅଥବା ପଦ୍ୟ ହେଉ ତହିଁରେ Rhythm ରହିବ ହିଁ ରହିବ । ପରିଶେଷରେ ଏତିକି କୁହାଯାଇପାରେ ଯେ ସାହିତ୍ୟ ହେଉଛି ଜୀବନ ଭିତ୍ତିକ ଏକ ଶାବ୍ଦିକ ଚାରୁକଳା, ଶବ୍ଦଚିତ୍ରର ଏକ ପବିତ୍ର ଯଜ୍ଞଶାଳା, ଲେଖକୀୟ ଅନୁଭୂତିର ଏକ ପ୍ରୟୋଗଶାଳା ଏବଂ ବ୍ୟକ୍ତିଗତ ଜୀବନ ତଥା ବିଶ୍ୱଗତ ଜୀବନର ସମନ୍ୱିତ ସଶକ୍ତ ସ୍ୱରମାଳା ।

## ସାହିତ୍ୟ ସର୍ଜନାର ହେତୁ :

ବିଶ୍ୱରେ ମଣିଷର ଜନ୍ମଲଗ୍ନରୁ ସାହିତ୍ୟର ସୃଷ୍ଟି । କାୟା ସହ ଛାୟା ପରି ସେଦିନରୁ ଅଦ୍ୟାବଧି ତାହା ମନୁଷ୍ୟ ସହିତ ଜଡ଼ିତ । ଲେଖକୀୟ ମାନସରୁ ପାଠକୀୟ ମାନସ ପର୍ଯ୍ୟନ୍ତ ତା'ର ସଞ୍ଚରଣଶୀଳତା ସ୍ୱୀକୃତ । ସାଧାରଣ ମଣିଷଠାରୁ କବିମଣିଷ ବା ସ୍ରଷ୍ଟାମଣିଷ ପାଖରେ କେତେକ ସ୍ୱତନ୍ତ୍ରତା ଲକ୍ଷ୍ୟ କରିହୁଏ । ଏହି ପରିପ୍ରେକ୍ଷୀରେ ମାୟାଧର ମାନସିଂହଙ୍କ ମତାମତ ସ୍ମରଣକୁ ଆସେ, *''କବି ଦ୍ରଷ୍ଟା, ଲେଖକର ଦୃଷ୍ଟି ଦୂରପ୍ରସାରୀ ହେବା ଉଚିତ୍ । ଯାହା ସାଧାରଣ ନାଗରିକ ଦେଖିପାରୁନି, ତାହା ଲେଖକ ଓ କବି ଦେଖିପାରିବା ଆଶା କରାଯାଏ । କାରଣ ପ୍ରକୃତି ତାଙ୍କୁ ପ୍ରତିଭାର ତୃତୀୟ ନେତ୍ର ଯୋଗାଇଛି ।'' - (କବି ଓ କବିତା)*

ସାହିତ୍ୟ ସର୍ଜନାର ହେତୁ ହେଉଛି ତିନିଗୋଟି - ପ୍ରତିଭା, ପାଣ୍ଡିତ୍ୟ ଓ ଅଭ୍ୟାସ । ପ୍ରତିଭା ଈଶ୍ୱର ଦତ୍ତ, ସହଜାତ । ଆତ୍ମା ସହିତ ଏହାର ଅବତରଣ ଘଟିଥାଏ । ଜନ୍ମଜନ୍ମର ପ୍ରସ୍ତୁତି, ଆଗ୍ରହ ଓ ଆନ୍ତରିକତାର ଏହା ହେଉଛି ରସମୟ ପ୍ରତିଶ୍ରୁତି, ଅମୃତଫଳ ।

*"ନରତ୍ୱଂ ଦୁର୍ଲ୍ଲଭଂ ଲୋକେ ବିଦ୍ୟା ତତ୍ର ସୁଦୁର୍ଲ୍ଲଭା*
*କବିତ୍ୱଂ ଦୁର୍ଲ୍ଲଭଂ ତତ୍ର ଶକ୍ତିସ୍ତତ୍ର ସୁଦୁର୍ଲ୍ଲଭା ।"*

- (ଅଗ୍ନିପୁରାଣ)

ସଂସାରରେ ମନୁଷ୍ୟଜନ୍ମ ଦୁର୍ଲ୍ଲଭ, ବିଦ୍ୟା ତହୁଁ ଦୁର୍ଲ୍ଲଭା । କବିତ୍ୱ ଦୁର୍ଲ୍ଲଭ, ଶକ୍ତି ବା ପ୍ରତିଭା ତହିଁରୁ ବଳି ଦୁର୍ଲ୍ଲଭା । ଏହି ପ୍ରତିଭା (Poetic genius) ଅପରାର୍ଦ୍ଧ ଓ ପରାର୍ଦ୍ଧ ଅର୍ଥାତ୍ ସ୍ଥୂଳ ଭୂମି ଓ ସୂକ୍ଷ୍ମ ଭୂମି ମଧ୍ୟରେ ଏକ ସୁବର୍ଣ୍ଣ ସେତୁ । ଏହା ମାଧ୍ୟମରେ ସ୍ରଷ୍ଟାଚିତ୍ତ ଏକ ଭୂମିରୁ ଅନ୍ୟଭୂମିକୁ ଅନାୟାସରେ ଯାତାୟାତ କରିପାରେ । ଉଭୟ ଭୂମି ଏକ ମୁଦ୍ରାର ଦୁଇପାର୍ଶ୍ୱ ପରି ସମନ୍ୱିତ । ଭୂମି ଓ ଭୂମା ପରସ୍ପରର ପରିପନ୍ଥୀ ନୁହନ୍ତି ବରଂ ଅନୁପନ୍ଥୀ । ପ୍ରତିଭା ବଳରେ ସ୍ଥୂଳ ଭିତରେ ସୂକ୍ଷ୍ମକୁ ଓ ସୂକ୍ଷ୍ମର ରୂପାନ୍ତର ଭାବରେ ସ୍ଥୂଳକୁ ଦେଖାଯାଇପାରେ । ସାଧାରଣ ମଣିଷ ସମୁଦ୍ରକୁ ଦେଖିଲାବେଳେ ସ୍ରଷ୍ଟାମଣିଷ ସମୁଦ୍ରତ୍ୱକୁ ଦେଖିଥାନ୍ତି । ସାଧାରଣ ମଣିଷ ଗଛଟିକୁ ଦେଖିଲାବେଳେ ସ୍ରଷ୍ଟା ମଣିଷ ଗଛକୁ ଧରି ରଖିଥିବା ଶକ୍ତି ବା ଚେତନାକୁ ଅନ୍ତଃଚକ୍ଷୁରେ ଦେଖିଥାନ୍ତି । ପ୍ରତିଭାର ମହତ୍ତ୍ୱ ଅକଳ୍ପନୀୟ । ଏହା ହେଉଛି ଚିତ୍ ଶକ୍ତିର ଜ୍ୟୋତି ଓ ଜନ୍ମଗତ ଏକ ଶକ୍ତି (Inborn power) । ଜନ୍ମଜନ୍ମର ଆକାଂକ୍ଷା ଓ ଅନୁରାଗ ସୂକ୍ଷ୍ମମନସତ୍ତାରେ ପୁଞ୍ଜୀଭୂତ ହୋଇ ପ୍ରତିଭାକୁ ସୃଷ୍ଟି କରିଥାନ୍ତି । ତାହା ନଦୀଧାରା ପରି ସ୍ୱତଃ ପ୍ରବାହିତ ହୁଏ । ବ୍ୟକ୍ତିର ଚେଷ୍ଟାରେ ଏହା ସଂଗଠିତ ହୁଏ ନାହିଁ । ଏ ପ୍ରସଙ୍ଗରେ ଶ୍ରୀଅରବିନ୍ଦଙ୍କ ଉକ୍ତି ଏହିପରି- ***"I never heard of any one getting genius by effort. One can increase one's talent by training and labour, but genius is a gift of nature." (Letters on Poetry, Literature and Art.)***

ପାଣ୍ଡିତ୍ୟକୁ ବହୁଶାସ୍ତ୍ରଦର୍ଶିତା ବୋଲି ମଧ୍ୟ କୁହାଯାଏ । ଶାସ୍ତ୍ର କହିଲେ କେବଳ ତାଳପତ୍ରରେ ଲିଖିତ ପଂକ୍ତିମାଳା ନୁହେଁ । ଏହା ସହିତ ଅନ୍ୟାନ୍ୟ ଗ୍ରନ୍ଥ, ଶିଳାଲେଖ, ତାମ୍ରଲେଖକୁ ମଧ୍ୟ ଶାସ୍ତ୍ରର ଅନ୍ତର୍ଭୁକ୍ତ କରାଯାଇପାରେ ।

ସୁବ୍ୟବସ୍ଥିତ ବିଶେଷ ଜ୍ଞାନର ଉତ୍ସ ହେଉଛି ଶାସ୍ତ୍ର । ଆତ୍ମବିଶ୍ଳେଷଣ, ସତ୍‌ସଙ୍ଗ ଲାଭ, ସଦ୍‌ଗ୍ରନ୍ଥ ପଠନ,ସଦ୍‌ବାକ୍ୟ ଗ୍ରହଣ ମଧ୍ୟ ଶାସ୍ତ୍ରର ଅନ୍ତର୍ଭୁକ୍ତ । ଲୋକସାହିତ୍ୟ ମଧ୍ୟ ଏକପ୍ରକାର ଶାସ୍ତ୍ର । ସର୍ବୋପରି ପୂର୍ବର ଯୁକ୍ତିଯୁକ୍ତ ପରଂପରା, ଅତୀତର ସ୍ୱର୍ଣ୍ଣାଭ ସୃଷ୍ଟି ସମ୍ଭାର ଓ ସମୀକ୍ଷା ବିଭବ, ବାହ୍ୟ ପ୍ରକୃତିର ଭୀମକାନ୍ତ ଅଭିବ୍ୟକ୍ତି, ସର୍ବୋପରି ନିଜ ଜୀବନର ବାସ୍ତବ ଅନୁଭୂତି ଶାସ୍ତ୍ରର ବଳୟଭୁକ୍ତ ହୋଇପାରେ । ଭୌତିକବିଦ୍ୟାର ବିବିଧଦିଗନ୍ତ, ବ୍ୟାବହାରିକ ଜ୍ଞାନବିଜ୍ଞାନରୁ ଲବ୍ଧଜ୍ଞାନ, ପାଣ୍ଡିତ୍ୟର ଆଲୋକକୁ ଉଜ୍ଜ୍ୱଳତର କରିଥାଏ ।

ସାହିତ୍ୟ ଲୋକଶିକ୍ଷା ପାଇଁ ଉଦ୍ଦିଷ୍ଟ ହୋଇଥିବାରୁ ପାଠକର ଚେତନାର ଅଭିବୃଦ୍ଧି ନିମନ୍ତେ ଲେଖକଙ୍କର ପାଣ୍ଡିତ୍ୟ ଏକାନ୍ତ ଅପରିହାର୍ଯ୍ୟ । ଲେଖକ ବହୁତୀର୍ଥରୁ ଜଳ ସଂଗ୍ରହ କରି ସାହିତ୍ୟର ସରୋବର ସୃଷ୍ଟି କରିଥାନ୍ତି । ସେଥିରେ ସ୍ନାନକରି ପାଠକ ଚିତ୍ତ ପବିତ୍ର ଓ ପ୍ରଶିକ୍ଷିତ ହୁଏ । ସାହିତ୍ୟ ଜୀବନର ପ୍ରତିଛବି ନୁହେଁ, ବରଂ ସାହିତ୍ୟ ହିଁ ଜୀବନ ଏବଂ ଜୀବନ ହିଁ ସାହିତ୍ୟ । ଜୀବନର କଥା ଏବଂ ଜୀବନପାଇଁ ବାର୍ତ୍ତା ପ୍ରଦାନରେ ସାହିତ୍ୟ ଦକ୍ଷ । ବହିର୍ଜୀବନ ଏବଂ ଅନ୍ତର୍ଜୀବନ ଉଭୟ ସ୍ତରରୁ ଯଥାଯୋଗ୍ୟ ଉପାଦାନ ଗ୍ରହଣ କରି ଏହା ପରିପୁଷ୍ଟ ହୁଏ ।*'ଭାରତ ଗୌରବ'* ଗ୍ରନ୍ଥରେ ମହାମହୋପାଧ୍ୟାୟ ଦାମୋଦର ଶାସ୍ତ୍ରୀ ସାହିତ୍ୟର କଥାବସ୍ତୁର ବ୍ୟାପକତା ପ୍ରସଙ୍ଗରେ କହିଛନ୍ତି ***"ନଅ ଗୋଟିରସ ମଧ୍ୟରୁ ଯେ କୌଣସି ଗୋଟିଏ ରସକୁ ମୁଖ୍ୟ ଭାବରେ ରଖି ପ୍ରସଙ୍ଗକ୍ରମେ ବେଦ, ବେଦାଙ୍ଗ, ପୁରାଣ, ଇତିହାସ, ବ୍ୟାକରଣ, ଅର୍ଥଶାସ୍ତ୍ର, ଦର୍ଶନଶାସ୍ତ୍ର, ଜ୍ଞାନବିଜ୍ଞାନ, ଶିଳ୍ପ, ଚତୁଃଷଠି କଳାବିଦ୍ୟା, ଚିକିତ୍ସା, ଜ୍ୟୋତିର୍ବେଦ, ଆୟୁର୍ବେଦ, ଧନୁର୍ବେଦ, ସ୍ଥାପତ୍ୟ ବେଦ, ଭୂଗୋଳ ଓ ଆଧ୍ୟାତ୍ମିକ ବିଷୟ ପ୍ରଭୃତି ସ୍ଥଳବିଶେଷରେ ସାହିତ୍ୟରେ ପରିବର୍ଣ୍ଣିତ ହୋଇଥାଏ ।"***

ଏହି ପରିପ୍ରେକ୍ଷୀରେ ***"The encyclopedia Britannica"*** ଗ୍ରନ୍ଥରେ କୁହାଯାଇଛି- ***"The content of literature is as limitless as the desire of human beings to communicate with one another."***

ସ୍ରଷ୍ଟା ପଣରେ ସାମଗ୍ରିକ ଦୃଷ୍ଟିକୋଣଟିଏ ଥାଏ । ଜୀବନକୁ ଭିନ୍ନଭିନ୍ନ ଦିଗରୁ ଦେଖି ଅନ୍ୟକୁ ଦେଖାଇବାର, ବୁଝି ଅନ୍ୟକୁ ବୁଝି ବୁଝାଇବାର

ଉଦ୍ୟମ ଏଥିରେ ଥାଏ । ଅନ୍ତଃପ୍ରକୃତି ଓ ବହିଃପ୍ରକୃତି ଉଭୟକୁ ଏକ ସମୟରେ ନିରୀକ୍ଷଣ କରି ତହିଁରୁ ସାରନିର୍ଯ୍ୟାସ ସଂଗ୍ରହ କରିବା ହିଁ ବହୁଶାସ୍ତ୍ରଦର୍ଶୀତାର ମୂଳକଥା ।

ଅଭ୍ୟାସ ହେଉଛି ଏକାଗ୍ରତା ଓ ଏକନିଷ୍ଠତାର ରମ୍ୟରୂପ । କୁହାଯାଏ- *'Practice makes man Perfect'* । କେବଳ ଥରେ ଲେଖିଦେଲେ ସାହିତ୍ୟ ସର୍ବାଙ୍ଗ ସୁନ୍ଦର ହୁଏନାହିଁ । ସ୍ରଷ୍ଟାଙ୍କ ଦ୍ୱାରା ବାରମ୍ବାର ପଠନ ଓ ଆବଶ୍ୟକ ସଂଶୋଧନ ଯୋଗୁ ସାହିତ୍ୟ ଅନୁଭବ୍ୟ ତଥା ଅନବଦ୍ୟ ହୁଏ । ଅଭ୍ୟାସ ହେଉଛି ଏକ ବହୁମୂଲ୍ୟ ଉପାଦାନ ଯାହା ସ୍ରଷ୍ଟାମାନସର ସୁଦୃଢ଼ ସଂକଳ୍ପ ଓ ସୀମାହୀନ ଧୈର୍ଯ୍ୟର ସୁସଂହତ ରୂପ କହିଲେ ଅତ୍ୟୁକ୍ତି ହେବନାହିଁ । ସୁବର୍ଣ୍ଣର କାନ୍ତି ଅଛି, ହେଲେ ଏହାକୁ ମାଜିଦେଲେ ସେଇ କାନ୍ତି ଯେପରି ଅଧିକ ହୁଏ, ସେହିପରି ସ୍ରଷ୍ଟା ତାର ନିଜର ସୃଷ୍ଟିକୁ ନିଜେ ପଢ଼ି ତହିଁରେ ଉଚିତ ସଂଶୋଧନ କଲେ ସୃଷ୍ଟିର ଉଜ୍ଜ୍ୱଳତା ବୃଦ୍ଧିପାଏ । ***The New Encyclopaedia Britannica*** ଗ୍ରନ୍ଥରେ ଲେଖାଯାଇଛି -***"The Special Personality called genius may indeed be born, not made but skill in matching intention and expression comes with practice"*** ।

ଯେତେ ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟି ସମ୍ଭବ ହୋଇଛି ସେଗୁଡ଼ିକ ସ୍ରଷ୍ଟାଙ୍କ ଦ୍ୱାରା ପ୍ରକାଶନର ପୂର୍ବରୁ ବହୁବାର ପଠିତ ଓ ସଂଶୋଧିତ ହୋଇଛି । ରବୀନ୍ଦ୍ରନାଥ ସ୍ୱରଚିତ 'ଗୀତାଞ୍ଜଳି'ର ପ୍ରକାଶ ପୂର୍ବରୁ ତାହାକୁ ବାରମ୍ବାର ପାଠକରି ସଂଶୋଧନ କରିଥିଲେ । ମହାଯୋଗୀ ଶ୍ରୀଅରବିନ୍ଦ ସ୍ୱରଚିତ ବିଶ୍ୱବିଖ୍ୟାତ ଗ୍ରନ୍ଥ 'ସାବିତ୍ରୀ'କୁ ସମାପ୍ତି ପୂର୍ବରୁ ବହୁବାର ସଂଶୋଧନ କରିଥିଲେ ।

## ସାହିତ୍ୟର ମୁଖ୍ୟ ପ୍ରବୃତ୍ତି :

ସାହିତ୍ୟର ମୁଖ୍ୟ ପ୍ରବୃତ୍ତି ତିନିଗୋଟି । ସେଗୁଡ଼ିକ ଏହିପରି- ପ୍ରକାଶେଚ୍ଛା ଅର୍ଥାତ୍ ପ୍ରକାଶ କରିବାର ଇଚ୍ଛା, ମିମିଳିଷା ଅର୍ଥାତ୍ ଅନ୍ୟ ଚେତନାରେ ଏକୀଭୂତ ହେବାର ଇଚ୍ଛା ଏବଂ ପୁପୂର୍ଷା ଅର୍ଥାତ୍ ପରିପୂର୍ଣ୍ଣତାର ଇଚ୍ଛା । ଜୀବନ କେବଳ ତିଷ୍ଠି ରହିବାକୁ ଚାହେଁ ନାହିଁ, ଏଥି ସହିତ ଅଭିବ୍ୟକ୍ତ ହେବାକୁ ମଧ୍ୟ ଚାହେଁ । ଅଭିବ୍ୟକ୍ତିର ଇଚ୍ଛା ହିଁ ଯଥାର୍ଥ ବ୍ୟାକୁଳତା । ଅନ୍ୟ ଭାଷାରେ କୁହାଯାଇପାରେ ଯେ ଆପଣାକୁ ଅଧିକରୁ ଅଧିକ ଅନ୍ୟକୁ ଦେଇଦେବାର ପ୍ରବଣତାରୁ

ବ୍ୟାକୁଳତାର ଜନ୍ମ । ଏହି ବ୍ୟାକୁଳତା ସ୍ୱତଃସ୍ଫୂର୍ତ୍ତ । ଅନ୍ୟର ଉପକାର ପାଇଁ ମୁଖ୍ୟତଃ ଏହି ବ୍ୟାକୁଳତା ଅଭିପ୍ରେତ । ଜଣେ କିଛି ନୂଆକଥା ଜାଣି ଅନ୍ୟକୁ ତାହା ଜଣାଇଦେବାର ଆନନ୍ଦରୁ ପ୍ରକାଶେଚ୍ଛାର ସୃଷ୍ଟି । କେତେବେଳେ ରଙ୍ଗ, କେତେବେଳେ ଅଭିନୟ, କେତେବେଳେ ନୃତ୍ୟ, କେତେବେଳେ ଭାଷା ଏବଂ ଆଉ କେତେବେଳେ ଲିପି ହୁଏ ପ୍ରକାଶର ମାଧ୍ୟମ । ତେବେ ଯେତେ ମାଧ୍ୟମ ଅଛି, ସେଥି ମଧ୍ୟରେ ଶବ୍ଦ ଓ ଲିପିର ମାଧ୍ୟମ ସର୍ବୋତ୍କୃଷ୍ଟ । ***Renewellek and Austin Warren*** ଙ୍କ ମତରେ ***"Language is the material of literature as stone or bronze is of sculpture, painhts of pictures or sounds of music. But one should realise that language is not mere inert matter like stone" (Theory of Literature)*** ଅବଶ୍ୟ ଏକଥା ଠିକ ଯେ ପ୍ରକାଶ କରିବାର ଇଚ୍ଛା ପ୍ରକାଶିତ ମାଧ୍ୟମରେ ଏପରିକି ଶବ୍ଦ ମାଧ୍ୟମରେ ମଧ୍ୟ ପୂର୍ଣ୍ଣାଙ୍ଗ ରୂପ ପାଇପାରେ ନାହିଁ । ଶବ୍ଦର ପଶ୍ଚାତରେ ରହିଯାଏ ଅନେକ ଅଶବ୍ଦର ସ୍ଥିତି । ଗୋଟିଏ ଉଦାହରଣରୁ ଏହି କଥାଟି ସ୍ପଷ୍ଟ ହେବ । ବ୍ୟାସଦେବ ଶହେଲକ୍ଷ ଶ୍ଳୋକରେ ମହାଭାରତ ଗ୍ରନ୍ଥଟିକୁ ରଚନା କରିବାକୁ ଇଚ୍ଛା ରଖିଥିଲେ ହେଁ ବସ୍ତୁତଃ ଏକଲକ୍ଷ ଶ୍ଳୋକ ରଚନା କରିବାକୁ ସମର୍ଥ ହୋଇଥିଲେ ।

ଚେତନାର ଗବାକ୍ଷ ଫାଙ୍କରେ ଅନ୍ୟ ଭିତରକୁ ଯାଇ ସେଠାରେ ତାହା ସହ ଏକାତ୍ମତା ବୋଧ କରିବାର ଇଚ୍ଛା ହିଁ ମିମିକ୍ଷା । ଅନ୍ୟ ଦୁଃଖରେ ଦୁଃଖୀ ହେବା ଏବଂ ଅନ୍ୟ ସୁଖରେ ସୁଖୀହେବା ପରି ଦିବ୍ୟଗୁଣ ଏହାର ଅନ୍ତର୍ଗତ । ସହାନୁଭୂତି, ସଂବେଦନଶୀଳତା ଓ ଗଭୀର ଆତ୍ମୀୟତା ଏହାର ମୂଳତତ୍ତ୍ୱ । ଏହି ମିମିକ୍ଷାରୁ ଆଦିଶ୍ଳୋକର ସୃଷ୍ଟି । ବ୍ୟାଧହତ କ୍ରୌଞ୍ଚ ପକ୍ଷୀଟିର ବିରହରେ ଅନ୍ୟ ପକ୍ଷୀଟିର କାରୁଣ୍ୟ ସେଦିନ ସାଧକ ବାଲ୍ମୀକିଙ୍କୁ କବି ବାଲ୍ମୀକିରେ ପରିଣତ କରିଦେଲା । ସେ ଗାଇଉଠିଲେ ବିଶ୍ୱ ସାହିତ୍ୟର ଆଦିଶ୍ଳୋକ-

*'ମାଂ ନିଷାଦ ପ୍ରତିଷ୍ଠା ତ୍ୱମଗମଃ ଶାଶ୍ୱତୀସମାଃ ।*
*ଯତ୍ କ୍ରୌଞ୍ଚମିଥୁନାଦେକମବଧୀଃ କାମମୋହିତମ୍ ॥'*

ପୂପୂର୍ଷା ବା ପରିପୂର୍ଣ୍ଣତାର ଇଚ୍ଛା ସାହିତ୍ୟରେ ଥିବା ଅନ୍ୟତମ ବିଶିଷ୍ଟ ଉପାଦାନ । ଏହି ଇଚ୍ଛାରେ ଜୀବନକୁ ଏବଂ ଜଗତକୁ ପରିପୂର୍ଣ୍ଣତା ଆଣିଦେବାର ସୂତ୍ର ନିହିତ । ଯେଉଁଠାରେ ଅପୂର୍ଣ୍ଣତା ରହିଛି ଅର୍ଥାତ୍ ଯାହା ସବୁ ଅସଜଡ଼ା ହୋଇ ରହିଛି ତାକୁ ପୂର୍ଣ୍ଣ କରି ଦେବାର ତଥା ସଜାଡ଼ି

ଦେବାର ଇଚ୍ଛା ହିଁ ଏହାର ଅନ୍ତର୍ଭୁକ୍ତ । ମସ୍ତିଷ୍କ ମନର ଦୁର୍ଗମ ବନଭୂମିରେ ସାହିତ୍ୟିକ ଚଲାପଥଟିଏ ପ୍ରସ୍ତୁତ କରେ । ନିଜେ ଚାଲି ଅନ୍ୟକୁ ଚାଲିବାକୁ ପ୍ରେରଣା ଦିଏ । ଜୀବନ ସାଧାରଣତଃ ସମୁଦ୍ର ପ୍ରମାଣ କ୍ଷୋଭରେ ଆନ୍ଦୋଳିତ । ଏହି କ୍ଷୋଭର ତୀବ୍ରତାକୁ ହ୍ରାସ କରିବା ନିମନ୍ତେ ଏପରି ପ୍ରେରଣା କେତେକାଂଶରେ କ୍ଷମ ।

**ସାହିତ୍ୟ ଓ ବିଜ୍ଞାନ :**

ବିଜ୍ଞାନ କହିଲେ ବସ୍ତୁବାଦକୁ କେତେକ ବୁଝନ୍ତି । ଏହା ଏକ ଭ୍ରମ । ବସ୍ତୁବାଦ ହେଉଛି ବିଜ୍ଞାନର ଏକ ପ୍ରାତିଭାସିକ ରୂପ । ବିଜ୍ଞାନ ହେଉଛି ବାସ୍ତବତାର ଅନୁଶୀଳନ ଓ ଅନୁମୋଦନ ନିମିତ୍ତ ଏକ ବିଶେଷ ଜ୍ଞାନ ଯାହା ବୌଦ୍ଧିକତା ସହ ସମ୍ବନ୍ଧିତ । ନୂଆନୂଆ ବୈଜ୍ଞାନିକ ଆବିଷ୍କାର ଓ ଉଦ୍‌ଭାବନ-ପ୍ରଭାବରୁ ସାଧାରଣ ଜନଜୀବନରେ ସାହିତ୍ୟ ପ୍ରତି ଅନାସ୍ଥା ଭାବ, ଏକ ବିସ୍ମୟକର ବିଡ଼ମ୍ବନା । ଅବଶ୍ୟ ସ୍ଥୂଳଦୃଷ୍ଟିରେ ସାହିତ୍ୟ ଓ ବିଜ୍ଞାନ ମଧ୍ୟରେ କୌଣସି ଭାବସାମ୍ୟ ଦେଖିହୁଏ ନାହିଁ । ଦେଖି ନହେଲେ ମଧ୍ୟ ଭାବସାମ୍ୟ ଯେ ନାହିଁ ଏପରି ନୁହେଁ । ଦିନ ଆକାଶରେ ଖାଲିଆଖିକୁ ତାରାମାନେ ଦୃଶ୍ୟମାନ ନ ହେଲେ ହେଁ ତାରାମାନେ ସେତେବେଳେ ଉପସ୍ଥିତ ଥିବାପରି ସ୍ଥୂଳଦୃଷ୍ଟିରେ ସାହିତ୍ୟ ଓ ବିଜ୍ଞାନ ଭିତରେ ଥିବା ଭାବସାମ୍ୟ ଦୃଶ୍ୟ ନହେଲେ ମଧ୍ୟ ତାହା ଉପସ୍ଥିତ ଥାଏ । ପ୍ରକୃତପକ୍ଷେ ସାହିତ୍ୟ ଓ ବିଜ୍ଞାନ ପରସ୍ପରର ପରିପନ୍ଥୀ ନୁହଁନ୍ତି, ବରଂ ଅନୁପନ୍ଥୀ । ବିଜ୍ଞାନ କହିଲେ ବିଶିଷ୍ଟ ଜ୍ଞାନ ବା ସମ୍ୟକ୍ ଜ୍ଞାନ (Complete Knowledge) କୁ ବୁଝାଏ । ସାହିତ୍ୟ ଏହି ଜ୍ଞାନର ସୁସଂହତ ସୁମସମଞ୍ଜସ ରୂପ । ଜୀବନ ଗୋଟିଏ ପକ୍ଷୀ ହେଲେ ସାହିତ୍ୟ ଓ ବିଜ୍ଞାନ ଏହାର ଦୁଇଟି ପକ୍ଷ । ***Mathew Arnold*** ମତରେ ***"Without poetry, our science will appear incomplete. Thus, the relationship between Science and Literature has become mutual"*** ।

ଭୌତିକ ବିଜ୍ଞାନର ବହୁଳ ପ୍ରସାର ହେବାରୁ ମାନବଜାତିକୁ ବହୁ ସିଦ୍ଧି ମିଳିଛି । ୨୦୦୨ ମସିହା ଡିସେମ୍ବର ମାସ ଓ ୨୦୦୩ ଜାନୁୟାରୀ ମାସରେ କ୍ଲୋନିଂ ମାନବ ଶିଶୁର ଜନ୍ମସମ୍ଭବ ହୋଇଛି । ଯୋଗାଯୋଗ ବିପ୍ଳବ ମାଧ୍ୟମରେ ଭୌଗୋଳିକ ଦୂରତ୍ୱ ନିଜର ଅସ୍ମିତା ହରାଇ ବସିଛି । ବିଜ୍ଞାନର ନୂଆନୂଆ

ଉଦ୍‌ଭାବନ ବଳରେ ସମଗ୍ର ପୃଥିବୀ କ୍ରମଶଃ ମଣିଷର ହାତ ପାପୁଲିକୁ ଗୋଟାଇ ହୋଇଆସୁଛି । ପ୍ରଯୁକ୍ତିବିଦ୍ୟାର ପ୍ରସାରକରି ବୈଜ୍ଞାନିକମାନେ ସାଧାରଣ ଜୀବନଧାରାକୁ ସମୃଦ୍ଧ କରିଛନ୍ତି । ଆଗଭଳି ଦୁର୍ଭିକ୍ଷ ମହାମାରୀରେ ଆଉ ପ୍ରାୟ ଜନକ୍ଷୟ ହେଉନାହିଁ । ଚିକିତ୍ସା ବିଜ୍ଞାନର ପ୍ରଭୂତ ଉନ୍ନତିହେତୁ ବହୁ ଦୁଃସାଧରୋଗ ଆୟତ୍ତାଧୀନ ହୋଇଛି । ଚନ୍ଦ୍ର ଅଭିଯାନ ପରେ ମଙ୍ଗଳଗ୍ରହ ସମେତ ଅନ୍ୟ କେତେକ ଗ୍ରହ ଅଭିଯାନ ସଂପର୍କରେ ଗଭୀର ଗବେଷଣା ଚାଲୁ ରହିଛି । କହିବାର ତାତ୍ପର୍ଯ୍ୟ ଏହି କି ଯେ ମଣିଷର ଜିଜ୍ଞାସା ଅନ୍ତହୀନ ଓ ଗଭୀର । ଏହି ଜିଜ୍ଞାସା, ଅଧ୍ୟବସାୟ, ସାହସ ଓ ଧୈର୍ଯ୍ୟ ବଳରେ ସେ ମହାସାଗର ଓ ମହାକାଶକୁ କେତେକାଂଶରେ ଜୟ କରି ସାରିଲାଣି ଏବଂ ଭବିଷ୍ୟତରେ ଅଧିକରୁ ଅଧିକ ଜୟ କରିବ । ଏହା ସ୍ୱୀକାର୍ଯ୍ୟ ଯେ ସମ୍ପ୍ରତି ଜଗତୀକରଣ ଓ ଉଦାରୀକରଣ ଉପରେ ଅତ୍ୟଧିକ ଗୁରୁତ୍ୱ ଆରୋପିତ ହେଉଛି । ଉପଭୋକ୍ତା ଭାବର ବତାସରେ ଭାବବାଦ ଉଡ଼ିଯିବ ବୋଲି କିଏ କିଏ କହୁଛନ୍ତି । କିନ୍ତୁ ତାହା ହେବନାହିଁ ।

ମଣିଷ ଆଜି ଚେତନାରେ ବିକଶିତ ହେବା ପରିବର୍ତ୍ତେ ବିଜ୍ଞପିତ ହେବା ପାଇଁ ଅଧିକ ଇଛା କରୁଛି ବୋଲି ମୂଲ୍ୟବୋଧକୁ ପାଦରେ ଆଡ଼େଇ ଦେଇ ମୂଲ୍ୟକୁ ଶ୍ରେଷ୍ଠ ସ୍ଥାନ ଦେବାରେ ଲାଗିଛି । ଫଳତଃ ଏ ପର୍ଯ୍ୟନ୍ତ ବିଶ୍ୱଜୀବନ ଯେତିକି ସୁନ୍ଦର ହେବାକଥା ସେତିକି ସୁନ୍ଦର ହୋଇପାରିନାହିଁ । ପୁନଶ୍ଚ ବିଶ୍ୱଜୀବନର ଏକକ ଭାବରେ ଗୃହୀତ ବ୍ୟକ୍ତିଜୀବନକୁ ଅହଂ ଓ ସ୍ୱାର୍ଥ କବଳିତ କରି ରଖିଛି । ଆଜିର ମଣିଷ ନିଜର ସ୍ୱାର୍ଥ ସିଦ୍ଧି ନିମନ୍ତେ ଅନ୍ୟମାନଙ୍କର ସର୍ବନାଶ କରିବାକୁ କୁଣ୍ଠିତ ହେଉନାହିଁ । ବିଜ୍ଞାନ ଯାହା କି 'ବହୁଜନ ସୁଖାୟ, ବହୁଜନ ହିତାୟ' ଦୀକ୍ଷାରେ ଦୀକ୍ଷିତ, ତାହାର ଅପବ୍ୟବହାର କରି ମଣିଷ ପାଉଛି ପୈଶାଚିକ ଆନନ୍ଦ । ଏହି ପୈଶାଚିକ ଆନନ୍ଦର ବୀଭତ୍ସ ରୂପ ହେଉଛି ଆତଙ୍କବାଦ । ଆତଙ୍କବାଦ ହୋଇଛି ସାଂପ୍ରତିକ ବିଶ୍ୱର ପରମ ଆତଙ୍କ । ଚେତନାର ବିକାଶ ନ ହେଲେ ହୃଦୟର ପରିବର୍ତ୍ତନ ଅସମ୍ଭବ । ହୃଦୟର ପରିବର୍ତ୍ତନ ନ ହେଲେ ଆତଙ୍କବାଦର ବିନାଶ ଦିବାସ୍ୱପ୍ନ ମାତ୍ର । କେବଳ ଆଇନକାନୁନ୍‌ର ଭୟ ଦେଖାଇ ଏହି ବିରାଟ କାର୍ଯ୍ୟ ସମାପନ କରିବା ଆଦୌ ସମ୍ଭବ ନୁହେଁ । ଯଦି ଯଥାର୍ଥରେ ସାହିତ୍ୟ ଓ ବିଜ୍ଞାନର ସଦ୍‌ବ୍ୟବହାର କରାଯାଆନ୍ତା ତେବେ ବ୍ୟକ୍ତି ଚେତନାର ବିକାଶ ଆଉ ଦୁରୂହ ବ୍ୟାପାର ହୋଇ ରହନ୍ତାନାହିଁ ।

ବ୍ୟକ୍ତି ଜୀବନକୁ ନେଇ ସମାଜ ଜୀବନ, ରାଷ୍ଟ୍ର ଜୀବନ ସର୍ବୋପରି ବିଶ୍ୱ ଜୀବନ ସଂଗଠିତ । ବ୍ୟକ୍ତି ଜୀବନର ଅଗ୍ରଗତି ନିମନ୍ତେ ଦୁଇଗୋଟି କଥା ଏକାନ୍ତ ଆବଶ୍ୟକ । ଗୋଟିଏ ହେଉଛି ମସ୍ତିଷ୍କ ଓ ଅନ୍ୟଟି ହୃଦୟ । ଦୁଇଟି ଭିତରେ ସମନ୍ୱୟ ରହିଲେ ବିଶ୍ୱ ପରିବେଶ ଅଧିକରୁ ଅଧିକ ସୁନ୍ଦର ଓ ମଧୁମୟ ହୋଇପାରିବ । ମୁଖ୍ୟତଃ ବୌଦ୍ଧିକତାରୁ ବିଜ୍ଞାନର ଜନ୍ମ ହେଲାବେଳେ ହୃଦୟବତ୍ତାରୁ ସାହିତ୍ୟର ଜନ୍ମ । ସାହିତ୍ୟ କହିଲେ ଆମେ ଏଠାରେ ଛାନ୍ଦ, ଚଉପଦୀ, ନାଟକ ଓ ଉପନ୍ୟାସକୁ ବୁଝିବାନାହିଁ । ସାହିତ୍ୟ କହିଲେ ଆମେ ଏକ ଆଲୋକିତ ଶକ୍ତି ଓ ଶୃଙ୍ଖଳିତ ସାମର୍ଥ୍ୟକୁ ବୁଝିବା ଯାହା ଅମାନବିକତାର ଅନ୍ଧକାରକୁ ଦୂର କରିବାକୁ କ୍ଷମ । ସମାଜ, ରାଷ୍ଟ୍ର ଓ ସମଗ୍ର ବିଶ୍ୱ ଏକ ଏକ ଦ୍ୱିଚକ୍ର ଯାନ ହେଲେ ବିଜ୍ଞାନ ତା'ର ଗୋଟିଏ ଚକ ହେଲାବେଳେ ସାହିତ୍ୟ ଅନ୍ୟ ଗୋଟିଏ ଚକ ହୋଇଥାଏ । ଯାନର ଯଥାର୍ଥ ଗତି ନିମନ୍ତେ ଦୁଇଟିଯାକ ଚକର ଆବଶ୍ୟକତା ରହିଛି । ଆଜିର ପୃଥିବୀରେ ବିତ୍ତ ବଢୁଛି, ତାହା ସହ ବଢୁଛି ହିଂସ୍ରତା ଓ ଭୟ, ପୁଣି ବଢୁଛନ୍ତି ଅସ୍ତ୍ରଶସ୍ତ୍ରମାନେ । ଶାନ୍ତିର ପ୍ରତିଷ୍ଠା ନିମନ୍ତେ ବହୁଦେଶ ଯୁଦ୍ଧକୁ ଅସ୍ତ୍ର ରୂପେ ବ୍ୟବହାର କରିବାକୁ ଆଗ୍ରହୀ ହେଉଛନ୍ତି । ହୃଦୟ ନାହିଁ, କେବଳ ମସ୍ତିଷ୍କ ଶକ୍ତିର ଲଢ଼େଇ ଚାଲିଛି । ବିଶ୍ୱଜୀବନର ସୁରକ୍ଷା ଆଜି ଏକାନ୍ତ କାମ୍ୟ । ଏହି ଦୃଷ୍ଟିରୁ ଆଲୋଚନା କଲେ ଜଣାଯିବ ଯେ- ସଂପ୍ରତି ବିଶ୍ୱରେ ବିଜ୍ଞାନ(ବୌଦ୍ଧିକତା)ର ପ୍ରୟୋଜନୀୟତା ଯେତିକି ସାହିତ୍ୟ(ହୃଦୟବତ୍ତା)ର ଆବଶ୍ୟକତା ମଧ ସେତିକି । ଅନ୍ନ ଓ ବ୍ୟଞ୍ଜନର ସମ୍ମିଶ୍ରଣରେ ଭୋଜନ ପୂର୍ଣ୍ଣାଙ୍ଗ ହୁଏ । କେବଳ ଗୋଟିଏ ଉପରେ ଅତ୍ୟଧିକ ଗୁରୁତ୍ୱଦେବା ଏବଂ ଅନ୍ୟଟିକୁ ଅବହେଳା କରିବା ଅର୍ଥ ଅତୃପ୍ତି ଓ ଅସ୍ୱାସ୍ଥ୍ୟକୁ ନିମନ୍ତ୍ରଣ କରିବା । ଠିକ୍ ସେହିପରି ସାହିତ୍ୟ ଓ ବିଜ୍ଞାନମଧରୁ କେବଳ ଗୋଟିଏ ଉପରେ ଅତ୍ୟଧିକ ଗୁରୁତ୍ୱଦେବା ଓ ଅନ୍ୟଟିକୁ ଅବହେଳା କରିବା ଅର୍ଥ ପୂର୍ଣ୍ଣତା ପରିବର୍ତ୍ତେ ଜୀବନକୁ ଏକ ନିୟନ୍ତ୍ରଣାଧୀନ ବିଶୃଙ୍ଖଳା ଅଥବା ଶୃଙ୍ଖଳିତ ଅଡୁଆରେ ପରିଣତ କରିବା ।

**ସାହିତ୍ୟ ଓ ମାନବିକତା :**

ଜାତିଧର୍ମବର୍ଣ୍ଣ ନିର୍ବିଶେଷରେ ମାନବିକ ମୂଲ୍ୟବୋଧ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ବ୍ୟକ୍ତିର ଦୃଷ୍ଟିକୁ ଅନ୍ଧାରରୁ ଆଲୋକ ଆଡ଼କୁ, ସ୍ୱେଚ୍ଛାଧୀନତାରୁ

ସ୍ୱାଧୀନତା ଆଡ଼କୁ, ରୁକ୍ଷତାରୁ କୋମଳତା ଆଡ଼କୁ ନେବା ସାହିତ୍ୟର ଲକ୍ଷ୍ୟ । ସାହିତ୍ୟ ଏକ ଅଶରୀରୀ ଶକ୍ତି, ହୃଦୟରେ ଏହାର ଅଧିବାସ । ଏହା ସ୍ପଷ୍ଟ ଯେ ସାହିତ୍ୟକୁ ବୁଝିଥିବା ବ୍ୟକ୍ତି ଓ ବୁଝିନଥିବା ବ୍ୟକ୍ତି ଭିତରେ ଅନେକ ଯାହାକୁ ନିରେଖି ଦେଖିଲେ ଜଣେ ଭଲରେ ବୁଝିପାରିବ ପାର୍ଥକ୍ୟ ରହିଛି । ସାହିତ୍ୟକୁ ଆଦର କରୁଥିବା ତଥା ବୁଝିଥିବା ବ୍ୟକ୍ତି ମଧୁରତା, ସହନଶୀଳତା, ଆତ୍ମୀୟତା ଓ ସମମର୍ମିତା ଉପରେ ଗୁରୁତ୍ୱ ଆରୋପ କରିଥାନ୍ତି । ଏହି ସମସ୍ତ ମାନବିକ ସଦ୍‌ଗୁଣ ବ୍ୟକ୍ତିକୁ ସ୍ଥୂଳରୁ ସୂକ୍ଷ୍ମଆଡ଼କୁ ଏବଂ ନିଶ୍ଚେତନାରୁ ଚେତନା ଆଡ଼କୁ ନେଇଯାଇପାରେ । ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଭାଷାରେ - *"ସାହିତ୍ୟ ଆମାଦେର ସମସ୍ତ ମନୁଷ୍ୟତ୍ୱେର ପୁଷ୍ଟି ସାଧନ କରେ ।"*

*-(ସାହିତ୍ୟ)*

ଜୀବନ ଓ ଜଗତ ମଧ୍ୟରେ ସଂଯୋଗ ସେତୁ ହୋଇ ଯଥାର୍ଥ ସାହିତ୍ୟ ବହୁ ମାନବିକ ଅନୁଭୂତିର ନକ୍‌ସା ଆଙ୍କେ । ସେହି ନକ୍‌ସାକୁ ଦେଖି ପାଠକର ଚିତ୍ତଭୂମି କ୍ଷଣକପାଇଁ ହେଲେ ମଧ୍ୟ ଅଭୂତପୂର୍ବ ଆନନ୍ଦରେ ଉଦ୍‌ଭାସିତ ହୋଇଉଠେ । କୌଣସି ଦେଶ, ଜାତି ଅଥବା ଧର୍ମର ବନ୍ଧନରେ ମାନବିକତା ବନ୍ଧା ପଡ଼େନାହିଁ । ଏପରି କି ନୈତିକତାର ରଜ୍ଜୁ ମଧ୍ୟ ଏହାକୁ ବାନ୍ଧିପାରେ ନାହିଁ । ସବୁର ଊର୍ଦ୍ଧ୍ୱରେ ଥାଇ ଉଜ୍ଜ୍ୱଳ ଆଲୋକ ବିକିରଣ କରି ଏକ ସର୍ବକାଳୀନ ଓ ସାର୍ବଜନୀନ ସତ୍ୟରୂପେ ତାହା ଝଲସି ଉଠେ । ଦୁଇ ଭିନ୍ନ ଭିନ୍ନ ପରିବେଶରେ ଲାଳିତପାଳିତ ଦୁଇଜଣ ବ୍ୟକ୍ତିଙ୍କ ଭିତରେ ଥିବା ମାନବିକତା ଭିନ୍ନ ଭିନ୍ନ ହୁଏନାହିଁ । ଏହା ଏକ ଓ ଅଭିନ୍ନ ହୋଇରହିଥାଏ । ବିବେକର ଭିତ୍ତିରେ ମାନବିକତାର ସ୍ଥିତି ରହିଛି ବୋଲି ଆମେ କହିପାରିବା । ଏହି ମାନବିକତାର ନିରାଜନା କରେ ଯଥାର୍ଥ ସାହିତ୍ୟ ।

କାଳେକାଳେ ମାନବିକତାର ପ୍ରାସଙ୍ଗିକତା ରହିଛି । କାରଣ ଏହା ଏକ ମୂଲ୍ୟ ନୁହେଁ, ଏକ ମୂଲ୍ୟବୋଧ । ମୂଲ୍ୟ ବଦଳି ଯାଇପାରେ, କିନ୍ତୁ ମୂଲ୍ୟବୋଧ ବଦଳିପାରେ ନାହିଁ । ଆଜି ସମଗ୍ର ବିଶ୍ୱରେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ରାଜତ୍ୱ ଆରମ୍ଭ ହୋଇଛି । ଏହା ଅଭିନନ୍ଦନୀୟ କାରଣ ଜୀବନକୁ ସହଜ ଓ ସୁଗମ କରିଦେବାରେ ଏହାର ଅବଦାନ ରହିଛି । ତେବେ ବୈଜ୍ଞାନିକ ସିଦ୍ଧି ଆସିବା ଫଳରେ ବିଶ୍ୱଜୀବନ ଯେତିକି ସମୃଦ୍ଧ ହେବା କଥା, ସେତିକି ହୋଇନାହିଁ । ତାହାର କାରଣ ହେଉଛି ସବୁ ପ୍ରାଚୁର୍ଯ୍ୟ ସତ୍ତ୍ୱେ ମାନବିକତାର ଅଭାବ ରହିଛି ।

ଏପରି କୁହାଯାଇପାରେ ଯେ ଅଶ୍ୱ ଅଛି, ତା'ର ଗତି ମଧ୍ୟ ଅଛି, ମାତ୍ର ଲଗାମଟି ନଥିବାରୁ ପ୍ରଗତି ନାହିଁ । ଏଥିରୁ ଲଗାମର ଭୂମିକା ଯେ କେତେ ଗୁରୁତ୍ୱପୂର୍ଣ୍ଣ, ତାହା ସହଜରେ ଅନୁମେୟ । ଏହି ଲଗାମର ଭୂମିକାହିଁ ମାନବିକତାର ଭୂମିକା ।

## ସାହିତ୍ୟ ଓ ଆଧ୍ୟାତ୍ମିକତା :

ଆଧ୍ୟାତ୍ମିକତା ସାହିତ୍ୟ ନୁହେଁ କିମ୍ବା ସାହିତ୍ୟ ମଧ୍ୟ ଆଧ୍ୟାତ୍ମିକତା ନୁହେଁ, ମାତ୍ର ଉଭୟଙ୍କର ଲକ୍ଷ୍ୟରେ ସାମ୍ୟ ରହିଛି । ଲକ୍ଷ୍ୟଟି ହେଉଛି ଚେତନାର ବିକାଶ । ସାହିତ୍ୟରେ ପରିବେଷିତ ଆନନ୍ଦ ବ୍ରହ୍ମାନନ୍ଦ ନୁହେଁ, ବ୍ରହ୍ମାନନ୍ଦର ନିକଟବର୍ତ୍ତୀ, ତେଣୁ ବ୍ରହ୍ମାନନ୍ଦ ସହୋଦର । ଆଧ୍ୟାତ୍ମିକତା ଆଣିଦିଏ 'ତତ୍ତ୍ୱମସି', 'ଅହଂ ବ୍ରହ୍ମାସ୍ମି' ପ୍ରଭୃତି ଜ୍ଞାନ ଅର୍ଥାତ୍ ଆତ୍ମଜ୍ଞାନ ଏବଂ ସାହିତ୍ୟ ଆତ୍ମଜ୍ଞାନ ପାଇଁ ଆଣିଦିଏ ଅନୁକୂଳ ମାନସିକତା । ଜୀବନ ଚିନ୍ତାରୁ ଆସେ ଆତ୍ମଜ୍ଞାନ ଯାହା ଆଧ୍ୟାତ୍ମିକତା ଓ ସାହିତ୍ୟ ଉଭୟର ଭିତ୍ତି ସ୍ୱରୂପ କାର୍ଯ୍ୟ କରିଥାଏ । ଜୀବନଚିନ୍ତା କହିଲେ ଦୀକ୍ଷା ଗ୍ରହଣ, ଅରଣ୍ୟ ନିବାସ, ଭସ୍ମଲେପନକୁ ବୁଝାଏ ନାହିଁ ବରଂ ସେହି ଅନୁଚିନ୍ତାକୁ ବୁଝାଏ ଯାହାଦ୍ୱାରା ଜଣେ ବ୍ୟକ୍ତି ନିଜର ପଶୁତ୍ୱକୁ ଅତିକ୍ରମ କରିପାରେ । କାମକୁ ଜୟକରି ସେ ପାଇଥାଏ ପ୍ରେମର ରୁଚିସ୍ନିଗ୍ଧ ବିପୁଳ ଐଶ୍ୱର୍ଯ୍ୟ, ହିଂସାକୁ ଜୟକରି ପାଇଥାଏ ସହାନୁଭୂତିର ମୋହନ ମାଧୁର୍ଯ୍ୟ, ଲୋଭକୁ ତ୍ୟାଗକରି ସେ ପାଇଥାଏ ତ୍ୟାଗର ମହତ୍ତ୍ୱ, ଆତ୍ମଗର୍ବକୁ ଜୟକରି ସେ ପାଇଥାଏ କମନୀୟ ବ୍ୟକ୍ତିତ୍ୱ । ସାହିତ୍ୟର ବାଟ ଦେଇ ଆଧ୍ୟାତ୍ମିକତା ଆଡ଼କୁ ଅଗ୍ରସର ହେବା ଅପେକ୍ଷାକୃତ ସହଜ । କାରଣ ମାନବିକତା ହେଉଛି ଆଧ୍ୟାତ୍ମିକତାର ମୂଳକଥା, ଯାହା ହେଉଛି ସାହିତ୍ୟର ମୂଳଧନ । ଆଧ୍ୟାତ୍ମିକତା ହେଉଛି ଏକ ଆହ୍ୱାନ, ଏକ ଅଭିଯାନ, ଏକ ପ୍ରତିଶ୍ରୁତି । ମେଘ ପରି, ଜନନୀ ପରି, ଆକାଶ ପରି ସେ ଆମ ଜୀବନ ଉପରକୁ ନଇଁଆସେ , ଅହଂର ଦର୍ପଣରେ ସେ ସଂସାରକୁ ନଦେଖି ସମଗ୍ରତା ଭିତରେ ଆପଣାକୁ ଦେଖିବାକୁ ବାଟ ବତାଏ । ସେବା, ଶାସନ, ଶିକ୍ଷା, ରାଜନୀତି କହିଲେ ଯେଉଁ ଦର୍ପ କୋଳାହଳକୁ ବୁଝାଯାଏ ତାହାକୁ ସେପରି ବୁଝିବାକୁ ଆଧ୍ୟାତ୍ମିକତା ଦିଏନାହିଁ, ଅଲଗା ବାଗରେ ବୁଝିବାକୁ ଦିଏ । ସେ କାହାକୁ ପ୍ରତ୍ୟାଖ୍ୟାନ କରେନାହିଁ ବରଂ ସେଗୁଡ଼ିକ ଉପରେ ନୂତନ ଆଲୋକ ପକାଏ, ଆତ୍ମ-ଆବିଷ୍କାର, ଆତ୍ମ-ଉପଲବ୍ଧି ଓ ଆତ୍ମ-ଅଭିବ୍ୟକ୍ତିର ସାମର୍ଥ୍ୟ ଆଣିଦିଏ । ସାହିତ୍ୟ ଦିଏ ଏଥିନିମନ୍ତେ ଯଥାଯୋଗ୍ୟ ପ୍ରେରଣା ଓ ଦିଗ୍‌ଦର୍ଶନ ।

ଶ୍ରୀଅରବିନ୍ଦଙ୍କ ଭାଷାରେ- *"Literature like anything else can be made an instrumentation for the Divine Life. It can be made of some spiritual importance, if it is taken up with that aim"*.

- *(Letters on Poetry, Literature and Art)*

ଅଜ୍ଞାନତାକୁ ଅତିକ୍ରମ କରି ନିଜକୁ ନିଜେ ପାଇବା ହିଁ ବ୍ୟକ୍ତି ଜୀବନର ଯଥାର୍ଥ ଲକ୍ଷ୍ୟ ଓ ଚରମ ସାର୍ଥକତା । ସାହିତ୍ୟ ଏହି ଲକ୍ଷ୍ୟ ପୂରଣ ଦିଗରେ କେତେକାଂଶରେ ସହାୟତା କରେ । ମନର ଶକ୍ତି ଏପରିକି ଉଚ୍ଚମନର ଶକ୍ତି ମଧ ସଚ୍ଚିଦାନନ୍ଦଙ୍କର ସ୍ୱରୂପକୁ ଧରିରଖିପାରେନାହିଁ । ସେହି ସ୍ୱରୂପର ପ୍ରତିଫଳନକୁ ମାତ୍ର ଅଳ୍ପ ସମୟ ପାଇଁ ଧରିରଖିପାରେ । ଚିତ୍‌ଶକ୍ତି ଆମକୁ ସଚ୍ଚିଦାନନ୍ଦଙ୍କର ଦର୍ଶନ ଓ ସ୍ପର୍ଶଲାଭ କରାଇ ପାରନ୍ତି । ଏହି ଚିତ୍‌ଶକ୍ତି ହିଁ ବିଶ୍ୱକୁ ଗଢ଼ିଛି । ସାହିତ୍ୟ ଆମର ମନର ଶକ୍ତିକୁ ବହୁଗୁଣିତ କରିବାକୁ ସମର୍ଥ ହୋଇପାରେ, ଯେଉଁ ସାମର୍ଥ୍ୟ ଦ୍ୱାରା ଆମେ ଚିତ୍‌ଶକ୍ତିର ଭୂମି ସ୍ପର୍ଶ ନକଲେ ମଧ ତାହାର ନିକଟବର୍ତ୍ତୀ ହୋଇଥାଉ । ମଣିଷ ଯାହା ହୋଇଛି ଓ ହେବାକୁ ବାକି ଅଛି ତାହା ଭିତରେ ଅନେକ ଦୂରତ୍ୱ ରହିଛି । ଏହି ଦୂରତ୍ୱକୁ ଅତିକ୍ରମ କରିବା ପାଇଁ ସାହିତ୍ୟ ଦିଏ ଅସୀମ ପ୍ରେରଣା । ନିଜ ଛାଞ୍ଚରେ ଅନ୍ୟକୁ ଢାଳିବା, ନିଜ ବାଗରେ ଅନ୍ୟକୁ ଚଳାଇବା ଅଜ୍ଞାନତାର ଚିହ୍ନ । ଅଜ୍ଞତାର ପ୍ରତ୍ୟାଖ୍ୟାନ ହିଁ ଆଧାତ୍ମିକତାର ଭିତ୍ତି । ଅଜ୍ଞାନତା ହେଉଛି ସଂକୀର୍ଣ୍ଣତା, ଆଧାତ୍ମିକତା ହେଉଛି ପ୍ରସାରତା । ଏହି ସଂକୀର୍ଣ୍ଣତାକୁ ସାହିତ୍ୟ ଅନୁମୋଦନ କରେନାହିଁ, ପ୍ରସାରଣଶୀଳତାକୁ ଦେଶକାଳ ନିର୍ବିଶେଷରେ ଉଚ୍ଚାସନ ଦେଇଥାଏ ।

ଅନୁରାଗର ମାର୍ଗରେ ଆତ୍ମାନୁସନ୍ଧାନ, ଆତ୍ମାନୁଶୀଳନ ପୁଣି ଆତ୍ମାଭିବ୍ୟକ୍ତି ହିଁ ଆଧ୍ୟାତ୍ମିକତା । ଏହା କୌଣସି ଧର୍ମର ଅନ୍ତର୍ଭୁକ୍ତ ନୁହେଁ, ବରଂ ସମସ୍ତ ଧର୍ମର ଊର୍ଦ୍ଧ୍ୱରେ ଅଧିଷ୍ଠିତ ଏକ ସ୍ୱତନ୍ତ୍ର କଥା, ପୁଣି ଏକ ସମୟରେ ଦେଶକାଳଗତ ଓ ଦେଶକାଳାତୀତ । ବିଶ୍ୱଗ୍ରାମ *(Global Village)* ଗଠନରେ ଏହା କେବଳ ସମର୍ଥ, ଏଥିରେ ଦ୍ୱିମତ ନାହିଁ । ଆଧାତ୍ମିକତା ଦେହ, ପ୍ରାଣ, ମନ, ପରିବାର, ସମାଜ, ଶିଳ୍ପ, ବାଣିଜ୍ୟ, ସଂଗୀତ, ସ୍ଥାପତ୍ୟ ଓ ବିଜ୍ଞାନ ସମେତ ଜୀବନର ସମସ୍ତ ଦିଗକୁ ସ୍ୱୀକାର କରିବା ସଙ୍ଗେସଙ୍ଗେ ଏ ସବୁରେ ଗୁଣାତ୍ମକ ଅଭିବୃଦ୍ଧି ପାଇଁ ମାର୍ଗଦର୍ଶନ ଓ ଅନୁପ୍ରେରଣା ଦିଏ, ବିଫଳତାକୁ ସଫଳତାର ପାହାଚ ଭାବରେ ଗ୍ରହଣ କରେ, ସମସ୍ତଙ୍କୁ ସାଙ୍ଗରେ ଧରି ଚାଲିବାର ସାହସ ସୃଷ୍ଟିକରେ, ବିଶ୍ୱଦୃଷ୍ଟି *(World View)* ମାଧ୍ୟମରେ ନିଜକୁ ଓ ଅନ୍ୟକୁ ଦେଖିବାକୁ ପ୍ରୟାସ କରେ ।

ଆଧ୍ୟାତ୍ମିକତାର ପବିତ୍ର ସ୍ପର୍ଶରେ ବ୍ୟକ୍ତିସତ୍ତା ସାମଗ୍ରିକ ଭାବରେ ଉତ୍ଫୁଲ୍ଲ ହୋଇଉଠୁଥିବାବେଳେ, ସାହିତ୍ୟର ସୁକୁମାର ସ୍ପର୍ଶରେ ତାହା କେତେକାଂଶରେ ପୁଲକିତ ହୋଇଉଠେ । ଆତ୍ମାତିକ୍ରମଣ ଅର୍ଥାତ୍ ନିଜକୁ ନିଜେ ଅତିକ୍ରମ କରିଯିବା ହିଁ ଯଥାର୍ଥ ଅଧ୍ୟାତ୍ମିକତା । ଏହାଦ୍ୱାରା ଜୀବନର ପ୍ରକୃତ ଲକ୍ଷ୍ୟ ସାଧିତ ହୁଏ । ଶ୍ରୀମା କହନ୍ତି- *"Our worth lies in the measure of our effort to exceed ourselves and to exceed ourselces is to attain the Divine."*- ଏକଥା ସ୍ୱୀକାର୍ଯ୍ୟ ଯେ ସାହିତ୍ୟ ଆତ୍ମାତିକ୍ରମଣ କରାଇପାରେ ନାହିଁ, ମାତ୍ର ଏଥି ନିମିତ୍ତ ଅନୁକୂଳ ପରିବେଶ ସୃଷ୍ଟି କରିପାରେ ।

## ସାହିତ୍ୟର ସ୍ଥିତି :

ସାହିତ୍ୟର ସ୍ଥିତି ଅପରାବିଦ୍ୟାର ଉର୍ଦ୍ଧ୍ୱରେ ଓ ପରାବିଦ୍ୟାର ନିମ୍ନରେ । ଭୌତିକ ଜଗତକୁ କେନ୍ଦ୍ରକରି ତିଷ୍ଠିଥିବା ବିଦ୍ୟାକୁ କୁହାଯାଏ ଅପରାବିଦ୍ୟା । ଚେତନାର ଜଗତକୁ ଭିତ୍ତିକରି ସଂଗଠିତ ବିଦ୍ୟାକୁ କୁହାଯାଏ ପରାବିଦ୍ୟା । ସାହିତ୍ୟ ଅପରାବିଦ୍ୟାର ସୀମାବଦ୍ଧତାରୁ ମୁକ୍ତ ହୋଇଛି, ମାତ୍ର ପରାବିଦ୍ୟାର ଅସୀମବଳୟରେ ସ୍ଥାନିତ ହୋଇପାରିନାହିଁ । ଏହିପରି ଏକ ମଧ୍ୟବର୍ତ୍ତୀ ସ୍ଥିତିରେ ସାହିତ୍ୟର ଅବସ୍ଥିତି । ସାହିତ୍ୟକୁ ଆଧ୍ୟାତ୍ମିକତାର ମୁଖଶାଳା ଓ ଜୀବନରୂପୀ ନିବନ୍ଧର ସୁଖପାଠ୍ୟ ପ୍ରାକ୍‌କଥନ ବୋଲି ମଧ୍ୟ କୁହାଯାଇପାରେ । ମାନବ-ଚେତନାର ଉତ୍ତରଣ ଓ ମହାଚେତନାର ଅବତରଣ ନିମନ୍ତେ ଏହା ଏକ ସୁଉଚ୍ଚସିଡ଼ି । ଅପରାବିଦ୍ୟାକୁ ସାହିତ୍ୟ ଅବମାନନା କରେନାହିଁ ବରଂ ପରାର୍ଦ୍ଧରେ ପହଞ୍ଚିବାର ଏକ ମାଧ୍ୟମ ବୋଲି ବିଚାର କରେ । ପଦାର୍ଥ ବିଜ୍ଞାନଠାରୁ ମନୋବିଜ୍ଞାନ ତଥା ସମାଜବିଜ୍ଞାନ ପର୍ଯ୍ୟନ୍ତ ସମସ୍ତ ବିଦ୍ୟାରୁ ଆବଶ୍ୟକ ଉପାଦାନ ସାହିତ୍ୟରେ ବରଣୀୟ । ତେଣୁ ସାହିତ୍ୟକୁ *'Finer spirit of all knowledge'* ବୋଲି କୁହାଯାଏ । ହତାଶାର ଗୈରିକମ୍ଳାନତା ଏଥିରେ ନ ଥାଏ, ଥାଏ ଆଶାର ସୁବର୍ଣ୍ଣକାନ୍ତି, ବୈରାଗ୍ୟର ହିମଶୀତଳତା ଏଥିରେ ନ ଥାଏ, ଥାଏ ଅନୁରାଗର ଅପୂର୍ବ ଉଷ୍ମତା, ତିକ୍ତ ଓ ବିଷାକ୍ତ ପରିବେଶ ଏଥିରେ ନଥାଏ, ଥାଏ ଅନୁରକ୍ତିର ଅନୁପମ ଆବେଶ । ସମାଜର ଏକ ସଚେତନ ବିନ୍ଦୁରେ ସାହିତ୍ୟର ସ୍ଥିତି । କହିବାର ତାତ୍ପର୍ଯ୍ୟ ଏହି ଯେ ଏକ ନିର୍ଦ୍ଦିଷ୍ଟ ସମୟର ସାହିତ୍ୟରୁ ତତ୍କାଳୀନ ସମାଜର ପ୍ରାଣସ୍ପନ୍ଦନ ଜାଣିହୁଏ । ଗୋଟିଏ ନିର୍ଦ୍ଦିଷ୍ଟ ଜାତିର ସାଂସ୍କୃତିକ ଭୂମିକୁ ମାପିବା ପାଇଁ ସାହିତ୍ୟ ଏକ ମାପକାଠିର ଭୂମିକା ଗ୍ରହଣ କରିଥାଏ । ଏ ପ୍ରସଙ୍ଗରେ ଜଗବନ୍ଧୁ ସିଂହ

କହିଛନ୍ତି, "ସାହିତ୍ୟ ଦେଖି ଜାତିର ଅବସ୍ଥା ପରିମାପ କରାଯାଇପାରେ ଏବଂ ଜାତିର ଅନ୍ୟାନ୍ୟ ଉନ୍ନତି ଦେଖି ସାହିତ୍ୟ ପରିମାପ କରାଯାଇପାରେ । ଏହି କାରଣରୁ ସାହିତ୍ୟ ଜାତୀୟ ଉନ୍ନତିର ପରିମାପକ ବୋଲି କଥିତ ହୁଏ ।" (ପ୍ରାଚୀନ ଉତ୍କଳ) । ବ୍ୟକ୍ତି, ସମାଜ ଓ ରାଷ୍ଟ୍ରର ଜୀବନରେ ସାହିତ୍ୟ ଏକ ଅଧିକା କଥା ନୁହେଁ ବରଂ ଏକ ଅତୁଳନୀୟ ଆବଶ୍ୟକତା, ନିଜକୁ ଖୋଜି ପାଇବାର ଅନ୍ୟତମ ପରିଚ୍ଛନ୍ନତା ।

## ସାହିତ୍ୟର କ୍ରିୟାଧାରା :

ଦୟା, କ୍ଷମା, ସ୍ନେହ, ନିଃସ୍ୱାର୍ଥପରତା, ଆନ୍ତରିକ ସଦିଚ୍ଛା ଆଦି ମାନବିକ ସଦ୍‌ଗୁଣ ସାହିତ୍ୟିକ ଅନୁଚିନ୍ତାର ଅନ୍ତର୍ଭୁକ୍ତ । ଏହି ଅନୁଚିନ୍ତା ମନୁଷ୍ୟ ଜୀବନକୁ ମାର୍ଜିତ ଓ ରୁଚିସ୍ନିଗ୍ଧ କରେ । ସାହିତ୍ୟ ବୁଝାଇଦିଏ ଯେ ଅର୍ଥ ଠୁଳକରିବା ଜୀବନର ଶ୍ରେଷ୍ଠ ଲକ୍ଷ୍ୟ ନୁହେଁ ବରଂ ଜୀବନର ବିକାଶ ନିମନ୍ତେ ଅର୍ଥ ଏକ ଶକ୍ତିର ଭୂମିକା ନିଏ, ବସ୍ତୁବିଳାସ ଜୀବନର ଲକ୍ଷ୍ୟ ନୁହେଁ ବରଂ ବସ୍ତୁର ସହାୟତା ଜୀବନର ବିକାଶ ନିମନ୍ତେ ବଳିଷ୍ଠ ମାଧ୍ୟମ । ସାହିତ୍ୟ କହିଦିଏ ବସ୍ତୁବାଦ ଓ ଭାବବାଦ ପରସ୍ପରର ବିରୋଧୀ ନୁହଁନ୍ତି, ବରଂ ପରସ୍ପରର ବନ୍ଧୁ । ସାହିତ୍ୟ ଶିଖାଇ ଦିଏ ବଞ୍ଚିବାର କଳା ଓ କଳ୍ପନା, ସୁଚାରୁ ଛନ୍ଦର ବ୍ୟବହାର ବିଧି, ହଟାଇଦିଏ ଜୀବନରୁ ଅମଙ୍ଗଳର ଘନଘଟା । ଆଚାର୍ଯ୍ୟ ମମ୍ମଟଙ୍କ ଭାଷାରେ-

*'କାବ୍ୟଂ ଯଶସେଽର୍ଥକୃତେ ବ୍ୟବହାରବିଦେ ଶିବେତର କ୍ଷତୟେ ।*
*ସଦ୍ୟଃ ପରନିର୍ବୃତ୍ତୟେ କାନ୍ତାସମ୍ମିତତୟୋପଦେଶଯୁଜେ ।'*

*(କାବ୍ୟ ପ୍ରକାଶ ୧/୨ )*

ସାହିତ୍ୟ ଦୂରକରେ ହୃଦୟରୁ ହିଂସା, ଘୃଣା, ଛଳନା ଓ ପ୍ରତାରଣାର ବିଷାକ୍ତ ଉପାଦାନ, ଭରିଦିଏ ମାର୍ଜିତ ଅନୁକୂଳ ଚିନ୍ତା ଓ ଚେତନା । ଜଗତରେ ଯେଉଁ ଆନନ୍ଦ ଯଜ୍ଞ ଚାଲିଛି ସେହି ଯଜ୍ଞକୁ ନିମନ୍ତ୍ରଣ କରେ । ଈର୍ଷ୍ୟା ବଦଳରେ ଆଣିଦିଏ ଆଶା, କ୍ରୋଧ ବଦଳରେ ଆଣିଦିଏ ସହାନୁଭୂତି, ସର୍ବୋପରି ଅନ୍ୟକୁ ବୁଝିବାକୁ ଅନନ୍ୟ ବିଚାର ଶକ୍ତି । ଏହି ପ୍ରସଙ୍ଗରେ ରବୀନ୍ଦ୍ରନାଥ କହିଛନ୍ତି - ***"ସାହିତ୍ୟେର ପ୍ରଭାବେ ହୃଦୟେ ହୃଦୟେ ଶୀତତାପ ସଞ୍ଚାରିତ ହୟ । ବାୟୁ ପ୍ରବାହିତ ହଏ, ଋତୁଚକ୍ର ଫିରେ, ଗନ୍ଧ, ଗାନ ଓ ରୂପେର ହାଟ ବସିୟା ଯାୟ" । (ସାହିତ୍ୟ)***

ଆନନ୍ଦଦାନ ମାଧ୍ୟମରେ ଲୋକ ଶିକ୍ଷା ପ୍ରଦାନ ***(Teaching by pleasing)*** ହେଉଛି ସାହିତ୍ୟର କ୍ରିୟାତ୍ମକ ବୈଶିଷ୍ଟ୍ୟ । ଗୁରୁର ଗୁରୁତ୍ୱ, ଜନନୀର

ମମତ୍ୱ, କାନ୍ତାର ଅନୁରକ୍ତି ଓ ବନ୍ଧୁର ସହୃଦୟତାକୁ ନେଇ ସାହିତ୍ୟ ଋଦ୍ଧିମନ୍ତ ହୋଇ ଆମର ପଥକ୍ଲାନ୍ତି ଦୂରକରେ। ସାହିତ୍ୟିକକୁ ଏ ସାରା ଜଗତ ସୁନ୍ଦର ଦିଶେ । ନୀଳ ସାଗରର ଲହରୀମାନେ ସତେଅବା ତାଙ୍କ ସହ କଥାହେବେ ବୋଲି କୂଳକୁ ଧାଇଁ ଆସନ୍ତି । ଗଛଲତାରେ ଫୁଲମାନେ ଫୁଟିଯାଇ କହୁଥାନ୍ତି – 'ଦେଖ,ଆମେ ଆଣିଆସିଛୁ ଅମରାବତୀରୁ ମର୍ତ୍ତ୍ୟମୋହିନୀ ବାର୍ତ୍ତା '।

ସାହିତ୍ୟ ବିଭାଜନରେ ବିଶ୍ୱାସ କରେନାହିଁ, ସମନ୍ୱୟରେ ବିଶ୍ୱାସ କରେ । କୁହାଯାଏ *'While politics divides, Literature Unites'* ଚେତନାର ବିକାଶ ନହେଲେ ସମନ୍ୱୟ ଅସମ୍ଭବ । ସମନ୍ୱୟ କହିଲେ ଆମେ ସାଧାରଣତଃ ଯାହା ବୁଝୁ, କଥାଟି ତାହା ନୁହେଁ । ଜଣଙ୍କର ଚିନ୍ତା ଅଥବା କଥାରେ ଅନ୍ୟ ଜଣେ ବା କେତେଜଣ ଅନ୍ଧ ଭାବରେ ସମ୍ମତି ପ୍ରଦାନ କରିବାକୁ ସମନ୍ୱୟ କୁହାଯାଏ ନାହିଁ । ବରଂ ପ୍ରତ୍ୟେକ ବ୍ୟକ୍ତି ବିକଶିତ ଚେତନାରେ ଉପନୀତ ହେଲେ ପରସ୍ପର ଭିତରେ ଯେଉଁ ବୁଝାମଣା ତଥା ସହାନୁଭବର ବାତାବରଣଟି ସୃଷ୍ଟି ହୁଏ, ତାହା ହିଁ ସମନ୍ୱୟ ଆଣେ । ସାହିତ୍ୟ ଏହି ବାତାବରଣ ସୃଷ୍ଟିପୂର୍ବକ ବହୁ ଲୋକଙ୍କୁ ପରସ୍ପରର ନିକଟତର କରେ ଏବଂ ବିଶ୍ୱଆନନ୍ଦର ଛନ୍ଦସାମ୍ୟକୁ ଧରି ରଖିପାରେ ।

ସାହିତ୍ୟ କହିଦିଏ ଯେ ଏପରି ରାତ୍ରୀ ନାହିଁ, ଯାହାର ସକାଳ ନାହିଁ, ଏପରି ଶୀତକାଳ ନାହିଁ ଯାହା ମଧୁର ବସନ୍ତରେ ରୂପାନ୍ତରିତ ହୁଏନାହିଁ। କେବଳ ଆଶାବାଦ ନୁହେଁ ଶୁଭେଚ୍ଛାର ଚନ୍ଦନଗନ୍ଧରେ ସାହିତ୍ୟର ପରିସର ଆମୋଦିତ । ସେହି ଗନ୍ଧ କ୍ରମଶଃ ପ୍ରସାରିତ ହୋଇ ଏକ ମଧୁବଳୟ ସୃଷ୍ଟିକରେ, ଯାହା ସମାଜକୁ ବର୍ମପରି ଆବୃତ କରି ରଖେ । ଲାଭକ୍ଷତିର ହିସାବ ନକରି ସମଗ୍ର ମାନବଜାତିପ୍ରତି ଶ୍ରଦ୍ଧାର ହାତବଢ଼ାଇ ସାହିତ୍ୟ କ୍ଲାନ୍ତ, ମଳିନ ମୁଖରେ ହସ ଫୁଟାଏ, ଆଗକୁ ଯିବାକୁ ସାହସ ଦିଏ, ସାମର୍ଥ୍ୟ ଦିଏ, ସର୍ବୋପରି ଆତ୍ମବିଶ୍ୱାସ ଦିଏ । ଆପଣାର ଅନ୍ତରୀଣ ସତ୍ତାରେ ନିଜକୁ ଅଲୋଡ଼ା ବୋଲି ଅନୁଭବ କରିବାରୁ ମଣିଷ ମନରେ ନିଃସଙ୍ଗତା ଆସେ । ଚାରିପାଖରେ ବହୁଲୋକ ଥିଲେ ମଧ୍ୟ ନିଜ ଗଭୀର ସତ୍ତାରେ ରହିଥିବା ନିଃସଙ୍ଗତାବୋଧ ବ୍ୟକ୍ତିକୁ ଦାରୁଣ ଦୁଃଖରେ ଜର୍ଜରିତ କରେ । ଏହାକୁ ଦୂରକରିବା ପାଇଁ ବହୁ ଚେଷ୍ଟା ବିଫଳ ହେଲାବେଳେ ସୃଜନଶୀଳତା ଏଥିନିମନ୍ତେ ମହୌଷଧି ଭଳି କାର୍ଯ୍ୟକରେ । ଆମେ ସାହିତ୍ୟକୁ ଏପରି ସୃଜନଶୀଳତାର ବଳୟଭୁକ୍ତ କରିପାରିବା ।

ଏ ସ୍ଥୂଳଜଗତର ପଶ୍ଚାତରେ ଥିବା ସୂକ୍ଷ୍ମଜଗତକୁ ଯିବାପାଇଁ ସାହିତ୍ୟ ବାଟ ବତାଏ । ଏଠାରେ ସୂକ୍ଷ୍ମଜଗତ କହିଲେ ତଥାକଥିତ ସ୍ୱର୍ଗରାଜ୍ୟକୁ ବୁଝାଏ ନାହିଁ । ସ୍ଥୂଳପ୍ରାଣର ପଶ୍ଚାତରେ ସୂକ୍ଷ୍ମପ୍ରାଣ ଓ ସ୍ଥୂଳମନର ପଶ୍ଚାତରେ ସୂକ୍ଷ୍ମ ମନ ରହିଛି । ସେହି ସୂକ୍ଷ୍ମସ୍ତରର କଥା ଏଠାରେ କୁହାଯାଉଛି । ସମାଜରୁ ଅନ୍ଧବିଶ୍ୱାସକୁ ବାଦଦେଇ ମୂଲ୍ୟବୋଧର ନିରାଜନା କରିବା ସାହିତ୍ୟର କ୍ରିୟାନ୍ତର୍ଭୁକ୍ତ । ସଂସ୍କୃତିର ଅବମାନନା ନୁହେଁ ବରଂ ଯଥାଯୋଗ୍ୟ ବନ୍ଦନା ନିମନ୍ତେ ସାହିତ୍ୟର ଆନ୍ତରିକତା ବରଣୀୟ ଓ ବନ୍ଦନୀୟ । ସତ୍ୟାନୁସନ୍ଧାନର ସାମର୍ଥ୍ୟକୁ ତାହା ବହୁଗୁଣିତ କରେ । ସାଂପ୍ରତିକ ପରିବେଶକୁ କଳୁଷିତ କରୁଛି ମଣିଷର ସୀମାହୀନ ଯୌନକ୍ଷୁଧା ସହିତ ପ୍ରଚୁର ଅର୍ଥ ଓ କ୍ଷମତା ପ୍ରାପ୍ତିର ଉଦ୍ଦାମଲାଳସା । ମଣିଷର ଏହି ତିନିଗୋଟି ପ୍ରତି ପ୍ରବଳ ଆକର୍ଷଣ ରହିଛି ଯାହାକି ସଂସ୍କୃତିକୁ ନେଇ ଅପସଂସ୍କୃତିର ଜାଲରେ ଆବଦ୍ଧ କରିଦେଉଛି । କୌଣସି ବାହ୍ୟ ଉପଚାର ଅଥବା ଉପାୟ ଦ୍ୱାରା ଏହି କାଳିମାକୁ ଦୂର କରାଯାଇ ପାରିବ ନାହିଁ । ପୋଲିସ କର୍ମଚାରୀଙ୍କ ସଂଖ୍ୟା ବୃଦ୍ଧି ଅପରାଧ ପ୍ରବୃତ୍ତିକୁ ନିର୍ମୂଳ କରି ନ ପାରିଲା ପରି ଆଇନକାନୁନର ସଂଶୋଧନ ଅପସଂସ୍କୃତିର ମୂଳୋତ୍ପାଟନ କରିପାରିବ ନାହିଁ । ମନୋବୃତ୍ତିର ପରିବର୍ତ୍ତନ ଘଟିଲେ ମନୁଷ୍ୟ ମନରୁ ଅପରାଧ ପ୍ରବୃତ୍ତି ଦୂରେଇଯିବ ଓ ବିଶ୍ୱଜୀବନରେ ଦିବ୍ୟ ଚେତନାର ଅଭିଷେକ ହେବ । ଏହି ଅଭିଷେକର ଉତ୍ସବରେ ସାହିତ୍ୟର ଅବଦାନ ସର୍ବାଧିକ । ମନୋଜଦାସଙ୍କ ଭାଷାରେ- *"ଦିବ୍ୟ ଆନନ୍ଦର ଗନ୍ତାଘରୁ ଯେଉଁ କିଞ୍ଚିତ ସଂପଦ ଆହରଣ କରିଛି କଳାକାର ବା ସାହିତ୍ୟିକ, ତାକୁ ହିଁ ସେ ରୂପ ଦେଇଛି । ଅର୍ଥାତ୍ ସେ ହୋଇଛି ଏକ ମାଧ୍ୟମ, ସାଧାରଣ ଚେତନାକୁ ଉଚ୍ଚତର ଏକ ଚେତନାର ସ୍ୱାଦ ଦେବାଲାଗି ।"- (ବିପୁଳାଚ ପୃଥ୍ୱୀ)* । ଅନ୍ଧକାର ଭିତରେ ଆଲୋକ ଦୁଃଖ ଭିତରେ ସୁଖ ଏବଂ ଦାନବତ୍ୱ ଭିତରେ ଦିବ୍ୟତ୍ୱ ସୁପ୍ତହୋଇ ରହିଛି । ଏହାକୁ ଆବିଷ୍କାର କରି ସେହି ଆଲୋକକୁ ଅଧିକରୁ ଅଧିକ ଦୀପ୍ତିମୟ କରି ପାରିଲେ, ସେହି ସୁଖକୁ ଅଧିକରୁ ଅଧିକ ବିଶ୍ୱଜନୀନ କରିପାରିଲେ, ସେହି ଦିବ୍ୟତ୍ୱକୁ ବଢ଼ାଇ ଚାଲିଲେ ବ୍ୟକ୍ତି ଜୀବନ ପୂର୍ଣ୍ଣାଙ୍ଗ ହୁଏ । ଏହି ପ୍ରକ୍ରିୟାରେ ଦସ୍ୟୁ ରତ୍ନାକର ରୂପାନ୍ତରିତ ହେଲେ ଋଷି ବାଲ୍ମୀକିରେ, ଚଣ୍ଡାଶୋକ ରୂପାନ୍ତରିତ ହେଲେ ଶାନ୍ତିପ୍ରିୟ ଧର୍ମାଶୋକରେ । ଚେତନାର ଏପରି ଉତ୍ତରଣ ଏକଏକ ଦେବମୁହୂର୍ତ୍ତରେ ସଂଗଠିତ ହୁଏ । ସାହିତ୍ୟ ଦ୍ୱାରା ଶତ ପ୍ରତିଶତ

ଏହି ଦେବ ମୁହୂର୍ତ୍ତ ସୃଷ୍ଟ ହୁଏ ନାହିଁ ସତ, ମାତ୍ର ଏଥି ନିମନ୍ତେ ପରିବେଶ ପ୍ରସ୍ତୁତି କେତେକାଂଶରେ ସମ୍ଭବ ହୁଏ ।

ଅବଶ୍ୟ ଏକଥା ସ୍ପଷ୍ଟ ଯେ ଯେଉଁମାନେ ଲେଖନ୍ତି ସମସ୍ତେ ଲେଖକ ନୁହଁନ୍ତି, ତହିଁରେ ଅନେକ ଅଲେଖକ ମଧ୍ୟ ଅଛନ୍ତି । ଯଦି ପ୍ରକୃତ ଲେଖକମାନଙ୍କ ଲେଖାପଢ଼ା ଉପରେ ଆବଶ୍ୟକୀୟ ଗୁରୁତ୍ୱ ଆରୋପିତ ହୁଅନ୍ତା ଓ ଜୀବନ କ୍ଷେତ୍ରରେ ତାହାର ପ୍ରୟୋଗ ପାଇଁ ପ୍ରୟାସ ରହନ୍ତା, ତେବେ ସାହିତ୍ୟ ଖରାଦିନର ଜୀବନ ଜଞ୍ଜାଳରେ ବ୍ୟଞ୍ଜନର ଭୂମିକା ନିଅନ୍ତା । ମୋ ବିଚାରରେ ସାହିତ୍ୟ ଉପରେ ଯଦି ଯଥାଯୋଗ୍ୟ ଗୁରୁତ୍ୱ ଦିଆଯାଆନ୍ତା ତେବେ ସମାଜରେ ଘଟୁଥିବା ଅପରାଧରୁ କେତେକାଂଶ ହ୍ରାସ ପାଆନ୍ତା ଏବଂ ଶାନ୍ତି, ସଂହତି, ସହାନୁଭୂତି ଓ ସଦିଚ୍ଛାର ବାତାବରଣ ଅପେକ୍ଷାକୃତ ଅଧିକ ସୃଷ୍ଟିହୁଅନ୍ତା ।

**ସାହିତ୍ୟରେ ବ୍ୟକ୍ତିଦୃଷ୍ଟି ଓ ବିଶ୍ୱଦୃଷ୍ଟି :**

ମନର ଭିନ୍ନଭିନ୍ନ ପରିତଳକୁ ପରସ୍ପର ସହ ସଂପର୍କିତ କରେ ସାହିତ୍ୟ । ଚଳଣିଚଳଣି ଭିତରେ, ସଂପ୍ରଦାୟସଂପ୍ରଦାୟ ଭିତରେ ଆଣିପାରେ ସୂକ୍ଷମ ସମନ୍ୱୟ । ଆଧ୍ୟାତ୍ମିକ ଅନୁଚିନ୍ତାଠାରୁ ଆର୍ଥନୀତିକ ବିଧି ବ୍ୟବସ୍ଥା ପର୍ଯ୍ୟନ୍ତ ସବୁକିଛି ସ୍ଥାନ ପାଇପାରେ ସାହିତ୍ୟର ବଳୟ ଭିତରେ । କେବଳ ସ୍ଥାନ ନୁହେଁ ସମନ୍ୱିତ ଭାବରେ ସବୁକିଛିର ଅବସ୍ଥାନ ଏଥି ଭିତରେ ହିଁ ସମ୍ଭବ ହୋଇପାରେ । ଭାବ ସହିତ ଭାଷାର, ଘଟଣା ସହିତ ଅନୁଭବର ସମନ୍ୱୟ ସ୍ଥାପନ ଏହା ଦ୍ୱାରା ସମ୍ଭବ ହୁଏ । ରବୀନ୍ଦ୍ରନାଥଙ୍କ ଭାଷାରେ- ***"ଅନ୍ତରରେ ଜିନିଷକେ ବାହିରେ, ଭାବେର ଜିନିଷକେ ଭାଷାର, ନିଜେର ଜିନିଷକେ ବିଶ୍ୱମାନବେର ଏବଂ କ୍ଷଣକାଲେର ଜିନିଷକେ ଚିର କାଲେର କରିଯା ତୋଲା ସାହିତ୍ୟେକେର କାଯ ।"- (ସାହିତ୍ୟ)***

ସାହିତ୍ୟ କାହାକୁ ସାନ, ହୀନ, ନଗଣ୍ୟ ବୋଲି ମନେ କରେ ନାହିଁ । ଘାସଫୁଲ ଠାରୁ ପଦ୍ମଫୁଲ ପର୍ଯ୍ୟନ୍ତ ସବୁ ତା' ପାଇଁ ଆଦରର ଧନ । ସାହିତ୍ୟର ବାର୍ତ୍ତା ସର୍ବଦା ଅସ୍ତିସୂଚକ, କଦାପି ନାସ୍ତିସୂଚକ ନୁହେଁ । ଯୁଗଯନ୍ତ୍ରଣା ନାମରେ ସାହିତ୍ୟିକ ନିଜର ପୁଳାଏ ପ୍ରତିକ୍ରିୟା ଭରି ଦେଲେ ତାହା ଉଚ୍ଚକୋଟୀର ସାହିତ୍ୟ ହୁଏ ନାହିଁ । ବରଂ ଯୁଗଯନ୍ତ୍ରଣାର ଉପଶମ ପାଇଁ ବାଟ ବତେଇ ଦେଲେ ସାହିତ୍ୟ ପାଏ ଯଥାର୍ଥ ମାନ୍ୟତା । ସାହିତ୍ୟିକର ଉଭୟ ଅନ୍ତର୍ଦୃଷ୍ଟି ଓ ବହିର୍ଦୃଷ୍ଟି ଥାଏ ।

ସାବିତ୍ରୀପ୍ରସନ୍ନ ଚଟ୍ଟୋପାଧ୍ୟାୟ ତାଙ୍କର 'କାବ୍ୟ ସାହିତ୍ୟେର ଧାରା' ପୁସ୍ତକରେ କହିଛନ୍ତି – *"ସାହିତ୍ୟିକେର ଦର୍ଶନ ଅନ୍ତର୍ମୁଖୀ ଆର୍ ବହିର୍ମୁଖୀ । ଅନ୍ତରଙ୍ଗେ ତାରା ଯେମନ ନିବିଷ୍ଟ, ବହିଃରଙ୍ଗେ ତେମନି ତାରା ଆବିଷ୍ଟ ।"* ବର୍ତ୍ତମାନ ସହ ଅତୀତକୁ ଯୋଡ଼ି ଦେବାରେ ସେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ***W.H.Hudson***ଙ୍କ ଭାଷାରେ- ***"A great writer is not an isolated fact. He has his affiliations with the present and the past and through these affilications he leads us inevitably to his contemporaries and predecessors" .***

***(An Introduction to the study of Literature )***

ସାହିତ୍ୟ କେବଳ ଇନ୍ଦ୍ରିୟଗତ ଭାବାଶ୍ରିତ ହେଲେ ତାହା ଆଦୃତ ହୁଏନାହିଁ ଅଥବା କେବଳ ଇନ୍ଦ୍ରିୟାତୀତ ଜଗତର ଅନ୍ତର୍ଭୁକ୍ତ ହେଲେ ପାଠକୀୟ ପିପାସାକୁ ତୃପ୍ତ କରିପାରେନାହିଁ । ବରଂ ସଂଯୋଗ ସରଣୀଟିଏ ହେଲେ ତାହା ଆଦୃତ ହୁଏ । ଭୂମି ଓ ଭୂମା ମଧ୍ୟରେ ଯାତାୟତର ପଥ ସୁଗମ ହୁଏ । ଭୂମି କହିଲେ ପାର୍ଥିବ ପ୍ରାକୃତିକ ପରିବେଶ, ବ୍ୟକ୍ତିଜୀବନ, ସମାଜଜୀବନ ଓ ବିଶ୍ୱଜୀବନର ସମନ୍ୱୟରେ ସଂଗଠିତ ଏକ ଜୀବନ୍ତ ଚେତନାକୁ ବୁଝାଏ । ଭୂମା କହିଲେ ଗୋଲୋକ, ସାକେତ ବା ବୈକୁଣ୍ଠକୁ ବୁଝାଏନାହିଁ ବରଂ ବ୍ୟକ୍ତିଚେତନାର ପ୍ରସାରଣଶୀଳ ଦୂରତମ ଦୂରତା ଓ ଉତ୍ତରଣଶୀଳ ଉଚ୍ଚତମ ଉଚ୍ଚତାର ସମନ୍ୱିତ ପରିତଳକୁ ବୁଝାଏ । ଗୋଟିଏ ହେଉଛି ଅନୁପ୍ରସ୍ଥ ପ୍ରସାରଣ ଓ ଅନ୍ୟଟି ହେଉଛି ଅନୁଲମ୍ବ ପ୍ରସାରଣ । ଅନୁଲମ୍ବ ପ୍ରସାରଣକୁ ବିଜ୍ଞାନରେ ଉତ୍ତୋଳନ ବୋଲି କୁହାଯାଏ, ଦର୍ଶନଶାସ୍ତ୍ରରେ ଉତ୍ତରଣ ବୋଲି କୁହାଯାଏ । ଉତ୍ତରଣ ଓ ପ୍ରସାରଣ ପରସ୍ପରର ବିରୋଧୀ ନୁହନ୍ତି ବରଂ ସହଯୋଗୀ । ଏପରି କୁହାଯାଇପାରେ ଯେ ଗୋଟିଏ ଥିବାରୁ ଅନ୍ୟଟି ରହିଛି । ଏହି ସମନ୍ୱୟ ସଂପ୍ରତି ଅଭିନନ୍ଦନୀୟ, ବିଶ୍ୱଗ୍ରାମ ଗଠନର ସ୍ୱପ୍ନକୁ ସାକାର କରିବା ନିମନ୍ତେ ଏହି ଚେତନା ସର୍ବାଦୌ ଆବଶ୍ୟକ । ସାହିତ୍ୟ ମାଧ୍ୟମରେ ଏଇ ଜଟିଳ କାର୍ଯ୍ୟ ସମାହିତ ହୋଇପାରେ । ସାହିତ୍ୟ କାଳେକାଳେ ତତ୍‌କାଳରେ ରଚିତ ହୋଇ ମଧ୍ୟ ଭବିଷ୍ୟତର ସାମଗ୍ରୀ ହୋଇ ରହେ । ଯଦି ଭବିଷ୍ୟତ ସାମଗ୍ରୀ ନ ହୁଏ ତେବେ ତାହା ସାହିତ୍ୟ ନ ହୋଇ ଆଉ କ'ଣ ଗୋଟେ ହୋଇଯାଏ । ଆଜି ଯେତେ ସମସ୍ୟାରେ ମାନବଜାତି ବିବ୍ରତ ଓ କିଂକର୍ତ୍ତବ୍ୟ ବିମୂଢ଼ ହୋଇପଡ଼ିଛି ସାହିତ୍ୟ ସେଥିରୁ କେତେ ସମସ୍ୟାର ଯଥାଯଥ ସମାଧାନ ଦେଇପାରେ ।

## ସାହିତ୍ୟରେ କଳ୍ପନାର ଭୂମିକା :

ସାହିତ୍ୟରେ କଳ୍ପନାର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କଳ୍ପନା ହେଉଛି ସାହିତ୍ୟର ଅମ୍ଳାନ ମାଧୁର୍ଯ୍ୟ ଓ ବିପୁଳ ଐଶ୍ୱର୍ଯ୍ୟ । କଳ୍ପନା ନାହିଁ ତ ସାହିତ୍ୟ ନାହିଁ । ଗୋଟିଏ ମୁଦ୍ରାର ଦୁଇପାଖ ପରି ପରସ୍ପର ଓତପ୍ରୋତ ଭାବରେ ଜଡ଼ିତ । କଳ୍ପନା ଏକ ଅଦ୍‌ଭୁତ ଶକ୍ତି । ଏହାର ପ୍ରଭାବ ସୁଦୂର ପ୍ରସାରୀ । କଳ୍ପନାର କାଉଁରୀ ସ୍ପର୍ଶରେ ସାହିତ୍ୟ ହୁଏ ସ୍ନିଗ୍ଧ ଓ ସରସ । ଯେଉଁ ସ୍ରଷ୍ଟାର କଳ୍ପନାପ୍ରବଣତା ଯେତେ ଅଧିକ ସେହି ସ୍ରଷ୍ଟା ସୃଷ୍ଟିରେ ସେତେ ସଫଳ । ତେବେ ଏ କଳ୍ପନା ଉଦ୍‌ଭଟ ହେବା ବାଞ୍ଛନୀୟ ନୁହେଁ । କଳ୍ପନା ଓ ଉଦ୍ଭଟତା ଏକ କଥା ନୁହେଁ । ଉଦ୍ଭଟତା ହେଲା ଅବାସ୍ତବ କଥା ଯାହା ଘଟିନାହିଁ, ଘଟିବ ନାହିଁ, କଳ୍ପନା କିନ୍ତୁ ଯାହା ହୁଏତ ଘଟି ନାହିଁ, ମାତ୍ର ଘଟିବ ନାହିଁ ବୋଲି କେହି କହିପାରିବେ ନାହିଁ । କଳ୍ପନା ଏକ ଶକ୍ତି ଯାହାକୁ ଅସ୍ତିମାର୍ଗରେ ଗ୍ରହଣ କଲେ ଜୀବନ ଶୁଭଙ୍କର ହୁଏ ଏବଂ ନାସ୍ତିମାର୍ଗରେ ଗ୍ରହଣ କଲେ ଜୀବନ ବ୍ୟର୍ଥ ଓ ଦୁଃଖମୟ ହୁଏ । ଅସ୍ତିମାର୍ଗର କଳ୍ପନା, ସାହିତ୍ୟ ସହିତ କାୟା ସଙ୍ଗେ ଛାୟା ପରି ଓତପ୍ରୋତ ଭାବରେ ଜଡ଼ିତ ହୋଇ ରହେ । ଏହି ପରିପେକ୍ଷୀରେ ମାଇକେଲ୍ ମଧୁସୂଦନ ଦତ୍ତଙ୍କର ଭାବଧାରା ସ୍ମରଣକୁ ଆସେ । କଳ୍ପନାକୁ ବାକ୍‌ଦେବୀଙ୍କର ପ୍ରିୟ ସହଚରୀ ରୂପେ ସେ କଳ୍ପନା କରିଛନ୍ତି । ତାଙ୍କ ଭାଷାରେ-

**"ଲଓ ଦାସେ ସଙ୍ଗେସଙ୍ଗେ ହେମାଙ୍ଗୀ କଳ୍ପନେ**
**ବାଗ୍‌ଦେବୀର ପ୍ରିୟ ସଖି ! ଏହା ଭିକ୍ଷାକରି**
**କି ସ୍ୱରଗେ, କି ମରତେ ଅତଳ ପାତାଳେ**
**ନାଇ ସ୍ଥଳ ଯଥା ଦେବୀ ନହେ ତବ ଗତି'**

(କଳ୍ପନା)

କବିବର ରାଧାନାଥଙ୍କ ଭାଷାରେ -

*"କଳ୍ପନା ନାମ ସେ ଧରନ୍ତି ସୁନ୍ଦରୀ*
*ବୀଣାପାଣିଙ୍କର ଚିର ସହଚରୀ ।" -(ଚିଲିକା)*

ବିଭିନ୍ନ ଅଳଙ୍କାର ମାଧ୍ୟମରେ ସ୍ରଷ୍ଟା-ମନର କଳ୍ପନା ସାହିତ୍ୟରେ ପ୍ରକାଶିତ ହୁଏ । ସାହିତ୍ୟ ମାତ୍ରକେ ଭାଷା, ଦେଶ, ସମୟ ନିର୍ବିଶେଷରେ କଳ୍ପନା-ଅନ୍ୱିତ ।

କେହି କେହି ବାସ୍ତବତାକୁ ସତ୍ୟ ଓ କଳ୍ପନାକୁ ମିଥ୍ୟା ବୋଲି କହିଥାନ୍ତି । ଏଠାରେ ମିଥ୍ୟା ଅର୍ଥ ଅବାସ୍ତବତା ନୁହେଁ । ବାସ୍ତବତା ଓ କଳ୍ପନାର ମିଶ୍ରଣରେ ସାହିତ୍ୟର ସାର୍ଥକ ରୂପାୟଣ ଓ ସଫଳ ମୂଲ୍ୟାୟନ ସମ୍ଭବ ହୁଏ । କଳ୍ପନା ଉନ୍ମୋଚନ କରେ ମର୍ମଚକ୍ଷୁକୁ ଯେଉଁ ମର୍ମଚକ୍ଷୁ ବିଶ୍ୱଜୀବନକୁ ଦେଖିବାକୁ ଗବାକ୍ଷ ପରି କ୍ରିୟା କରେ । କେତେକ କହନ୍ତି ଯେ ସ୍ରଷ୍ଟା ବାହ୍ୟଦୃଷ୍ଟିରେ ଦେଖନ୍ତି ଓ ଲେଖନ୍ତି । ଏହା ଗୋଟାଏ ଭ୍ରମ । ପ୍ରକୃତରେ ସ୍ରଷ୍ଟା ଚର୍ମଚକ୍ଷୁ ଦ୍ୱାରା ନୁହେଁ ବରଂ ମର୍ମଚକ୍ଷୁ ଦ୍ୱାରା ଯେତିକି ଦେଖନ୍ତି ସେଥିରୁ କିଛିକଥା ଲେଖିବାକୁ କେବଳ ସମର୍ଥ ହୁଅନ୍ତି ।

ଗୋଟିଏ ଉଦାହରଣରୁ କଳ୍ପନାର ଚମତ୍କାରିତା ଲକ୍ଷ୍ୟ କରି ହେବ । 'ତପସ୍ୱିନୀ'ରେ ଗଙ୍ଗାଧର ମେହେର କହିଛନ୍ତି ଯେ ନାନାରଙ୍ଗର ଝରାଫୁଲ ତମସା ନଦୀର ତରଙ୍ଗରେ ତାଳେତାଳେ ଭାସି ଆସୁଥିବେ । ସୀତା ସେହି ନଦୀରେ ସ୍ନାନ କଲାବେଳେ ତାଙ୍କ ପବିତ୍ର ତନୁରେ ସେସବୁ ଲାଗି ଯାଉଥିବେ । ଏହା ଏକ ବାସ୍ତବ ଚିତ୍ର । ଏକଥା କଳ୍ପନା ରଙ୍ଗରେ ରଞ୍ଜିତ ହୋଇଛି କବି ମେହେରଙ୍କ ବର୍ଣ୍ଣନାରେ । ସେ କହିଛନ୍ତି ଯେ ଝରାଫୁଲମାନେ କଷ୍ଟ ସହି ସୀତାଙ୍କର ତନୁ ସ୍ପର୍ଶରେ ନିଜକୁ ପବିତ୍ର କରିବା ନିମନ୍ତେ ଧାଇଁଧାଇଁ ଆସୁଥିବେ । ଏହା ହିଁ କଳ୍ପନାର ମୋହିନୀମଧୁରିମା ଓ ଚମତ୍କାରିତା, ଯାହା ପାଠକ ପ୍ରାଣରେ ପୁଲକର ଦୀପ୍ତି ଭରିଦିଏ ।

*'ପତିବ୍ରତା-ଅଙ୍ଗେଲାଗି ପବିତ୍ର ହେବାର ଲାଗି*
*ବ୍ରତତୀ-ବାସ-ବିରାଗୀ ପ୍ରସୂନମାନ*
*ଦୂରୁଁଦୂରୁଁ ଝାସିଝାସି ଧାଇଁଥିବେ ଭାସିଭାସି*
*ଭ୍ରମୁଥିବେ ଆସିଆସି ତୋ' ସନ୍ନିଧାନ ।*
*ସ୍ନାନ ସମୟେ ମୋ ପୟରେ*
*ଦୟାମୟି ! ନ ପେଳିବୁ ତାଙ୍କୁ ପୟରେ ।'*

*(ତପସ୍ୱିନୀ)*

ଏହା ମୁକ୍ତକଣ୍ଠରେ ସ୍ୱୀକାର୍ଯ୍ୟ ଯେ ସାହିତ୍ୟରୁ କଳ୍ପନାକୁ ବାଦ୍‌ଦେଲେ ସାହିତ୍ୟ ବିକଳାଙ୍ଗ ହୋଇଯାଏ । ପାଠକର ପ୍ରାଣଭୂମିରେ କଳ୍ପନା ଯେଉଁ ପ୍ରସାଦ ଭରି ଦିଏ ତାହା ଅକଳ୍ପନୀୟ । ସ୍ରଷ୍ଟାଚିତ୍ତର ସ୍ପର୍ଶକାତର ରୁଚିବୋଧ ଓ ପାଠକର ଅନୁପମ ଗ୍ରହଣଶୀଳତା ଭିତରେ କଳ୍ପନା ପ୍ରସ୍ତୁତ କରେ ଏକ କୁସୁମିତ ଚଲାପଥ । ଏପରି କୁହାଯାଇପାରେ କଳ୍ପନାର ଅନୁପସ୍ଥିତିରେ ସାହିତ୍ୟ ହୁଏ ଭଙ୍ଗା ସ୍ମୃତିର ସ୍ୱପ୍ନ

ଏବଂ କଳ୍ପନାର ଉପସ୍ଥିତିରେ ସାହିତ୍ୟ ହୋଇଉଠେ ସତେ ଅବା ଦେବତାର ଏକ ସମୃଦ୍ଧ ସାମ୍ରାଜ୍ୟ । ଖାଣ୍ଟିସୁନାରେ ଅଳଙ୍କାର ଗଢ଼ା ହୁଏ ନାହିଁ, ଯଦି ହୁଏ ତାକୁ ପିନ୍ଧି ହୁଏ ନାହିଁ । ନିଛକ ବାସ୍ତବତାରେ ଜୀବନ ରହେ ନାହିଁ, ଯଦି ରହେ ତାକୁ ଜୀଇଁ ହୁଏ ନାହିଁ । ଠିକ୍ ସେହିପରି କେବଳ ଘଟଣାର ଘନଘଟାକୁ ନେଇ ସାହିତ୍ୟ ସୃଷ୍ଟି ହୁଏ ନାହିଁ, ଯଦି ହୁଏ ତାହା ହୃଦୟଗ୍ରାହୀ ହୁଏ ନାହିଁ ।

## ସାହିତ୍ୟ ଓ ସୌନ୍ଦର୍ଯ୍ୟବୋଧ :

ବସ୍ତୁବାଦ ଓ ବାସ୍ତବବାଦ ଭିତରେ ଏବଂ ମୃତ୍ୟୁ ଓ ମୃତ୍ୟୁଚେତନା ଭିତରେ ଯେପରି ପାର୍ଥକ୍ୟ ରହିଛି, ସୌନ୍ଦର୍ଯ୍ୟ ଓ ସୌନ୍ଦର୍ଯ୍ୟବୋଧ ଭିତରେ ସେପରି ପାର୍ଥକ୍ୟ ରହିଛି । ବିଶ୍ୱସ୍ରଷ୍ଟାଙ୍କର ଚମତ୍କାର ପରିକଳ୍ପନାର ଭାବାୟିତ ଅବବୋଧ ହିଁ ସୌନ୍ଦର୍ଯ୍ୟବୋଧ । ଏହା ହେଉଛି ସୌନ୍ଦର୍ଯ୍ୟର ଗ୍ରହଣ ସାମର୍ଥ୍ୟ । ଏ ସାମର୍ଥ୍ୟ ଏକ ମାନଦଣ୍ଡ ଯାହାଦ୍ୱାରା ସୌନ୍ଦର୍ଯ୍ୟର ପରିମାପ ହୁଏ । ସୁନ୍ଦର ବସ୍ତୁରେ ସୌନ୍ଦର୍ଯ୍ୟର ପରିମାଣ ଯେତିକି ଥାଏ, ସୌନ୍ଦର୍ଯ୍ୟବୋଧଦ୍ୱାରା ତାହା ବହୁଗୁଣିତ ହୁଏ । ସାହିତ୍ୟରେ ଏହି ସୌନ୍ଦର୍ଯ୍ୟବୋଧର ମହନୀୟତା ଅକଳ୍ପନୀୟ । ସାହିତ୍ୟିକ କାଳେକାଳେ ସୌନ୍ଦର୍ଯ୍ୟର ପରମ ପୂଜାରୀ । ନଦୀଟିଏ ସାହିତ୍ୟିକ ପାଇଁ ଜଳ ପ୍ରବାହ ମାତ୍ର ହୋଇ ରହେନାହିଁ, ହୋଇଯାଏ ପ୍ରବହମାନ ଚେତନାର ମୂର୍ତ୍ତିମତୀ ଧାରା । ସମୁଦ୍ର ତରଙ୍ଗ-ଚଞ୍ଚଳ ବିସ୍ତୃତ ଜଳରାଶି ମାତ୍ର ହୋଇ ରହେନାହିଁ, ହୋଇଯାଏ ପରିବ୍ୟାପ୍ତିର ବାର୍ତ୍ତା । ଫୁଲପେନ୍ଥାଟିଏ ପ୍ରକୃତିର ସୁନ୍ଦର ସୁକୁମାର ଅଭିବ୍ୟକ୍ତି ମାତ୍ର ହୋଇ ରହେନାହିଁ, ହୋଇଯାଏ ବିଶ୍ୱଶିଳ୍ପୀଙ୍କର ମନୋରମ ହସର ଲାବଣ୍ୟ ରେଖା । ମହୁମାଛିର ଗୁଣୁଗୁଣୁ ଶବ୍ଦ ସାହିତ୍ୟିକ ପାଇଁ ପ୍ରୀତିପ୍ରବଣତାର ଅନୁଚିନ୍ତା ମାତ୍ର ହୋଇ ରହେନାହିଁ, ହୋଇଯାଏ ଅନୁଚେତନାର ଅମୃତମୟୀ ଧ୍ୱନିମାଳା । ପରିତ୍ୟକ୍ତ ଭଗ୍ନଶିଳା କେବଳ ସ୍ମୃତିର ସାମଗ୍ରୀ ହୋଇ ରହେନାହିଁ, ହୋଇଯାଏ ଗୌରବ ଓ ମୂଲ୍ୟବୋଧର ଯଜ୍ଞଶାଳା ।

କହିବାର ତାତ୍ପର୍ଯ୍ୟ ଏହି ଯେ ସାଧାରଣ ବ୍ୟକ୍ତିର ଅଙ୍ଗୁଳିଫାଙ୍କରେ ଗଳି ଯାଉଥିବା ଦୃଶ୍ୟଗୁଡ଼ିକ ସାହିତ୍ୟିକର ପାପୁଲିରେ ରହିଯାଏ ଏବଂ ବହୁବର୍ଣ୍ଣୀ ଫୁଲରେ ରୂପାନ୍ତରିତ ହୋଇଯାଏ । ସାହିତ୍ୟିକର ଦୃଷ୍ଟି ଏକ ସ୍ୱତନ୍ତ୍ର ଦୃଷ୍ଟି, ଯାହା ପ୍ରାଣରେ ଭରି ଦିଏ ଅସୀମ ଜୀବନୀ ଶକ୍ତି, ମନରେ ଭରିଦିଏ ସମୁଜ୍ଜ୍ୱଳ ଚେତନାର ସୀମାହୀନ ଦୀପ୍ତି । ତା' ଆଗରେ କଥା କହନ୍ତି ପାହାଡ଼ ପର୍ବତ, ଗୀତ ଗାଆନ୍ତି ନଦୀଝରଣା, ନାଚି ଯାଆନ୍ତି ହରିଣହରିଣୀ, ଜହ୍ନ ବଉଦ ଫାଙ୍କରେ ମୁହଁ ଲୁଚାଇ

ଲୁଚକାଳି ଖେଳେ, ସକାଳର ସୂର୍ଯ୍ୟ ରାଜକୁମାର ପରି ଠିଆ ହୁଏ ଏବଂ ଗୋଧୂଳି ଦିଏ ନବ ପ୍ରଭାତର ଶୁଭ ସୂଚନା ଓ ଅଗ୍ରଗତିର ଅନୁପ୍ରେରଣା ।

ସୌନ୍ଦର୍ଯ୍ୟବୋଧର ଭୂମିକା ଏତିକିରେ ଶେଷ ହୁଏ ନାହିଁ ବରଂ ଏହିଠାରୁ ଆରମ୍ଭ ହୁଏ । ପରବର୍ତ୍ତୀ ପଦକ୍ଷେପରେ ଗବାକ୍ଷ ଫାଙ୍କରେ ଏହି ସୌନ୍ଦର୍ଯ୍ୟବୋଧ ଦେଖାଇ ଦିଏ ଅଦୂରରୁ ବହୁଦୂର ପର୍ଯ୍ୟନ୍ତ ପ୍ରସାରିତ ସୁରମ୍ୟ ଶସ୍ୟକ୍ଷେତ୍ର ଓ ତାହାର ଧାରେଧାରେ ଝରୁଥିବା ଅଳସୀ ଝରଣାକୁ । ବହିଃଜଗତରୁ ଅନ୍ତଃଜଗତ ପର୍ଯ୍ୟନ୍ତ ହାତ ଧରି ଏହା ନେଇଯାଇପାରେ ଏବଂ ଅନ୍ତଃଜଗତରୁ ବହିଃଜଗତ ପର୍ଯ୍ୟନ୍ତ ସାହିତ୍ୟିକକୁ ପୁନର୍ବାର ଆଣି ଆସିପାରେ । ଅଶେଷ ସାମର୍ଥ୍ୟର ମୂର୍ତ୍ତପ୍ରତୀକ ଏହି ସୌନ୍ଦର୍ଯ୍ୟବୋଧ ଏକ ଆନନ୍ଦମୟ ସୁରମ୍ୟ ମାର୍ଗ ଯହିଁରେ ଜବାକୁସୁମର ରମଣୀୟ ରଙ୍ଗ ନିରନ୍ତର ବିଞ୍ଛିହୋଇ ପଡୁଥାଏ ।

## ବ୍ରହ୍ମାଙ୍କ ସୃଷ୍ଟି ଓ କବି ସୃଷ୍ଟି :

*"ନିୟତିକୃତନିୟମରହିତାଂ ହ୍ଲାଦୈକମୟୀମନନ୍ୟପରତନ୍ତ୍ରାମ୍ ।*
*ନବରସରୁଚିରାଂ ନିର୍ମିତିମାଦଧତୀ ଭାରତୀ କବେର୍ଜୟତି ॥"*

*(କାବ୍ୟପ୍ରକାଶ ୧/୧ - ଆଚାର୍ଯ୍ୟ ମମ୍ମଟ)*

ବ୍ରହ୍ମାଙ୍କ ସୃଷ୍ଟି ଅପେକ୍ଷା କବିଙ୍କ ସୃଷ୍ଟିର ପ୍ରଥମ ସ୍ୱାତନ୍ତ୍ର୍ୟ ହେଉଛି କବିଙ୍କ ସୃଷ୍ଟି 'ନିୟତିକୃତ ନିୟମ ରହିତ' ଅର୍ଥାତ୍ ବ୍ରହ୍ମାଙ୍କ ସୃଷ୍ଟି ନିୟମ ସହିତ ସଂଚାଳିତ ହେଲାବେଳେ କବିସୃଷ୍ଟି ସ୍ୱୟଂ ସଂଚାଳିତ ହୋଇପାରେ । ଉଦାହରଣ ସ୍ୱରୂପ– ବ୍ରହ୍ମାଙ୍କ ସୃଷ୍ଟିରେ ପଦ୍ମଫୁଲଟିଏ ଫୁଟିବା ପାଇଁ ପଙ୍କ, ପାଣି, ଆଲୋକ ଇତ୍ୟାଦିର ଆବଶ୍ୟକତା ପଡ଼େ । ମାତ୍ର କବି ସୃଷ୍ଟିରେ ଏସବୁ ନଥାଇ ମଧ ପଦ୍ମ ଫୁଟିପାରେ ।

ଦ୍ୱିତୀୟ ବୈଶିଷ୍ଟ୍ୟ ହେଉଛି 'ହ୍ଲାଦୈକମୟତ୍ୱ' । ଏହାର ଅର୍ଥ ହେଉଛି କେବଳ ଆନନ୍ଦର ଉପଲବ୍ଧି । ବ୍ରହ୍ମାଙ୍କ ସୃଷ୍ଟିରେ ସୁଖ ଓ ଦୁଃଖ ଉଭୟ ଥାଏ, ମାତ୍ର କବିଙ୍କ ସୃଷ୍ଟିରେ ଥାଏ କେବଳ ସୁଖ । ସାହିତ୍ୟରେ କରୁଣ ରସ ଥିଲେ ହେଁ ତହିଁରେ କାରୁଣ୍ୟ ନଥାଏ । ତୃତୀୟ ବୈଶିଷ୍ଟ୍ୟ 'ଅନନ୍ୟ-ପରତନ୍ତ୍ରତା' । ଏହାର ଅର୍ଥ ହେଉଛି ବ୍ରହ୍ମାଙ୍କ ସୃଷ୍ଟି ପାଇଁ କିଛି କିଛି ନିମିତ୍ତ କାରଣ ଓ ସହକାରୀ କାରଣ ଥାଏ ମାତ୍ର କବି ସୃଷ୍ଟି ପାଇଁ ନିମିତ୍ତ କାରଣ ଅଥବା

ସହକାରୀ କାରଣ ନଥାଏ । ଚତୁର୍ଥ ବୈଶିଷ୍ଟ୍ୟ ହେଉଛି, ବ୍ରହ୍ମାଙ୍କର ସୃଷ୍ଟିରେ ଛଅଗୋଟି ରସ ଥିବାବେଳେ କବି ସୃଷ୍ଟିରେ ଥାଏ ଅନ୍ୟୂନ ନଅଟି ରସ । ବ୍ରହ୍ମାଙ୍କ ସୃଷ୍ଟିରେ ଥିବା ଛଅ ଗୋଟି ରସ ହେଉଛି– ମଧୁର, ଅମ୍ଳ, ଲବଣ, କଟୁ, ତିକ୍ତ ଓ କଷାୟ । କବି ସୃଷ୍ଟିରେ ଥିବା ନବରସ ଏହିପରି – ଶୃଙ୍ଗାର, ହାସ୍ୟ, କରୁଣ, ରୌଦ୍ର, ବୀର, ଭୟାନକ, ବୀଭତ୍ସ, ଅଦ୍ଭୁତ ଓ ଶାନ୍ତ । ଏତଦ୍‌ବ୍ୟତୀତ ଭକ୍ତିକୁ ଏକରସ ରୂପରେ ସାହିତ୍ୟରେ ଗ୍ରହଣ କରାଯାଇଥାଏ ।

## ସାହିତ୍ୟ ଓ ତାରୁଣ୍ୟ :

କଳା ଓ ସାହିତ୍ୟ ଗୋଟିଏ ମୁଦ୍ରାର ଦୁଇପାଖ ପରି ପରସ୍ପର ସହ ଜଡ଼ିତ । କଳା ପାଇଁ ଯାହା ସତ୍ୟ, ସାହିତ୍ୟ ପାଇଁ ମଧ୍ୟ ତାହା ସତ୍ୟ । ବାସ୍ତବରେ ସାହିତ୍ୟ ଦ୍ୱାରା ବିମୋହିତ ଓ ପ୍ରଭାବିତ ସତ୍ତାଟି ଚିର ତରୁଣ । କଳାକାର ଓ ସାହିତ୍ୟିକମାନଙ୍କୁ ବାର୍ଦ୍ଧକ୍ୟ ସହଜରେ ଗ୍ରାସ କରିପାରେନାହିଁ । ହତାଶା, ଗ୍ଳାନି, ଅବସାଦ, ବିରକ୍ତି ସମେତ ଅନେକ ନକାରାତ୍ମକ ଭାବନା ଭିତରେ ବାର୍ଦ୍ଧକ୍ୟର ମୂଳସୂତ୍ର ନିହିତ ଥାଏ । ମନରେ ବୈରାଗ୍ୟ, ଘୃଣା ଓ ବିରକ୍ତି ଭାବ ଆସିଲେ ବାର୍ଦ୍ଧକ୍ୟର ଆସିବା ବାଟଟି ସୁଗମ ହୋଇଯାଏ । ଏସବୁ ଭାବକୁ ମନକୁ ନ ଆଣିଲେ ଜଣେ ବହୁଦିନ ଧରି ତରୁଣ ରହିପାରେ । ଏହି ନ୍ୟାୟରେ ଶ୍ରୀମା କହିଛନ୍ତି- "ମୁଁ ଅଶୀ ବର୍ଷର ତରୁଣକୁ ଦେଖିଛି ଏବଂ କୋଡିଏ ବର୍ଷର ବୃଦ୍ଧଙ୍କୁ ମଧ୍ୟ ଦେଖିଛି"। ମନ ହିଁ ବାର୍ଦ୍ଧକ୍ୟର ଆଦିଭୂମି । ମନ ଭିତରେ ଯେତେ ଦିନ ପର୍ଯ୍ୟନ୍ତ ନକାରାତ୍ମକ ଭାବନା ଅର୍ଥାତ୍ ହତାଶା, କ୍ରୋଧ, ହିଂସ୍ରତା ଛଳନା ଓ ପ୍ରତାରଣା ସମେତ ଅନେକ ଆସୁରିକ ଗୁଣ ପ୍ରବେଶ କରିନାହିଁ, ସେତେଦିନ ପର୍ଯ୍ୟନ୍ତ ବାର୍ଦ୍ଧକ୍ୟ ଆସିପାରିବ ନାହିଁ। ଶିଳ୍ପୀ ଓ ସାହିତ୍ୟିକମାନଙ୍କ ଭିତରେ ନାସ୍ତିଭାବନା ସହଜରେ ପ୍ରବେଶ କରିପାରୁନଥିବାରୁ ସେମାନେ ବହୁଦିନ ଧରି ତାରୁଣ୍ୟର ସୁବାସକୁ ଆଘ୍ରାଣ କରିପାରନ୍ତି ।

ତାରୁଣ୍ୟର ନିରାଜନା କରେ କଳା ଓ ସାହିତ୍ୟ । ତାରୁଣ୍ୟ ହିଁ ଜୀବନ, ଜଡ଼ତା ହିଁ ମୃତ୍ୟୁ । ଶିଳ୍ପୀ ବା ସାହିତ୍ୟିକର ବୟସକୁ ବିଚାର କରି ତାରୁଣ୍ୟ ଯାଏନାହିଁ, ବରଂ ମାନସିକତାକୁ ବିଚାରକୁ ନେଇ ତାରୁଣ୍ୟ ଯାଏ । ତାରୁଣ୍ୟ ବଳରେ ସୌନ୍ଦର୍ଯ୍ୟର ଉଚ୍ଚତମ ଉଚ୍ଚତା ସ୍ରଷ୍ଟାର ଦୃଷ୍ଟିରେ ପଡ଼େ ।

ସାଧାରଣ ବ୍ୟକ୍ତି ଚର୍ମଚକ୍ଷୁରେ ନୀଳ ଆକାଶକୁ ଦେଖିଲା ବେଳେ ସ୍ରଷ୍ଟା ନିଜର ମର୍ମ ଚକ୍ଷୁରେ ନୀଳିମାର ଲଳିତଲାବଣ୍ୟକୁ ଦେଖିବାକୁ ସମର୍ଥ ହୁଏ । ଏପରି ଘଟିଥାଏ ଗଭୀର ଅନୁରାଗ ହେତୁ । ସାହିତ୍ୟର କି ମନୋଜ୍ଞ ଶକ୍ତି ଅଛି କେଜାଣି ତାହା ଅନ୍ତରରେ ଏକ ପୁଲକ ଭାବ ସୃଷ୍ଟିକରେ । ସେହି ଭାବର ପ୍ରଭାବ କେତେ ମହିମା ମଣ୍ଡିତ, ତାହା ଅନୁଭବୀ ହିଁ ଜାଣେ ।

## ସାହିତ୍ୟର କାଳାଶ୍ରୟୀ ଓ କାଳଜୟୀ ଉପାଦାନ :

ସାହିତ୍ୟର ଗତି କାଳରୁ କାଳାତୀତ । ଏଥିପାଇଁ ପ୍ରତ୍ୟେକ ସାହିତ୍ୟିକର ସୃଷ୍ଟି ଭିତରେ ଅଳ୍ପବହୁତ କାଳାଶ୍ରୟୀ ଓ କାଳଜୟୀ ଉପାଦାନ ରହିବ ହିଁ ରହିବ । ତେବେ ସାହିତ୍ୟରେ କାଳାଶ୍ରୟୀ ଉପାଦାନ ଅପେକ୍ଷା କାଳଜୟୀ ଉପାଦାନ ଯେତେ ଅଧିକ ଉପସ୍ଥାପିତ ହେବ, ସାହିତ୍ୟ ସେତେଅଧିକ ପାଠକୀୟ ଶ୍ରଦ୍ଧା ଓ ସମ୍ମାନ ଅର୍ଜନ କରିବ । ଯାହା ନୂଆ ନୁହେଁ କି ପୁରୁଣା ନୁହେଁ ଅର୍ଥାତ୍ ଯାହା ନୂଆ ପୁରୁଣାରୁ ଊର୍ଦ୍ଧ୍ୱରେ ତାହା ହିଁ କାଳଜୟୀ ଉପାଦାନ । ଜୀବନ ଚିନ୍ତା ଏକ କାଳଜୟୀ ଉପାଦାନ, ଏହା ପାଠକର ମନରେ ଭରିଦିଏ ସାର୍ବଜନୀନ ମମତ୍ୱର ମୁକୁଳିତ ଅନୁଭବ । ଜୀବନ ଚିନ୍ତା ଶବ୍ଦ ଏଠାରେ ତଥାକଥିତ ସନ୍ୟାସ ଅର୍ଥରେ ବ୍ୟବହୃତ ନୁହେଁ । ସମାଜରୁ ପଳାୟନ ନୁହେଁ ବରଂ ସମାଜରେ ରହି ଜନକଲ୍ୟାଣ ତଥା ଜନଚେତନାର ଅଭିବୃଦ୍ଧି ସାଧନ ନିମନ୍ତେ ଉପଯୁକ୍ତ ପ୍ରୟାସ ଓ ପ୍ରଯତ୍ନର ଅନ୍ୟତମ ପରିଭାଷା ରୂପେ ଏହା ଗୃହୀତ ।

ଏତଦ୍‌ବ୍ୟତୀତ କାଳାଶ୍ରୟୀ ଉପାଦାନ ହେଉଛି ସ୍ରଷ୍ଟାଙ୍କର ସୃଷ୍ଟିକାଳୀନ ସମାଜ ତଥା ସଂସ୍କୃତିର ନିଛକ ଚିତ୍ର । କେତେବେଳେ ରାଜତନ୍ତ୍ରର ପ୍ରଶସ୍ତି ତ କେତେବେଳେ ଗଣତନ୍ତ୍ରର ପର୍ଯ୍ୟାଲୋଚନା ଏହି ଚିତ୍ରର ଅନ୍ତର୍ଭୁକ୍ତ । ସାହିତ୍ୟର ସୁଗଠନ ନିମିତ୍ତ କାଳାଶ୍ରୟୀ ଉପାଦାନର ମଧ୍ୟ ଗୌରବଦୀପ୍ତ ଅବଦାନ ରହିଛି । ପରବର୍ତ୍ତୀ ସମୟର ପାଠକବର୍ଗ ବହୁପୂର୍ବର ସାମାଜିକ, ରାଜନୀତିକ ତଥା ସାଂସ୍କୃତିକ ପରିବେଶର ଅଭ୍ରାନ୍ତ ପ୍ରତିବିମ୍ବ ଏହି ଉପାଦାନରୁ ଦେଖିବାକୁ ସମର୍ଥ ହୁଅନ୍ତି । ବନ୍ୟା, ବାତ୍ୟା, ଭୂମିକମ୍ପର ବିଭିନ୍ନ ଚିତ୍ର ଠାରୁ ଆରମ୍ଭ କରି ସାମାଜିକ ଆନ୍ଦୋଳନ ପର୍ଯ୍ୟନ୍ତ ବହୁଚିତ୍ର ଏଥିରେ ଅତ୍ୟାବଶ୍ୟକ ବିବରଣୀ ସହ ଉପସ୍ଥାପିତ ହୋଇଥାଏ । ପ୍ରକୃତରେ ସ୍ରଷ୍ଟା ହେଉଛି ତା'

ସମୟର ଶ୍ରେଷ୍ଠ ସ୍ୱର୍ଣ୍ଣକାତର ସତ୍ତା ଏବଂ ତତ୍କାଳୀନ ସାମାଜିକ ପ୍ରାଣସ୍ପନ୍ଦନକୁ ଧରିରଖି ପାରୁଥିବା ଏକ ଅମଳିନ ପ୍ରେକ୍ଷାପଟ । ନିର୍ଦ୍ଦିଷ୍ଟ ସମୟ ଖଣ୍ଡରେ ଘଟୁଥିବା ଘଟଣା ବା ଦୁର୍ଘଟଣା ସାହିତ୍ୟିକକୁ ଯେତିକି ଆନ୍ଦୋଳିତ କରେ, ଆଉ କାହାକୁ ବୋଧହୁଏ ସେତେ ଆନ୍ଦୋଳିତ କରେନାହିଁ । କେବଳ ସମସ୍ୟାକୁ ସେ ଦେଖେ ତାହା ନୁହେଁ, ସମାଧାନର ପନ୍ଥା ମଧ୍ୟ **unacknowledged legislator** ହୋଇ ସ୍ଥିର କରେ ଓ ସମାଜ ଆଗରେ ଉପସ୍ଥାପନା କରେ ।

## ସାହିତ୍ୟର ଯୁଗକ୍ରମିକ ବର୍ଗୀକରଣର ଯୌକ୍ତିକତା :

ସାହିତ୍ୟ ଏକ ନଦୀଧାରା ଯାହା ବିଶ୍ୱଜୀବନର ଅନେକ ନୂଆନୂଆ କୂଳଉପକୂଳକୁ ଛୁଇଁଛୁଇଁ ବହିଯାଏ । ଦୂର ଅତୀତରୁ ସୀମାତୀତ ଭବିଷ୍ୟତ ପର୍ଯ୍ୟନ୍ତ ପରିବ୍ୟାପ୍ତ ତା'ର ଗତିପଥ । ମାଟି ବା ପଥର ଶଯ୍ୟାରେ ପ୍ରବାହିତ ହେଲାବେଳେ ନଦୀ ଭିନ୍ନଭିନ୍ନ ସ୍ଥାନରୁ ଭିନ୍ନଭିନ୍ନ ଉପାଦାନ ସଂଗ୍ରହ କରିଥାଏ । ତେଣୁ କେତେବେଳେ ନଦୀଜଳରେ ଥାଏ ଲୌହ ଅଂଶ ଅଧିକ ଓ ଆଉ କେତେବେଳେ ପାରଦ ଅଂଶ ଅଧିକ । କେତେବେଳେ ନଦୀର ଜଳ ବିଶେ ସ୍ୱଚ୍ଛ ତ ଆଉ କେତେବେଳେ ପୀତ ଅବା ଲୋହିତ । ଏହିପରି ସାହିତ୍ୟ ଭିନ୍ନଭିନ୍ନ ସମୟ ଭୂମିରେ ପ୍ରବାହିତ ହେଲାବେଳେ ସମାଜର ଭିନ୍ନଭିନ୍ନ ସ୍ପନ୍ଦନକୁ ବହନ କରିଥାଏ । ତଦନୁସାରେ ଏହାର ଆଙ୍ଗିକ ଓ ଉପାଦାନଗତ ପରିବର୍ତ୍ତନ ପରିଲକ୍ଷିତ ହୁଏ । କାଳାଶ୍ରୟୀ ଉପାଦାନର ଭିତ୍ତିରେ କାଳଜୟୀ ଉପାଦାନ ହୁଏ ସଂସ୍ଥାନିତ । ଅତୀତର ଆଲୋକରେ ବର୍ତ୍ତମାନକୁ ଅଧ୍ୟୟନ କରିବା ଏବଂ ବର୍ତ୍ତମାନର ଦୀପ୍ତିରେ ଭବିଷ୍ୟତକୁ ନିରୀକ୍ଷଣ କରିବା ସାହିତ୍ୟିକର କାର୍ଯ୍ୟ । ସମୟ ଖଣ୍ଡରେ ସାହିତ୍ୟ ବନ୍ଧା ପଡ଼େନାହିଁ । କେବଳ ଆଲୋଚନାର ସୁବିଧା ପାଇଁ କେତେବେଳେ ପ୍ରବୃତ୍ତି ଅନୁସାରେ, କେତେବେଳେ ଶତାବ୍ଦୀର କ୍ରମ ଅନୁସାରେ ପୁଣି କେତେବେଳେ ପ୍ରମୁଖ ସ୍ରଷ୍ଟାଙ୍କ ନାମାନୁସାରେ ବିଭାଜନ କରାଯାଏ । ଏ ବିଭାଜନ କାଳ୍ପନିକ ।

ବାସ୍ତବରେ ସାହିତ୍ୟ ବିଭାଜିତ ହୋଇପାରେ ନାହିଁ ବରଂ ବିବର୍ତ୍ତିତ ହୋଇ ବିକଶିତ ହୁଏ । କୌଣସି ନା କୌଣସି କାରଣରୁ ଏହି ସାହିତ୍ୟକୁ ଆମେ ଯେତେ ଅଲୋଡ଼ା ବୋଲି ବିଚାର କଲେ ମଧ୍ୟ ଆମ ବିଚାର ଆଦୌ ଶ୍ରେଷ୍ଠ ବିଚାର ନୁହେଁ କିମ୍ବା ଶେଷବିଚାର ନୁହେଁ । ସାହିତ୍ୟ ପ୍ରତି ଅନାସ୍ଥାଭାବ

ଓ ଅବହେଳା ଆଦୌ ସୁସ୍ଥ ମାନସିକତାର ପରିଚୟ ନୁହେଁ । ଶ୍ରଦ୍ଧା, ସୌନ୍ଦର୍ଯ୍ୟ, ସମ୍ବେଦନା, ସଂହତି ଓ ପ୍ରେରଣାର ପରିପ୍ରକାଶ ତଥା ମାନବିକତାର ଅମୃତାୟନ ହିଁ ସାହିତ୍ୟ । ବିରକ୍ତି ଓ ବିତୃଷ୍ଣାରେ ଜର୍ଜରିତ ମାନସିକ ଅବସ୍ଥା ପାଇଁ ଏହା ଅନୁରକ୍ତିର ଅମନ୍ଦ ମନ୍ଦାକିନୀ ଧାରା । ସନ୍ତାପରେ ସାନ୍ତ୍ୱନା, ଅନିଶ୍ଚିତତା ଭିତରେ ନିଶ୍ଚିତତାର ପ୍ରତିଶ୍ରୁତି, ମୃତ୍ୟୁର ଆଲିଙ୍ଗନ ଭିତରେ ଅମରତ୍ୱର ବାସନା, କୋଳାହଳ ଭିତରେ ନିବିଡ଼ ନୀରବତା ହିଁ ସାହିତ୍ୟର ଅମଳିନ ଅବଦାନ । ଯେତେଦିନ ପର୍ଯ୍ୟନ୍ତ ବିଶ୍ୱପ୍ରକୃତି, ବିଶ୍ୱମାନସ ଏବଂ ବିଶ୍ୱଜୀବନ ରହିଥିବ ସେତେଦିନ ପର୍ଯ୍ୟନ୍ତ ସାହିତ୍ୟ ଅମର ହୋଇ ରହିଥିବ । ସୂର୍ଯ୍ୟଙ୍କର ପ୍ରକଟନକୁ କୁହୁଡ଼ି ଅଟକାଇବାକୁ ପ୍ରଚେଷ୍ଟା କରି ବ୍ୟର୍ଥକାମ ହେଲାପରି ଆମେ ସାହିତ୍ୟକୁ ଅବାଞ୍ଛିତ ଓ ଅଦରକାରୀ କହି ଶେଷରେ ବ୍ୟର୍ଥକାମ ହେବା । ମନୁପୁତ୍ରର ଜୀବନ ଥିଲାଠାରୁ ଥିବା ପର୍ଯ୍ୟନ୍ତ ସାହିତ୍ୟ ଥିଲା ଓ ରହିବ । ସାହିତ୍ୟ କହିଛି ଓ କହିବ ଆମରି କଥା । ତାହା ଆମଠାରୁ ଦୂରେଇ ଯିବ ନାହିଁ । ଆମ ଭିତରେ ସାହିତ୍ୟ ରହିଥିବ ଏବଂ ଆମେ ସାହିତ୍ୟ ଭିତରେ ରହିଥିବା । ଗୋଟିଏ ଅନୁପମ ଅଦୃଶ୍ୟ ବନ୍ଧନ ଆମ ସହିତ ତାକୁ କାଳେକାଳେ ବାନ୍ଧି ରଖିଥିବ । ଭାବପ୍ରବଣତା ନୁହେଁ, ବରଂ ଅଧିକରୁ ଅଧିକ ଭାବ ହେଉଥିବ ସାହିତ୍ୟର ମଥାମଣି । ପଳାୟନ ନୁହେଁ, ଅଧିକ ଅଙ୍ଗୀକାରବଦ୍ଧତା ହେଉଥିବ ସାହିତ୍ୟର ଶ୍ୟାମଳ ସାରାଂଶ ।



# କବି ଓ କବିତ୍ୱ

*"ଜୀବିତା ଏହି ଜୀବନରୁ ରସ ଟାଣି ବଞ୍ଚେ । ମଣିଷର ସୁଖଦୁଃଖ, ଚାରିପାଖାର ପୃଥିବୀ, ସବୁ ପ୍ରବୃତ୍ତି, ଆଦର୍ଶ କବିତାର ବସ୍ତୁ । ଜୀବନଠାରୁ କବିତାକୁ ଅଲଗା କରି ଦେଖିବା କଥା ଉଠି ନପାରେ ।"*
*(ପ୍ରବନ୍ଧ - ଏପାରି ସେପାରି - ଗୋପୀନାଥ ମହାନ୍ତି)*

ଆତ୍ମଅଭିବ୍ୟକ୍ତି ନିମନ୍ତେ କବିତ୍ୱ ଯେଉଁ ବ୍ୟକ୍ତିକୁ ମାଧ୍ୟମ ରୂପେ ନିର୍ବାଚନ କରେ, ସେହି ବ୍ୟକ୍ତିକୁ ଆମେ କବି ବୋଲି କହୁ । କବିର ଅନ୍ୟନାମ ସ୍ରଷ୍ଟା । ଭାରତୀୟ ସାହିତ୍ୟ ତତ୍ତ୍ୱରେ କୁହାଯାଏ - 'କବୟଃ କ୍ରାନ୍ତିଃ ଦର୍ଶିନଃ', ଇଂରାଜୀ ଶବ୍ଦ poet ର ମୂଳ ଲାଟିନ ଶବ୍ଦ ହେଉଛି poeta । କବି ଜନ୍ମ ହୋଇଥାନ୍ତି, କର୍ମଶାଳାରୁ ତାଲିମ୍ ପାଇ ସୃଷ୍ଟ ହୁଅନ୍ତି ନାହିଁ । ଉଚ୍ଚଭୂମିରୁ ଅବତରଣ କରି ଆସୁଥିବା ଚେତନା ଓ ନିମ୍ନଭୂମିରୁ ଉତ୍ତରଣ କରୁଥିବା ଅଭୀପ୍‌ସା ମଧ୍ୟରେ କବି ଏକ ସଂଯୋଗ ସରଣୀ । କବି ଖୋଜେ ଶିଖରଟିଏ, ଶିଖରରେ ମହକଟିଏ ଆଉ ମହକରେ ପୂର୍ଣ୍ଣତାଟିଏ ।

ମାଧ୍ୟମ ହୋଇନଥିବା ବେଳେ କବିଟିଏ ସାଧାରଣ ବ୍ୟକ୍ତି ହୋଇ ରହିଥାଏ । କବିତ୍ୱ ଏକ ସ୍ଥାୟୀଶକ୍ତି ଓ ଚେତନା ନୁହେଁ । ଏହା ଇଚ୍ଛାମତେ ଆସେ ଓ ଯାଏ । କେବଳ ରଖିଯାଏ ତାର ପାଦଚିହ୍ନ, ଯାହାକୁ ଆମେ କବିକୃତି ବୋଲି କହୁ । ଅତୀତ ଓ ଅନାଗତ ମଧ୍ୟରେ ଏହା ଏକ ପ୍ରବହମାନ ଯୋଗସୂତ୍ର । ଯାହା ମଳୟ ପ୍ରବାହ ପରି ଯାହା ସ୍ରଷ୍ଟା ଚିତ୍ତକୁ ସ୍ପର୍ଶକରେ, କ୍ଷଣକ ପାଇଁ ହେଲେ ମଧ୍ୟ ଜୀବନର ଦୁଃଖ, ଅବସାଦ, ବ୍ୟର୍ଥତା ଓ ଅସ୍ଥିରତା ପ୍ରଭୃତିକୁ ଦୂରେଇ ଦିଏ । ଅଜଣା ପୁଲକରେ ପ୍ରାଣ ପୁଲକିତ ହୁଏ, ମନକୁଞ୍ଜରେ ଅହେତୁକୀ ଆନନ୍ଦର ଥୋପାଥୋପା ବହୁବର୍ଣ୍ଣାଫୁଲ ଫୁଟିଯାଏ, ବାସ୍ନାରେ ଚଉହଦୀ ମହକି ଯାଏ । କବିଙ୍କର ଏହି ସୂକ୍ଷ୍ମ ଶାଣିତ ଅନୁଭବଟି ପ୍ରକାଶ ପାଏ ବିଭିନ୍ନ ଚିତ୍ର ଓ ଚରିତ୍ର ମାଧ୍ୟମରେ । ଅନୁଭବ ଶବ୍ଦର ଅର୍ଥ ହେଉଛି ଅନ୍ୟର ଅଲକ୍ଷ୍ୟରେ ତା'ର ହୃଦୟର ଗଭୀରତାରେ ପହଞ୍ଚିବା । ବ୍ୟକ୍ତି କହିଲେ ଯେପରି କେବଳ ଆତ୍ମାକୁ ବୁଝାଏ ନାହିଁ, ଦେହ, ପ୍ରାଣ, ମନ ସହିତ ଆତ୍ମାକୁ ବୁଝାଏ, କବିସୃଷ୍ଟି କହିଲେ ସେପରି କବିର ଅନୁଭବକୁ କେବଳ ବୁଝାଏ ନାହିଁ, ଭାଷା, ଶୈଳୀ, ଛନ୍ଦ, ଅଳଂକାର, ଧ୍ୱନି, ରସ

ସହିତ ଅନୁଭବକୁ ବୁଝାଏ । ଅତଏବ ଦେହ, ପ୍ରାଣ ମନକୁ ଆଶ୍ରୟ କରି ଆତ୍ମାର ଅଭିବ୍ୟକ୍ତି ପୂର୍ଣ୍ଣାଙ୍ଗ ହେଲାପରି, ଭାଷା, ଛନ୍ଦ, ଅଳଂକାର ଓ ରସ ଇତ୍ୟାଦିକୁ ଆଶ୍ରୟକରି ଅନୁଭବର ଅଭିବ୍ୟକ୍ତି ପୂର୍ଣ୍ଣାଙ୍ଗ ହୁଏ । ଦେଶ ଭେଦରେ ଭାଷା, ଛନ୍ଦ, ଶୈଳୀ, ଅଳଂକାର ଭିନ୍ନ ହେଲେ ହେଁ ଅନୁଭବରେ ବହୁ ସାମ୍ୟ ପରିଲକ୍ଷିତ ହୁଏ । ଅତଏବ ଅନୁଭବ ସାର୍ବଜନୀନ, ତାହା ଦେଶ, କାଳ, ପାତ୍ରର ବନ୍ଧନରେ ଆବଦ୍ଧ ନୁହେଁ । ଅନ୍ୟପକ୍ଷରେ କୁହାଯାଇପାରେ ଯେ ନବଚେତନା ଓ ନବମୂର୍ଚ୍ଛନାର ନାତିଦୀର୍ଘ ନାନ୍ଦୀମୁଖହିଁ କବିର କବିତ୍ୱ, ଯାହା ସ୍ୱର୍ଣ୍ଣାକ୍ଷରରେ ସ୍ମରଣିକା ହୋଇ କାଳକାଳ ରହଥାଏ ।

କାଶତଣ୍ଡୀର ନିର୍ଜ୍ଜନତା କବି ଭାଗ୍ୟରେ ନାହିଁ, କାରଣ ନିଜଦ୍ୱାରା ସୃଷ୍ଟ ଚରିତ୍ର ଏବଂ ପରିବେଶ ଠାରୁ ନିଜକୁ ସେ ଅଲଗା ରଖିପାରନ୍ତି ନାହିଁ, ଏକାକାର ହୋଇଯାଆନ୍ତି । କେତେବେଳେ ସେ ହୁଅନ୍ତି ଅରୁଣିମାର ଶ୍ରୁତଲିଖନ ଓ ଆଦ୍ୟଉଷାର ପତ୍ର ଲେଖା । ଆଉ କେତେବେଳେ ମ୍ଳାନ ଗୋଧୂଳିର ଫିକା ହସ ଓ ଅମାରାତିର ଆତ୍ମବିସ୍ମୃତି । କାନ୍ଦଣାଗୀତ ଠାରୁ ଆରମ୍ଭକରି ଓଡ୍, ସନେଟ, ଏଲିଜି ପର୍ଯ୍ୟନ୍ତ ସବୁଥିରେ ଜୀବନ ପ୍ରତି ତାଙ୍କର ଅବିଚଳ ବଚନବଦ୍ଧତା ପ୍ରମୂର୍ତ୍ତ ହୋଇଥାଏ । କେତେବେଳେ ନବବିବାହିତା ଝିଅର ମନ ନେଇ ସେ କାନ୍ଦନ୍ତି, ଆଉ କେତେବେଳେ ପିତୃ ହୃଦୟର ଗଭୀର ମନନଶୀଳତାରେ ମଜ୍ଜିଯାଇ ଝିଅକୁ କେତେ ବୁଝାନ୍ତି । କେତେବେଳେ ସେ ମାଆରମମତା ନେଇ ଉତ୍କଣ୍ଠାର ସହ ଚାହିଁ ରହିଥାନ୍ତି ଗୋଠବାହୁଡ଼ା ବାଟକୁ, ଆଉ କେତେବେଳେ ସଖୀହୋଇ ରାଜକୁମାରୀର ଜୁଡ଼ାକୁ କିଆ କେତକୀ ଫୁଲରେ ସଜାଡି ଦିଅନ୍ତି । ଅକ୍ରୂର ହୋଇ ବାର୍ତ୍ତା ଆଣନ୍ତି ପୁଣି କୃଷ୍ଣ ହୋଇ ରଥ ଚଳାନ୍ତି । ରାଜକୁମାର ହୋଇ ନିର୍ମଳ ଚନ୍ଦ୍ରକିରଣରେ ଭିଜିଭିଜି ପତ୍ର ଲେଖନ୍ତି, ପୁଣି ରାଜକନ୍ୟା ହୋଇ ଶିବିକାରେ ବସି ହତାଶା ଜର୍ଜ୍ଜରିତଚିତ୍ତରେ ଶେଷଚିଠି ଲେଖନ୍ତି ପିତାଙ୍କ ପାଖକୁ, ତମସା ହୋଇ ଅନାଇ ରହନ୍ତି ତପସ୍ୱିନୀ ସୀତାଙ୍କର ଆସିବା ବାଟକୁ, ପଦ୍ମଫୁଲକୁ ଦେଖି ଭାବମୁଗ୍ଧ ହୁଅନ୍ତି ଏବଂ ଭଗ୍ନ କୋଣାର୍କକୁ ଦେଖି ହତାଶାରେ ଜର୍ଜରିତ ହୁଅନ୍ତି । କେତେବେଳେ ଡ଼ାଫୋଡ଼ିଲ୍ ଫୁଲକୁ ଦେଖି କବି ଭାବବିଭୋର ହୋଇ ପଡ଼ନ୍ତି ତ ଆଉ କେତେବେଳେ ଘନ ଅରଣ୍ୟର ସଂଗୀତରେ ଆତ୍ମବିସ୍ମୃତ ହୁଅନ୍ତି, ପୁଣି କେତେବେଳେ ବର୍ଷାବତାସିକୁ ସାକ୍ଷୀରଖି ମର୍ମବ୍ୟଥା ପ୍ରକଟ କରନ୍ତି ।

କବି ପାଇଁ ଆକାଶ ଯେତିକି ସୁନ୍ଦର ଓ ଶୋଭନୀୟ, ଧରିତ୍ରୀ ସେତିକି ରମ୍ୟ ଓ ଲୋଭନୀୟ । ସବୁ ଘଟଣାର ଅନ୍ତରାଳରେ ଥିବା ଆଉକିଛି ସତ୍ତାସହ ତାଙ୍କର ସାକ୍ଷାତ୍‌କାର ହୁଏ । ସେହି ସତ୍ତା ଲେଖିବାକୁ ପ୍ରେରଣା ଦିଅନ୍ତି ଏବଂ ଲେଖିବାର ଉପାଦାନ ମଧ ହୋଇଯାଆନ୍ତି । ସକାଳ, ସନ୍ଧ୍ୟା, ବର୍ଷା, ବସନ୍ତ, ଆକାଶ, ଧରିତ୍ରୀ, ଆଶା, ନିରାଶା, ହସ, ଲୁହ ସବୁ ସହ କବି ଏକାକାର ହୋଇପାରନ୍ତି । ଏହି ଏକାତ୍ମତାବୋଧ ହିଁ କବିତ୍ୱର ବିମଳ ଐଶ୍ୱର୍ଯ୍ୟ । ବିଦ୍ରୋହ ଓ ଅନୁତାପ, ଆନ୍ଦୋଳନ ଓ ଆତସବାଜି କବିତ୍ୱ ନଈର କେତେକେତେ ତୁଠ ହୋଇଯାଆନ୍ତି । ପୃଥିବୀ ଓ ଦୂର ଆକାଶକୁ ଧରି ରଖିବାକୁ କବି ହୃଦୟ ପାଲଟିଯାଏ ବାରିଅଗଣାଟିଏ । ସେଥିରେ ହସ କୃଷ୍ଣଚୂଡ଼ା ଫୁଲପରି ଫୁଟିଲାବେଳେ ଟୋପାଟୋପା ଲୁହ ଚଇତି ରାତିର ମଲ୍ଲୀଫୁଲ ପାଲଟିଯାଆନ୍ତି ।

କବିତ୍ୱ ଏକ ଶିଳ୍ପକଳା, କବି ଏକ ମାଳାକାର । କବିମାତ୍ରେ ସୌନ୍ଦର୍ଯ୍ୟର ପୂଜାରୀ । ନାନ୍ଦନିକ ଚିନ୍ତାରେ ସେ ଥାଏ ସତତ ଭାବବିଭୋର । ଫୁଲକୁ ଫୁଲ ମିଶାଇ ମାଳାକାର ମାଳାଗଢ଼େ, ସଜ୍ଜୀକରଣର କଳାତ୍ମକତା ମାଳାଟିକୁ ଅଧିକ ସୁନ୍ଦର କରିଥାଏ । ଫୁଲର ଶୋଭା ସହିତ ମାଳାକାରର ସୁକୁମାର କଳାତ୍ମକ ଚିତ୍ତବୃତ୍ତି ଯୁକ୍ତ ହୋଇଥିବାରୁ ମାଳାରେ ଥିବା ଫୁଲର ଲାବଣ୍ୟ ଯେପରି ବହୁଗୁଣିତ ହୁଏ, ଗୋଟିଗୋଟି ଶବ୍ଦ ଭିତରେ ଥିବା ଶକ୍ତି କାବ୍ୟ ବା କବିତାରେ ଗୁନ୍ଥାହେଲା ପରେ ଶବ୍ଦର ଶକ୍ତି ସେହିପରି ବହୁଗୁଣିତ ହୁଏ ।

ପ୍ରତ୍ୟେକ କବି ଯେ କେବଳ ଜଣେ ମାଳାକାର, ଏପରି ନୁହେଁ । ସେ ମଧୁକର ଭୂମିକାରେ ମଧ୍ୟ ଅବତୀର୍ଣ୍ଣ ହୁଅନ୍ତି । ମଧୁକର ଯେପରି ବିଭିନ୍ନ ଫୁଲରୁ ମହୁ ଆଣି ସେଥିରେ ନିଜର ଲାଳ ମିଶାଇ ମଧୁଚକ୍ରରେ ସାଇତି ରଖେ, କବି ସେପରି ବିଭିନ୍ନ ଘଟଣା ଦେଖି ଯାହା ଜାଣନ୍ତି ସେଥିରେ ନିଜସ୍ୱ ବିଚାରଧାରା ମିଶାଇ ତାକୁ ଲେଖନୀମୁନରେ ରୂପଦିଅନ୍ତି । ସାମ୍ବାଦିକଙ୍କ ପରି 'ଗଲି ଅଇଲି, ଯାହା ଦେଖିଲି ତାହା କହିଲି' ନ୍ୟାୟରେ କବି କହନ୍ତିନାହିଁ । ଆଉ କିଛି କଳ୍ପନା, କଥା, ଚିନ୍ତା ଓ ଚେତନା ସେଥିରେ ମିଶାଇ ଥାଆନ୍ତି । ତାଙ୍କ ହୃଦୟରେ ଭାବାନ୍ତର ଆସେ । ଭିନ୍ନ ଏକ ଜଗତରେ ମନ୍ତ୍ରମୁଗ୍ଧ ହୋଇ ସେ କିଛିକ୍ଷଣ ରହିଯାଆନ୍ତି । ଗୋଟିଏ ଘଟଣା ବା ପ୍ରାକୃତିକ

ଦୃଶ୍ୟ ଦେଖିଲେ ସାଧାରଣ ବ୍ୟକ୍ତିର ମନରେ ଯେତିକି ଭାବ ଆସେ, କବି ମନରେ ତାହାଠାରୁ ଅଧିକ ଭାବ ଆସେ ।

ଗୋଟିଏ ଆଧାରରେ ଦୁଇଟି ଅବବୋଧକୁ କବି ଧରି ରଖିପାରେ । ଗୋଟିଏ ବ୍ୟକ୍ତି ବୋଧ ଓ ଅନ୍ୟଟି ହେଉଛି ବିଶ୍ୱବୋଧ । ବ୍ୟକ୍ତିବାଦର ବୀଣା ଅଜ୍ଞାତ ବିଶ୍ୱଶିଳ୍ପୀଙ୍କର ଅଦୃଶ୍ୟ କର ସ୍ପର୍ଶରେ ତା' ଆଧାରରେ ବାଜିଉଠେ । ଏପରି କୁହାଯାଇପାରେ ଯେ ବ୍ୟକ୍ତିବୋଧ ବାଟ ଦେଇ ବିଶ୍ୱବୋଧରେ ପହଞ୍ଚିବା ପାଇଁ ଅଭିପ୍ରେତ ପ୍ରୟାସର ସୂକ୍ଷ୍ମ ରୂପାୟନ ହିଁ କବିତା । ଶ୍ରୀଅରବିନ୍ଦଙ୍କ ଉକ୍ତି ଏହି ପରିପ୍ରେକ୍ଷୀରେ ସ୍ମରଣକୁ ଆସେ - ***"The poet has in him a double personality, a double instrument of his response to the life and existence. There is in him a normal man absorbed in mere living who thinks and feels and acts like others and there is the seer of things, the super normal man" । (Future poetry)***

ସୌନ୍ଦର୍ଯ୍ୟବୋଧ ହେଉଛି କବିତ୍ୱର ଅନ୍ୟତମ ଅନବଦ୍ୟ ଉପାଦାନ । କବି ଦୃଷ୍ଟି ସ୍ୱତନ୍ତ୍ର, ଅତି ସାଧାରଣ ବସ୍ତୁ ମଧ୍ୟ କବି ଦୃଷ୍ଟିକୁ ଆକୃଷ୍ଟ କରେ । ସବୁଦୃଶ୍ୟ ଓ ସବୁବସ୍ତୁ ଭିତରେ ସେ ଦେଖିପାରେ ଏକ ସୁଷମ ଛନ୍ଦର ଲୀଳାବିଳାସ । ବସ୍ତୁରେ ଯେତିକି ସୌନ୍ଦର୍ଯ୍ୟ ଥାଏ, କବି ଦୃଷ୍ଟିରେ ତାହା ବହୁଗୁଣିତ ହୋଇଥାଏ । ରୂପ ଭିତରେ ସେ ଅରୂପକୁ ଦର୍ଶନ କରେ, ଶବ୍ଦ ଭିତରେ ଅଶବ୍ଦକୁ ଶ୍ରବଣ କରେ । ପରିପାର୍ଶ୍ୱର ପୃଥିବୀରେ ସେ ଯାହା ଦେଖେ ତହିଁରେ ଆତ୍ମବିହ୍ୱଳ ହୋଇ ସ୍ଥୂଳତ୍ୱରେ ଆବିଷ୍କାର କରେ ସୂକ୍ଷ୍ମତ୍ୱର ନୀଳାଭ ସ୍ଥିତିକୁ । ସୌନ୍ଦର୍ଯ୍ୟ ଏକ ସମନ୍ୱିତ ପ୍ରକ୍ରିୟା । ଦୃଶ୍ୟ, ଦୃଷ୍ଟି ଓ ପରିବେଶର ସହଯୋଗ ଏଥିପାଇଁ ଆବଶ୍ୟକ । ପ୍ରଥମେ ଦୃଶ୍ୟର କଥା ଯାହା ହୋଇଥିବ ସୁଠାମ, ସୁନ୍ଦର ଓ ସଂଗଠିତ । ସେ ଦୃଶ୍ୟ ବସ୍ତୁଗତ ହୋଇପାରେ ଅଥବା ଭାବଗତ ହୋଇପାରେ । ତହିଁରେ ଥିବା ଲାବଣ୍ୟ ଆଙ୍ଗିକ ବା ଆତ୍ମିକ ହୋଇପାରେ । ଦ୍ୱିତୀୟରେ ଦ୍ରଷ୍ଟାର ମାନସିକତାରେ ଗ୍ରହଣଶୀଳତା ଥିବା ଏକାନ୍ତ ଜରୁରୀ । ଚର୍ମଚକ୍ଷୁ ଅପେକ୍ଷା ମର୍ମଚକ୍ଷୁରେ ଦୃଶ୍ୟର ସୂକ୍ଷ୍ମାନୁଭବ ପାଇଁ ତାଙ୍କର ସାମର୍ଥ୍ୟ ଥିବା ଏକାନ୍ତ କାମ୍ୟ । ତୃତୀୟରେ ପରିବେଶର କଥା ଯାହାକି ଉଦ୍ଦୀପନ ବିଭାବ ପରି କ୍ରିୟାକରେ । ତାହାର ଭୂମିକା ମଧ୍ୟ ଗୁରୁତ୍ୱପୂର୍ଣ୍ଣ ।

ଉଦାହରଣଟିଏ ଦେଲେ ଏଇ ପରିବେଶକଥାଟି ଅଧିକ ସ୍ପଷ୍ଟ ହେବ । ଶବ ଉପରେ ପଦ୍ମଫୁଲର ମାଳଟିଏ ଲମ୍ବାଇଦେଲେ ଯଥାଯଥ ପରିବେଶର ଅଭାବରୁ ଫୁଲମାଳଟିର କୌଣସି ମାଦକତା ଉପଲବ୍ଧ ହୁଏନାହିଁ । ଏସବୁ ଥିବା ସତ୍ତ୍ୱେ ଆଉଗୋଟିଏ ଅଧିକ କଥା କବିଙ୍କ ପାଖରେଥାଏ । ତାହା ହେଉଛି ଅଭିବ୍ୟକ୍ତିର ସାମର୍ଥ୍ୟ । ଅନୁଭବକୁ ଯଥୋଚିତ ଶବ୍ଦମାନଙ୍କରେ ସେ ପ୍ରକଟ କରିଥାନ୍ତି । ଫଳତଃ ପାଠକମାନେ ଯାହା ଯେମିତି କୁହାଯିବାକଥା ବୋଲି ଭାବୁଥିଲେ, ତାହା ସେମିତି କୁହାଯିବାର ଦେଖି ଆନନ୍ଦିତ ହୁଅନ୍ତି ।

କବିମାତ୍ରେ ଜୀବନାନୁରାଗୀ, କବିତାମାତ୍ରେ ଏକ ଜୀବନଧର୍ମୀ କଳାକୃତି । ବ୍ୟକ୍ତିଗତ ଜୀବନକୁ ତଥା ସାମାଜିକ ଜୀବନକୁ ସୁସ୍ଥ ଓ ସୁସମଞ୍ଜସ କରିବାକୁ ସେ ଅଂଗୀକାରବଦ୍ଧ । ଯାହା ଅମାର୍ଜିତ, ଅରୁଚିକର, ଅସଂସ୍କୃତ, ରୁକ୍ଷ, ରୂଢ଼, କବି ତା'ର ନିରାଜନା କରନ୍ତି ନାହିଁ । ତେବେ ଜୀବନର ସୁଖଦୁଃଖ ଆଶାନିରାଶା ସବୁକିଛି କବିତାରେ ରୂପ ପାଇପାରେ । କବି ସ୍ୱର୍ଗ ଓ ଆକାଶକୁ ଚାହିଁବାକୁ ଯେତିକି ଆଶାୟୀ, ଧୂସର ଧରିତ୍ରୀକୁ ଆଦର କରିବାକୁ ସେତିକି ଆଗ୍ରହୀ । କବି ନିଜ ବାସ୍ନାରେ ବିମୋହିତ ଏକ ଝାଡ଼ମଲ୍ଲୀ । ଧୂଳିର ଧରଣୀରେ ବାସ କରି ସେ ଅନନ୍ତଙ୍କ ଆଶ୍ଳେଷ ନିମନ୍ତେ ସତତ ପ୍ରୟାସୀ । କବିଚିତ୍ତ ପରମାନନ୍ଦରେ ପରିପୂର୍ଣ୍ଣ । ହତାଶା, ଦୁଃଖ, ଅବଶୋଷ, ଅବସାଦର ବର୍ଣ୍ଣନା କଲେ ହେଁ କବି ସେଠାରେ ବନ୍ଦୀ ହୁଅନ୍ତି ନାହିଁ, ତହିଁରେ ବାନ୍ଧି ହୁଅନ୍ତି ନାହିଁ । ନିଜଠାରୁ ଅର୍ଥାତ୍ ନିଜ ଅହଂଠାରୁ ନିଜକୁ ମୁକୁଳାଇବାକୁ ସେ ସର୍ବଦା ଯତ୍ନଶୀଳ । ଏହା ସ୍ୱୀକାର୍ଯ୍ୟ ଯେ ଯେଉଁ ଦେଶର କବି ଯେତେ ସତର୍କ ଓ ସଚେତନ, ସେ ଦେଶର ସଂସ୍କୃତି ସେତେ ଅଧିକ ମାର୍ଜିତ । ଅପସଂସ୍କୃତିକୁ ବିରୋଧ କରିବା ସକାଶେ କବି ସାଜନ୍ତି ମନ ସୀମାନ୍ତର ଜାଗ୍ରତ ପ୍ରହରୀ । ବିଶ୍ୱଜୀବନର ସମୃଦ୍ଧି ନିମନ୍ତେ ଅନୁପମ ପ୍ରୟାସ ହିଁ ତାଙ୍କ ଚେତନାର ବିଶେଷ ବିଶେଷତ୍ୱ । ବିଶ୍ୱପ୍ରେମରେ ପ୍ରେମୀ ହୋଇ କବି ହୁଅନ୍ତି ଗଭୀର ଆନନ୍ଦର ଅଧିକାରୀ । ଉଦାରପ୍ରଶସ୍ତ ମନ ତାଙ୍କର ଚାହୁଁଥାଏ ନିଜକୁ ବିଶ୍ୱ ଭିତରେ ଓ ବିଶ୍ୱକୁ ନିଜ ଭିତରେ ଆବିଷ୍କାର କରିବାକୁ । ବିଭିନ୍ନ ଆଦର୍ଶ ଓ ଚେତନାର ସମନ୍ୱୟରେ ସେ ଆସ୍ଥାବାନ । ନିଜକୁ ବଡ଼ଭାବି ଅନ୍ୟକୁ ସାନ ଭାବିବାର ହୀନମନ୍ୟତା ତାଙ୍କର ନଥାଏ । ଅନ୍ୟର ପ୍ରଶଂସାରେ ସେ ଉଲ୍ଲସିତ ଅଥବା ଅନ୍ୟର ନିନ୍ଦାରେ ମର୍ମାହତ ହୁଅନ୍ତି ନାହିଁ । ଅଧ୍ୟାତ୍ମସାଧକ ପରି ଚିତ୍ତବୃତ୍ତିକୁ ସଂଯତ କରି ସେ ହୁଅନ୍ତି ସ୍ଥିତପ୍ରଜ୍ଞତାର

ଅଧିକାରୀ । ତଳେ ମାଟି ଓ ଉପରେ ଆକାଶ, ମଝିରେ ସେ ହୋଇଥାନ୍ତି ଉତ୍ତରଣର ଏକ ଉଦ୍ଧାମ ଉଦ୍‌ଭାସ ।

କବି କେତେବେଳେ ନିଜ ସହିତ ଯୁକ୍ତ ତ ଆଉ କେତେବେଳେ ନିଜଠାରୁ ନିଜେ ମୁକ୍ତ । କେତେବେଳେ ସେ ଦ୍ୱିଧାବିଭକ୍ତ ତ କେତେବେଳେ ବହୁଧା ବିଭକ୍ତ, କେତେବେଳେ ନିଜ ପାଖରେ ସୁଲଭ ତ କେତେବେଳେ ନିଜ ପାଖରେ ନିଜେ ଅତ୍ୟନ୍ତ ଦୁର୍ଲ୍ଲଭ । ଯୁକ୍ତିନିଷ୍ଠତା ଓ ଭାବପ୍ରବଣତାର ଗ:ସା:ଗୁ: ହେଉଛି କବି ଚିତ୍ତ । ହାତ ତାତି ଯାଉଥିଲେ ବି ଦେବତାର ପୂଜାଦୀପକୁ ଛାଡ଼ିବ କି ଛାଡ଼ିବନି - ଏଇ ଭାବନାର ମିଶ୍ରିତ ଅର୍ଦ୍ଧାଂଶରେ ବେଳେବେଳେ ସେହି ଚିତ୍ତ ଥିଲାବେଳେ ବହୁବେଳେ 'ଛାଡ଼ିବନି' ଭାବନାରେ ଆଚ୍ଛନ୍ନ ହୋଇ ରହିଥାଏ ।

କବିତା ହେଉଛି କବିର ଭାବ ସରୋବରେ ଫୁଟୁଥିବା ପଦ୍ମଫୁଲଟିଏ । ସେ ଫୁଲକୁ ଯେତେଥର ଦେଖିଲେ ତାହା ସେତେଥର ନୂଆ ନୂଆ ଦିଶେ, ଆଖି ଲାଖିଯାଏ । ପ୍ରତି ପାଖୁଡ଼ାରେ ଥରକୁଥର ଅଧିକରୁ ଅଧିକ ଲଳିତଲାବଣ୍ୟ କାହୁଁ ଆସି ମାଖି ହୋଇଯାଏ । ସେ ଫୁଲର ସୁବାସରେ ଦିଗମହକି ଉଠେ, ସେହି ପରିବେଶରେ ସତ୍ୟର ଅଭିଷେକ ହୁଏ । ଅଭିଷେକ ପାଇଁ ମାନସିକ ସ୍ତରରେ କବି ଶୀତଳଜଳ ଧାରାର ସନ୍ଧାନ ପୂର୍ବକ ଗଭୀରତାରୁ ଆହୁରି ଗଭୀରତାକୁ ଖୋଳି ଚାଲିଥାନ୍ତି ।

ପ୍ରକୃତ ପକ୍ଷେ କବିତ୍ୱ ଏକ ରହସ୍ୟମୟ ଶକ୍ତି । ଏହା କେଉଁଠାରୁ ଆସେ, କାହିଁକି ଆସେ, କିପରି ଆସେ ଭାବିଲେ ବିସ୍ମିତ ହେବାକୁ ପଡ଼େ । ସ୍ଥୂଳ ମନରେ ଏ ସବୁ ବୁଝିହୁଏ ନାହିଁ । ଯେତେବେଶି ବୁଝିବାକୁ ଚେଷ୍ଟା କଲେ ତାହା ସେତେବେଶି ଅବୁଝା ରହେ ।



# ସ୍ରଷ୍ଟା ସିଏ : ଦ୍ୱିତୀୟ ଈଶ୍ୱର

*" ମଣିଷ ମନର କଥା ଜାଣିବାକୁ ହେଲେ ଏବଂ ମଣିଷ ବୁଝିବା ଭଳି ଭାଷାରେ ତାକୁ ବ୍ୟକ୍ତ କରିବାକୁ ହେଲେ କବି ଓ ଲେଖକକୁ ଜଣେ କେବଳ ସାଧାରଣ ମଣିଷ ପରି ବଞ୍ଚିବାକୁ ହେବ ନାହିଁ, ତା'ଠାରୁ ଅଧିକ ଗଭୀର, ନିବିଡ଼ ଅର୍ଥମୟ ଜୀବନଯାପନ କରିବାକୁ ପଡ଼ିବ । "*

*(କବି ଓ କବିତା- ମାୟାଧର ମାନସିଂହ)*

ସ୍ରଷ୍ଟା କିଏ ? ଏ ପ୍ରଶ୍ନର ଉତ୍ତର ପ୍ରଥମେ ବିଚାର କରାଯାଉ । ଯିଏ ଯନ୍ତ୍ରପରି ସୃଷ୍ଟିକରନ୍ତି ସେ ସ୍ରଷ୍ଟା ନୁହେଁ ବରଂ ଯିଏ ସୃଷ୍ଟି ସହ ଚିନ୍ତା ଓ ଚେତନାରେ ଏକାକାର ହୋଇପାରନ୍ତି ସେ ହିଁ ସ୍ରଷ୍ଟା । ଯିଏ ନିଜ ଭିତରେ ନିଜକୁ ହଜାଇଦେଇ ପୁଣି ଖୋଜି ଚାଲନ୍ତି ସେ ହିଁ ସ୍ରଷ୍ଟା । ସୃଷ୍ଟିରେ ନିଜକୁ ତଥା ନିଜର ସମସ୍ତ ସ୍ପନ୍ଦନକୁ ଅନୁଧ୍ୟାନ କରିବା ହିଁ ଯଥାର୍ଥରେ ସ୍ରଷ୍ଟାପଣ । ଈଶ୍ୱର ହିଁ ସ୍ରଷ୍ଟା, କାରଣ ସେ ତାଙ୍କ ସୃଷ୍ଟିସହ ଚେତନାରେ ଏକାକାର । ଅନ୍ୟ ଅର୍ଥରେ ସୃଷ୍ଟି ଭିତରେ ସେ ହିଁ ରହିଛନ୍ତି ଏବଂ ତାଙ୍କର ଭିତରେ ସମସ୍ତ ସୃଷ୍ଟି ରହିଛି । ସେ ଯାନ୍ତ୍ରିକ ଧାରାରେ ସବୁକିଛି ଗଢ଼ିନାହାନ୍ତି । ସେ ନିଜେ ସ୍ରଷ୍ଟା, ନିଜେ ସୃଷ୍ଟିର ଉପାଦାନ ଓ ନିଜେ ହିଁ ସୃଷ୍ଟି ରୂପରେ ବିରାଜମାନ । ଶ୍ରୀଅରବିନ୍ଦଙ୍କ କଥାରେ-

*"He is the maker and the world he made.*
*He is the vision and he is the seer.*
*He is himself is the actor and the act.*
*He is himself is the knower and known.*
*He is himself the dreamer and the dream."*

*-Savitri, P- 61*

ସାହିତ୍ୟର ଶିଳ୍ପୀଙ୍କୁ ସ୍ରଷ୍ଟା କୁହାଯାଏ, ଦ୍ୱିତୀୟ ଈଶ୍ୱର ପରିଚିତିରେ ଗ୍ରହଣ କରାଯାଏ । ସାହିତ୍ୟ କହିଲେ ବହୁ କଥାକୁ ବୁଝାଏ । ନୃତ୍ୟ, ସଂଗୀତ, ଅଭିନୟ, ସ୍ଥାପତ୍ୟ, ଭାସ୍କର୍ଯ୍ୟ, ଚିତ୍ରକଳା ସହିତ ଲିପିଶିଳ୍ପ ମଧ୍ୟ ସାହିତ୍ୟର ଅନ୍ତର୍ଭୁକ୍ତ । ତେବେ ସାହିତ୍ୟ କହିଲେ ଆମେ ସାଧାରଣତଃ ଲିପିଶିଳ୍ପକୁ ବୁଝୁ ଏବଂ ଲିପିଶିଳ୍ପୀଙ୍କୁ କବି ବୋଲି କହୁ । କବି କହିଲେ କେବଳ

କାବ୍ୟକବିତାର ସ୍ରଷ୍ଟାଙ୍କୁ ବୁଝାଏ ନାହିଁ, ସମଗ୍ର ଲିପିଶିଳ୍ପୀ ସମାଜ କବି ପଦବାଚ୍ୟ । ଯାହାଙ୍କୁ ଦ୍ୱିତୀୟ ବ୍ରହ୍ମା ବୋଲି କୁହାଯାଏ ।

ସାହିତ୍ୟର ସ୍ରଷ୍ଟା ଯେତେବେଳେ ନିଜର ଚେତନା ସହ ଏକାକାର ହୁଅନ୍ତି ସେତେବେଳେ ସେ ସୃଷ୍ଟି କରିପାରନ୍ତି । ଅତଏବ ଆତ୍ମସଚେତନତା ହିଁ ସ୍ରଷ୍ଟାପଣର ମୂଳକଥା । ସଚେତନତା ଥିଲେ ସ୍ରଷ୍ଟାର ଚିତ୍ତ ଏକ ଉଚ୍ଚତମ ଉଚ୍ଚତାକୁ ଯାଇପାରେ, ଯେଉଁଭୂମିରେ ସେ ନିଜେ ହୁଏ ନିଜ ସୃଷ୍ଟି ପାଇଁ ଅମଉଳା ଉପାଦାନ ଏବଂ ଗଠନଗତ କଳାକୌଶଳ ।

ପ୍ରଥମ ଈଶ୍ୱର ବା ବିଶ୍ୱସ୍ରଷ୍ଟାଙ୍କ ପାଇଁ ସାରାସୃଷ୍ଟି ମହତ୍ତ୍ୱପୂର୍ଣ୍ଣ, କାରଣ ସବୁ ଭିତରେ ସେ ହିଁ ଆତ୍ମପ୍ରକଟିତ । ପଦ୍ମଫୁଲ ଠାରୁ ଘାସଫୁଲ ପର୍ଯ୍ୟନ୍ତ ସବୁ ଭିତରେ ତାଙ୍କ ଆନନ୍ଦର ଶୁଭ ଅଭିଷେକ ଲକ୍ଷ୍ୟଣୀୟ । ତାଙ୍କ ସୃଷ୍ଟିରେ କିଛି ଅପାଂକ୍ତେୟ ନୁହେଁ, ଅବହେଳାର ସାମଗ୍ରୀ ନୁହେଁ । ସବୁ ଭିତରେ ସେ ରହି ହସନ୍ତି, କାନ୍ଦନ୍ତି, ଅନୁଭବ କରନ୍ତି ଏବଂ ଉପଭୋଗ କରନ୍ତି । ସେ ହୁଅନ୍ତି ରଙ୍ଗ, ରଙ୍ଗମଞ୍ଚ, ଅଭିନେତା, ଅଭିନୟ, ଦର୍ଶକ ଓ ଦର୍ଶନ । ହଜିବା ଖୋଜିବା ସେଠି ଏକାକାର । ନିଜକୁ ହଜାଇ ନିଜକୁ ସେ ଖୋଜୁଥାନ୍ତି । ତାଙ୍କପାଇଁ ହସଲୁହ ଏକାକଥା । ସେ ନିଜେ ହସ ହୋଇ ଅଧରରେ ଫୁଲପରି ଫୁଟନ୍ତି ଏବଂ ଲୁହହୋଇ ଆଖିରୁ ଝରିଯାନ୍ତି । ଦ୍ୱିତୀୟ ଈଶ୍ୱର ଅର୍ଥାତ୍ ସାହିତ୍ୟ ସ୍ରଷ୍ଟା ପାଇଁ ଏହା ମଧ୍ୟ ସତ୍ୟ । ସାହିତ୍ୟ ସ୍ରଷ୍ଟା ପାଇଁ ଅପାଂକ୍ତେୟ ଚରିତ୍ର ବା ପରିବେଶ ବୋଲି କିଛି ନଥାଏ । ଜମିଦାର ଭିତରେ ସେ ଗୁରୁଗମ୍ଭୀର ଚାହାଣି ହେଲାବେଳେ, ପ୍ରଜାଭିତରେ ଶାନ୍ତ ନିରୀହ ଚାହାଣି ହୋଇଥାଆନ୍ତି । ରାଜା ଓ ରଙ୍କ ତାଙ୍କ ପାଖରେ ଉଭୟ ସମାନ, ଗୋଟିଏ ସୂକ୍ଷ୍ମ ଅନୁଭବର ଦୁଇଟି ଭିନ୍ନ ରୂପ ମାତ୍ର । ଜଙ୍ଗଲରେ ନିଜକୁ ବୁଲାଇ ସେ ହୁଅନ୍ତି ଜଙ୍ଗଲୀମଣିଷ, ପୁଣି ସହରରେ ସହରୀ ଭଦ୍ରଲୋକ, ଗାଁ ଦାଣ୍ଡରେ ଅଧାପାଠୁଆ ଟାଉଟର ପୁଣି ସବୁଜ କେଦାରରେ ନିରକ୍ଷର କୃଷକ । ସମସ୍ତଙ୍କ ପାଇଁ ତାଙ୍କର ଶ୍ରଦ୍ଧା ଅପରିସୀମ । ସମସ୍ତଙ୍କ ଭିତରେ ସେ ଥାଆନ୍ତି ଏବଂ ତାଙ୍କ ଭିତରେ ସମସ୍ତେ ଥାଆନ୍ତି । ସେ ରାମ ହୋଇ ଯୁଦ୍ଧରେ ଜୟୀ ହୁଅନ୍ତି ଓ ରାବଣ ହୋଇ ପରାଜୟ ସ୍ୱୀକାର କରନ୍ତି । ବିଭୀଷଣ ହୋଇ ଶରଣ ପଶନ୍ତି ରାମଙ୍କ ପାଖରେ ଓ ଲକ୍ଷ୍ମଣ ହୋଇ ସୂର୍ପଣଖାର ନାକକାନ କାଟି ଦିଅନ୍ତି । ନିଜେ ଶ୍ରୀକୃଷ୍ଣ ହୋଇ ଗୀତାତତ୍ତ୍ୱ ବୁଝାନ୍ତି ଓ ଅର୍ଜୁନ ହୋଇ ସେହି ତତ୍ତ୍ୱକୁ ବୁଝନ୍ତି । ଅତଏବ କବିତ୍ୱ ବା ସ୍ରଷ୍ଟାପଣ ଏକ ଐଶୀଶକ୍ତି ଏବଂ ସ୍ରଷ୍ଟା ସିଏ ଦ୍ୱିତୀୟ ଈଶ୍ୱର ।

ବିଶ୍ୱସ୍ରଷ୍ଟାଙ୍କ ସୃଷ୍ଟିରେ ଜଡ଼ପରି ଆମକୁ ଯାହାସବୁ ଦିଶେ, ପ୍ରକୃତରେ ସେ ସବୁ ସଂପୂର୍ଣ୍ଣ ଜଡ଼ ନୁହଁନ୍ତି । ସେସବୁ ଭିତରେ ଅଳ୍ପବହୁତ ଚିତ୍ ଶକ୍ତି ନିହିତ ରହିଛି । ଗଛଲତା, ପଶୁପକ୍ଷୀଙ୍କର ଅନୁଭବ ଶକ୍ତି ଅଛି, ଚେତନା ଅଛି । ଏପରିକି ମାଟି, ଗୋଡ଼ି, ପଥରର ଅତି ଅଳ୍ପ ହେଲେହେଁ ଅନୁଭବ ଶକ୍ତି ଓ ଚେତନା ଅଛି । କବି ବା ସ୍ରଷ୍ଟା ଦୃଷ୍ଟିରେ ସମସ୍ତେ ଚେତନଶୀଳ, କେହି ଅଚେତନ ବା ଜଡ ନୁହନ୍ତି । ସାଧାରଣ ବ୍ୟକ୍ତିକୁ ଯାହା ଜଡ଼ ପରି ପ୍ରତୀୟମାନ ହୁଏ, କବି ଦୃଷ୍ଟିରେ ତାହା ଚେତନଶୀଳ ହୋଇଥାଏ । ତଥାକଥିତ ଜଡ଼ବସ୍ତୁ ଅନୁଭବ କରିପାରନ୍ତି ପରିବେଶର ମାର୍ମିକ ସ୍ପନ୍ଦନକୁ । ସେମାନେ ବୁଝି ପାରନ୍ତି ମଣିଷର ସ୍ପର୍ଶଜନିତ ପରିଭାଷାକୁ । ମଣିଷର ରୁକ୍ଷ ବ୍ୟବହାରରେ ମର୍ମାହତ ଓ ମଧୁର ବ୍ୟବହାରରେ ଆନନ୍ଦିତ ହୋଇଥାନ୍ତି । ସେମାନଙ୍କ ଭିତରେ ଗ୍ରହଣଶୀଳତା ଥାଏ । ଏହା କବିଙ୍କର ତୃତୀୟ ନେତ୍ରକୁ ଦିଶେ । ଏହି ଚିରନ୍ତନ ସତ୍ୟକୁ କବି ଉପଲବ୍ଧି କରୁଥିବାରୁ ତାଙ୍କ ବିଚାରରେ ଗଛ ଦେଖିପାରେ ଶକୁନ୍ତଳାଙ୍କର ବିଦାୟକାଳୀନ ମୁଖମାଳିନ୍ୟକୁ, ଶକୁନ୍ତଳାଙ୍କର କରସ୍ପର୍ଶରେ ଫୁଲଝଡ଼ାଇ ଦେଇ ନିଜର ସମବ୍ୟଥାକୁ ପ୍ରକଟ କରିପାରେ । କେହି ନ କହିଲେ ମଧ୍ୟ ହରିଣୀ ବୁଝିପାରେ ପରିବେଶର ବିଷର୍ଣ୍ଣତାକୁ, ଶକୁନ୍ତଳାଙ୍କର ପଣତକାନି ଟାଣି ଟାଣି କେତେ କ'ଣ କହୁଥାଏ ନିଃଶବ୍ଦରେ । ଶକୁନ୍ତଳା ବୁଝୁଥାନ୍ତି ହରିଣୀର ନୀରବ ଭାଷାକୁ । ତମସା ଅପେକ୍ଷା କରିଥାଏ ଏବଂ ମୀନନେତ୍ରରେ ଚାହୁଁଥାଏ ସୀତାଙ୍କର ଆଗମନକୁ । ସୀତାଙ୍କୁ ଦେଖି ଉଲ୍ଲସିତ ହୁଏ ଏବଂ ନିଜ ଜଳଧାରାରେ ସୀତାଙ୍କ ସ୍ପର୍ଶ ପାଇବାକୁ ଭାସିଆସୁଥିବା ଝରାଫୁଲକୁ ପାଦରେ ଆଡେଇ ନଦେବା ପାଇଁ ଅନୁରୋଧ ଜଣାଏ ।

ପ୍ରଥମ ଈଶ୍ୱର ବିସ୍ତୃତ କଳ୍ପନାର ଅଧିକାରୀ । ତାଙ୍କ କଳ୍ପନାପ୍ରସୂତ ଏ ସୃଷ୍ଟି ସତରେ କେଡେ ମନୋଜ୍ଞ ଓ ମଧୁମୟ । ଆଗ କଳ୍ପନାରେ ପରେ ବାସ୍ତବତାରେ ରଙ୍ଗକୁରଙ୍ଗ ମିଶାଇ ସେ ଗଢ଼ିଛନ୍ତି ବନଉପବନର ଶୋଭନ-ସୁଷମା, କେଦାର- ପ୍ରାନ୍ତରର ପ୍ରଶାନ୍ତ ସବୁଜିମା । ଇନ୍ଦ୍ରଧନୁର ରଙ୍ଗସଜ୍ଜା ତାଙ୍କ କଳ୍ପନାର ଅନୁପମ ଅଭିବ୍ୟକ୍ତି । ପତ୍ରକୁଞ୍ଜ ଭିତରେ ବିଭିନ୍ନ ରଙ୍ଗର ଫୁଲଶୋଭା ତାଙ୍କରି କଳାକୃତି । କେବଳ ରଙ୍ଗରେ ନୁହେଁ ଶବ୍ଦରେ ମଧ୍ୟ ତାଙ୍କ କଳ୍ପନା ଶକ୍ତିର ପଟାନ୍ତର ନାହିଁ । ପକ୍ଷୀମାନଙ୍କର କଳକୂଜନ ତାଙ୍କ କଳ୍ପନାର ସ୍ୱରଶୋଭନ ଅଭିବ୍ୟକ୍ତି । ଭିନ୍ନଭିନ୍ନ ସୁଗନ୍ଧର ପରିକଳ୍ପନା ହିଁ ତାଙ୍କର କୃତିତ୍ୱ । ପହିଲି ବର୍ଷାରେ ଭିଜାମାଟିର ଗନ୍ଧ ଠାରୁ ବଣମଲ୍ଲୀର ବାସ୍ନା ପର୍ଯ୍ୟନ୍ତ ସବୁଭିତରେ ତାଙ୍କର କଳ୍ପନା ଛନ୍ଦାୟିତ । ପ୍ରଥମେ କଳ୍ପନା ପରେ ରୂପାୟନ, ଏହା ଈଶ୍ୱରଙ୍କ ପରି ସ୍ରଷ୍ଟାଙ୍କ

ପାଖରେ ମଧ ସତ୍ୟ । ସ୍ରଷ୍ଟା ଆଗ କଳ୍ପନା କରନ୍ତି କ'ଣ ଉପସ୍ଥାପନ କରିବେ, ତାପରେ ସେହି କଳ୍ପନା ରୂପପାଏ ଲେଖନୀରେ, ତୂଳୀରେ ଅବା ନିହଣ ମୁନରେ । ଲେଖନୀଚାଳନା ପୂର୍ବରୁ କେଉଁ ଘଟଣା ପରେ କେଉଁ ଘଟଣା ରଖିବେ ତାହା ସ୍ରଷ୍ଟା କଳ୍ପନା କରିଥାନ୍ତି । ଈଶ୍ୱରଙ୍କ କଳ୍ପନା ଯେପରି ଅତ୍ୟନ୍ତ ହୃଦୟଗ୍ରାହୀ, ସାହିତ୍ୟସ୍ରଷ୍ଟାଙ୍କର କଳ୍ପନା ମଧ ସେପରି ଅତ୍ୟନ୍ତ ମର୍ମସ୍ପର୍ଶୀ ।

ଈଶ୍ୱର ସର୍ବଦା ମଙ୍ଗଳମୟ । ତାଙ୍କ ସୃଷ୍ଟିର ଅମଙ୍ଗଳ ସେ ଚାହାନ୍ତି ନାହିଁ । ଅମଙ୍ଗଳ ପରି ଯାହା ଜଣାପଡ଼େ ତାହା ପଛରେ ଐକାନ୍ତିକ ମଙ୍ଗଳ ନିହିତ ଥାଏ । ହଠାତ୍ ନୁହେଁ, ସମୟକ୍ରମେ ତାହା ଜାଣିହୁଏ । ମନେପଡ଼େ ଏହି ପରିପ୍ରେକ୍ଷୀରେ ଛୋଟ କାହାଣୀଟିଏ । କାହାଣୀଟି ଏହିପରି - 'ରାଜା ଓ ମନ୍ତ୍ରୀ ଦୁହେଁ ଜଙ୍ଗଲରେ ବୁଲୁବୁଲୁ ରାଜା ଝୁଣ୍ଟିପଡ଼ିଲେ ଓ ତାଙ୍କ ପାଦ ଆଙ୍ଗୁଳି ଟିକିଏ ଖଣ୍ଡିଆ ହୋଇଗଲା । ଏଥିରେ ମନ୍ତ୍ରୀ ବ୍ୟସ୍ତ ହେଲେ ନାହିଁ; ବରଂ ଏହା ଈଶ୍ୱରଙ୍କ ଇଚ୍ଛା ବୋଲି କହିଲେ । ରାଜା ଏହା ଶୁଣି କ୍ରୋଧ ଜର୍ଜ୍ଜରିତ ହୋଇଉଠିଲେ ଏବଂ ମନ୍ତ୍ରୀଙ୍କ ସଙ୍ଗ ବର୍ଜନ କଲେ । କିଛିବାଟ ଗଲାପରେ ଦେବୀଙ୍କ ନିକଟରେ ବଳିଦେବା ନିମନ୍ତେ କେତେକ ତାନ୍ତ୍ରୀକ ରାଜାଙ୍କୁ ଧରିନେଲେ ଏବଂ ରାଜାଙ୍କ ପାଦର ଅଙ୍ଗୁଳି ଖଣ୍ଡିଆ ହୋଇଥିବାର ଦେଖି ତାଙ୍କୁ ବଳି ପାଇଁ ଅଯୋଗ୍ୟ ବୋଲି ବିବେଚନା କରି ବିରକ୍ତିରେ ମୁକ୍ତି ଦେଲେ । ରାଜା ସେତେବେଳେ ମନ୍ତ୍ରୀଙ୍କ କଥାର ଅର୍ଥ ଠିକ ବୁଝିପାରିଲେ ଏବଂ ଈଶ୍ୱରଙ୍କ ପ୍ରତି କୃତଜ୍ଞ ହେଲେ ।' ବାସ୍ତବରେ ଈଶ୍ୱର ସର୍ବଦା କରୁଣାମୟ । ସେ କେବେହେଲେ କାହାର ଅମଙ୍ଗଳ କରନ୍ତି ନାହିଁ । ମଣିଷ ନିଜ କର୍ମଫଳ ଭୋଗକରେ ଓ ବିରୋଧୀଶକ୍ତି ଦ୍ୱାରା ପରିଚାଳିତ ହୋଇ ବିପଥଗାମୀ ହୁଏ । ସାହିତ୍ୟସ୍ରଷ୍ଟାର ଚିତ୍ତବୃତ୍ତି ବିଶ୍ୱକଲ୍ୟାଣକାମୀ ହୋଇଥାଏ । ସେ 'ସର୍ବେ ଭବନ୍ତୁ ସୁଖୀନଃ' ନୀତିରେ ବିଶ୍ୱାସ କରନ୍ତି । ସମସ୍ତେ ମିଳିମିଶି ଏକମନରେ ରହିବାକୁ ସେ ଆହ୍ୱାନ ଦିଅନ୍ତି । ଆର୍ଷ ବାଣୀକୁ ପୁନଃପୁନଃ ଆବୃତ୍ତି କରି ସେ କହନ୍ତି-

*'ସଂ ଗଚ୍ଛଧ୍ୱଂ ସଂ ବଦଧ୍ୱଂ*
*ସଂ ବୋ ମନାଂସି ଜାନତାମ୍*
*ଦେବାଭାଗଂ ଯଥା ପୂର୍ବେ*
*ସଂ ଜାନାନା ଉପାସତେ ॥'*

*(ଋଗ୍‌ବେଦ -ଦଶମମଣ୍ଡଳ)*

ଅର୍ଥାତ୍ *"ହେ ମନୁଷ୍ୟଗଣ ! ଏକାଠି ମିଳିମିଶି ଚାଲ, ମିଳିମିଶି ପ୍ରୀତିପୂର୍ବକ ବାର୍ତ୍ତାଳାପ କର, ତୁମମାନଙ୍କର ଚିତ୍ତ ସମାନ ରୂପକ ଜ୍ଞାନ ପ୍ରାପ୍ତ ହେଉ । ଯେଉଁପରି ପୂର୍ବବର୍ତ୍ତୀ ବିଦ୍ୱାନଗଣ ସେବନୀୟ ପ୍ରଭୁଙ୍କୁ ଜ୍ଞାନ ସଂପାଦନ କରି ଉତ୍ତମ ରୂପେ ଉପାସନା କରୁଥିଲେ, ତୁମେମାନେ ସେହିପରି କର ।"*

ଈଶ୍ୱର ଯେପରି ସଂହତିପୂର୍ଣ୍ଣ ସହାବସ୍ଥାନକୁ ଭଲ ପାଆନ୍ତି ସାହିତ୍ୟସ୍ରଷ୍ଟା ସେପରି ସଂହତିପୂର୍ଣ୍ଣ ସହାବସ୍ଥାନକୁ ଭଲ ପାଆନ୍ତି । ଦୁଷ୍କୃତଙ୍କର ବିନାଶ ଓ ସାଧୁସନ୍ଥଙ୍କ ପାଳନ ଈଶ୍ୱର କରିଥାନ୍ତି । ସାହିତ୍ୟସ୍ରଷ୍ଟା ସେହିପରି ତାଙ୍କ ସୃଷ୍ଟିସମ୍ଭାରରେ ଦୁଷ୍ଟ, ଖଳକୁ କର୍ମଫଳ ଭୋଗିବାକୁ ବାଧ କରନ୍ତି ଏବଂ ସରଳ, ନିଷ୍ପାପ ସାଧୁପ୍ରକୃତିର ଚ଼ରିତ୍ରକୁ ଉଚ୍ଚଆସନ ଦେଇଥାନ୍ତି ।

ବିଶ୍ୱସ୍ରଷ୍ଟା ମଣିଷ ମଣିଷ ଭିତରେ ବାଡ଼ ପକାନ୍ତି ନାହିଁ, ଭେଦ ସୃଷ୍ଟି କରନ୍ତି ନାହିଁ । ସାଧାରଣ ମଣିଷ ନିଜ ନିଜ ଭିତରେ ଭେଦ ସୃଷ୍ଟି କରେ, ନିଜକୁ ନିଜେ ଛାଞ୍ଚରେ ପକାଏ, ସୀମିତ କରେ ଓ ସଙ୍କୁଚିତ କରେ । ସାହିତ୍ୟର ସ୍ରଷ୍ଟା କେବେହେଲେ ନିଜକୁ ସଂକୀର୍ଣ୍ଣତା ଭିତରେ ଆବଦ୍ଧ କରିବାକୁ ଚାହାନ୍ତି ନାହିଁ, ବରଂ 'ବିଶ୍ୱନୀଡ଼ମ୍', 'ବିଶ୍ୱ ପରିବାର' ଇତ୍ୟାଦି ଶବ୍ଦର ପ୍ରକୃତ ଅର୍ଥ ବୁଝିବାକୁ ଓ ବୁଝାଇବାକୁ ପ୍ରଚେଷ୍ଟା କରିଥାନ୍ତି । ସ୍ରଷ୍ଟା ଯେପରି ଚାହାନ୍ତି ଯେ ବ୍ୟକ୍ତି ଅନ୍ନମୟ ଜୀବନକୁ ଅତିକ୍ରମ କରି ଆନନ୍ଦମୟ ଜୀବନରେ ପଦାର୍ପଣ କରୁ, ସାହିତ୍ୟର ସ୍ରଷ୍ଟା ମଧ୍ୟ ସେପରି ଚାହିଁଥାନ୍ତି । ସେ ଅନ୍ନମୟ ସତ୍ତାର କଥା କହିଲେ ହେଁ ଅତିକ୍ରମର କଥା ପାଇଁ ସୁଯୋଗଟିଏ ତା' ଭିତରେ ସଜାଇ ରଖିଥାନ୍ତି ।

ଈଶ୍ୱର ସ୍ୱୟଂ ସତ୍ୟ, ସାହିତ୍ୟସ୍ରଷ୍ଟା ସତ୍ୟର ଉପାସକ । ଏଇ ସ୍ରଷ୍ଟା ପ୍ରଥମ ଈଶ୍ୱରଙ୍କର ପ୍ରତିସ୍ପର୍ଦ୍ଧୀ ଯୋଦ୍ଧା ନୁହନ୍ତି, ବରଂ ଭକ୍ତ ଭଗବାନ ଏକାତ୍ମ ହେଲାପରି ସେ ହୋଇଥାଆନ୍ତି ଦ୍ୱିତୀୟ ଈଶ୍ୱର । ଅତଏବ କୁହାଯାଏ ସ୍ରଷ୍ଟା ସିଏ ଦ୍ୱିତୀୟ ଈଶ୍ୱର ।



# ପୁରୁଷୋତ୍ତମ ତତ୍ତ୍ୱ ଓ ଶ୍ରୀଜଗନ୍ନାଥ

*"ଯସ୍ମାତ୍ କ୍ଷରମତୀତୋଽହମକ୍ଷରାଦପି ଚୋତ୍ତମଃ ।*
*ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ ॥୧୮॥*
*ଯୋ ମାମେବମସଂମୂଢୋ ଜାନାତି ପୁରୁଷୋତ୍ତମମ୍ ।*
*ସ ସର୍ବବିଦ୍ ଭଜତି ମାଂ ସର୍ବଭାବେନ ଭାରତ ॥୧୯॥"*

*(ପୁରୁଷୋତ୍ତମ ଯୋଗ : ଶ୍ରୀମଦ୍‌ଭଗବଦ୍ ଗୀତା )*

ଅର୍ଥାତ୍ ମୁଁ କ୍ଷର (ଅର୍ଥାତ୍ ବିନାଶୀ ଜଡ଼ବର୍ଗ)ର ଅତିକ୍ରାନ୍ତ ଏବଂ ଅକ୍ଷର (ଅବିନାଶୀ ଚୈତନ୍ୟ) ଠାରୁ ଉତ୍କୃଷ୍ଟ । ଏହି ହେତୁ ଲୋକ ସମୂହରେ ଏବଂ ବେଦରେ ମୁଁ ପୁରୁଷୋତ୍ତମ ବୋଲି ବିଖ୍ୟାତ । ହେ ଭାରତ ! ଯେଉଁ ସାଧକମାନେ ଏହି ରୂପେ ମୋହାଦି ଶୂନ୍ୟ ହୋଇ ମୋତେ ପୁରୁଷୋତ୍ତମ ରୂପେ (ମୋ ଠାରୁ ଉତ୍କୃଷ୍ଟ ପୁରୁଷ ଆଉ କେହି ନାହିଁ) ଅବଗତ ହୁଅନ୍ତି, ସେହି ସର୍ବଜ୍ଞ ସାଧକ ମୋତେ ସବୁ ପ୍ରକାରେ ଭଜନ କରନ୍ତି ।

ପୁରୁଷୋତ୍ତମ ତତ୍ତ୍ୱ ହେଉଛି ସତ୍-ଚିତ୍-ଆନନ୍ଦର ତତ୍ତ୍ୱ, ଯାହାକୁ ପ୍ରାପ୍ତ କରିବା ନିମନ୍ତେ ମାନବଜାତି ସତତ ପ୍ରୟାସୀ । ମାର୍ଗର ଭିନ୍ନତାରେ ତତ୍ତ୍ୱ ଭିନ୍ନ ହୁଏ ନାହିଁ । ତତ୍ତ୍ୱ ହିଁ ସତ୍ୟ ଏବଂ ସତ୍ୟ ହିଁ ତତ୍ତ୍ୱ । ଶ୍ରୀଜଗନ୍ନାଥ ହେଉଛନ୍ତି ପୁରୁଷୋତ୍ତମ ତତ୍ତ୍ୱର ପ୍ରତୀକ । ପୁରୁଷୋତ୍ତମ ପରମବ୍ରହ୍ମଙ୍କର କୌଣସି ରୂପ ନାହିଁ । ସେ ଅବତାର ନୁହନ୍ତି, ଅବତାରୀ । ଅବତାରମାନେ ତାଙ୍କୁ ଉପାସନା କରନ୍ତି । ଶ୍ରୀଜଗନ୍ନାଥଙ୍କର କୌଣସି ରୂପ ନାହିଁ । ସେ କେବଳ ପ୍ରତୀକ । ତାଙ୍କୁ ଦେବତାମାନେ ମଧ୍ୟ ଉପାସନା କରିଥାନ୍ତି । ଶ୍ରୀଜଗନ୍ନାଥଙ୍କର ମହାପ୍ରସାଦକୁ ସଂପ୍ରଦାୟ ନିର୍ବିଶେଷରେ ସମସ୍ତେ ଗ୍ରହଣ କରିଥାନ୍ତି । ସଚ୍ଚିଦାନନ୍ଦଙ୍କଠାରେ ଜାତି, ଧର୍ମ, ବର୍ଣ୍ଣର ଭେଦ ନଥିବାରୁ ସେ କୌଣସି ସୀମାରେ ଆବଦ୍ଧ ନୁହନ୍ତି । ପ୍ରତ୍ୟେକ ସୀମାକୁ ଅତିକ୍ରମ କରିଯାଇଥିବା ଅକଳ୍ପନୀୟ ଅସୀମ ସେ । ଶ୍ରୀଜଗନ୍ନାଥଙ୍କ କୃପା ନିକଟରେ ଜାତି, ଧର୍ମ ଓ ବର୍ଣ୍ଣର ଭେଦ ନାହିଁ । ସମସ୍ତ ସାଂପ୍ରଦାୟିକ ସସୀମତ୍ୱକୁ ଅତିକ୍ରମ କରି ଯାଇଥିବାରୁ ସମସ୍ତେ ତାଙ୍କ ମହତ୍ତ୍ୱକୁ ମୁକ୍ତ କଣ୍ଠରେ ସ୍ୱୀକାର କରନ୍ତି ଓ ଆରାଧନା କରିଥାନ୍ତି । କେବଳ ଶ୍ରୀଜଗନ୍ନାଥ ନୁହନ୍ତି, ତାଙ୍କ ଧାମ ମଧ୍ୟ ଅପୂର୍ବ ମହନୀୟତାର ଉଚ୍ଚତମ ସୋପାନରେ ଅଧିଷ୍ଠିତ । ଏଇ ଧାମ ନାମିତ

ହୋଇଛି ଆରାଧଙ୍କ ନାମରେ ଅର୍ଥାତ୍ ପୁରୁଷୋତ୍ତମଙ୍କ ନାମରେ । ଧାମର ନାମ ହୋଇଛି ପୁରୁଷୋତ୍ତମ ଧାମ । ଏପରି ସଂଯୋଜନା ପ୍ରାୟ ଅନ୍ୟତ୍ର ଦେଖାଯାଏ ନାହିଁ । 'କପିଳ-ସଂହିତା'ରେ ଉଲ୍ଲେଖ କରାଯାଇଛି–

*'ସର୍ବେଷାଂ ଚୈବ କ୍ଷେତ୍ରାଣାଂ ରାଜା ଶ୍ରୀପୁରୁଷୋତ୍ତମଃ ।*
*ସର୍ବେଷାଂ ଚୈବ ଦେବାନାଂ ରାଜା ଶ୍ରୀପୁରୁଷୋତ୍ତମଃ ।।'*

(ପଞ୍ଚମ ଅଧ୍ୟାୟ, ୩୮ ଶ୍ଳୋକ)

ବିଭିନ୍ନ ସଂପ୍ରଦାୟ ବ୍ୟତୀତ ତନ୍ତ୍ର ଏବଂ ବୌଦ୍ଧ ତଥା ଅନ୍ୟାନ୍ୟ ମାର୍ଗୀ ସାଧୁସନ୍ଥଗଣ ମଧ୍ୟ ପୁରୁଷୋତ୍ତମ ଧାମ ବା ପୁରୀଧାମକୁ ଅସୀମ ଶ୍ରଦ୍ଧା ଓ ଅଶେଷ ସମ୍ମାନ ନିବେଦନ କରିଥାନ୍ତି । ଶ୍ରୀଜଗନ୍ନାଥ ବେଦ, ବେଦାନ୍ତ ଓ ତନ୍ତ୍ରର ମହାମିଳନ ତତ୍ତ୍ୱ, ସମସ୍ତ ସଂସ୍କୃତିର ସମନ୍ୱିତ ସ୍ୱରୂପ ପରଂବ୍ରହ୍ମ, ସକଳ ସଂପ୍ରଦାୟର ସାରନିର୍ଯ୍ୟାସ ତଥା ପରାପ୍ରକୃତିଯୁକ୍ତ ପୁରୁଷୋତ୍ତମ । ସେହି ପରମ ପ୍ରଭୁ ପରାର୍ଦ୍ଧରେ ବିଜ୍ଞାନ ରୂପେ ଅବସ୍ଥିତ ଏବଂ ଅପରାର୍ଦ୍ଧରେ ଛଦ୍ମ ରୂପରେ ଅନ୍ନମୟ କୋଷ, ପ୍ରାଣମୟ କୋଷ ଓ ମନୋମୟ କୋଷରେ ପ୍ରତିଷ୍ଠିତ ।

ଶ୍ରୀଜଗନ୍ନାଥ ଯେ ପୁରୁଷୋତ୍ତମ ତତ୍ତ୍ୱର ପ୍ରତୀକ ଏହାର ଅନ୍ୟତମ କାରଣ ହେଉଛି, ସେ ସମସ୍ତ ଅବତାର ତଥା ଶକ୍ତିଙ୍କ ମନ୍ତ୍ର ମାଧ୍ୟମରେ ପୂଜିତ ହୁଅନ୍ତି । ମହାପ୍ରସାଦ ନିବେଦିତ ହେଲାବେଳେ ଶ୍ରୀରାମ, ଶ୍ରୀକୃଷ୍ଣ, ଲକ୍ଷ୍ମୀ, ଦୁର୍ଗା, ବିଷ୍ଣୁ, ବିମଳା ସମେତ ବେଢ଼ା ଭିତରସ୍ଥ ଅନ୍ୟାନ୍ୟ ଦେବଦେବୀମାନେ ପ୍ରସାଦ ସେବନ ନିମନ୍ତେ ନିମନ୍ତ୍ରିତ ହୋଇ ଆସନ୍ତି । ଏହାଛଡ଼ା ଜଗନ୍ନାଥଙ୍କ ମନ୍ଦିରରେ ପାଳିତ ଓ ପ୍ରଚଳିତ ବହୁ ପର୍ବପର୍ବାଣିରୁ ଜଣାଯାଏ ଯେ ଜଗନ୍ନାଥ ହେଉଛନ୍ତି ପୁରୁଷୋତ୍ତମଙ୍କର ପ୍ରତୀକ ।

ପୁରୁଷୋତ୍ତମ ତତ୍ତ୍ୱରେ ଜ୍ଞାନ, ଭକ୍ତି ଓ କର୍ମ ଉପରେ ସୀମାହୀନ ଗୁରୁତ୍ୱ ଆରୋପିତ ହୁଏ । ଏ ତିନିଗୋଟି ଉପାଦାନ ଆଦୌ ପରସ୍ପରର ବିରୋଧୀ ନୁହଁନ୍ତି, ବରଂ ପରିପୂରକ । ଏଥିରୁ ଯେକୌଣସି ଗୋଟିଏ ଆସିଲେ ଅନ୍ୟ ଦୁଇଟି ନିଶ୍ଚୟ ଆସିଥାଆନ୍ତି । ଶ୍ରୀଜଗନ୍ନାଥ ଜ୍ଞାନୀ ପାଇଁ ଜ୍ଞାନର ପ୍ରତୀକ, କର୍ମୀ ପାଇଁ କର୍ମର ଈଶ୍ୱର ଏବଂ ଭକ୍ତ ପାଇଁ ପ୍ରୀତିର ଠାକୁର ।

ଶ୍ରୀଜଗନ୍ନାଥଙ୍କୁ ଦାରୁବ୍ରହ୍ମ ବୋଲି କୁହାଯାଏ । ଶ୍ରୀରାମ, ଶ୍ରୀକୃଷ୍ଣ, ନାରାୟଣ, ଶିବ ପ୍ରଭୃତି ଦେବତା ହେଉଛନ୍ତି ବ୍ରହ୍ମଙ୍କର ସଗୁଣ ସ୍ୱରୂପ । ସଗୁଣ ଭଗବାନଙ୍କୁ ବ୍ରହ୍ମ ବୋଲି କୁହାଯାଏ ନାହିଁ । ଶ୍ରୀଜଗନ୍ନାଥ କୌଣସି ସଗୁଣ ରୂପୀ ନୁହଁନ୍ତି । ସେ ହେଉଛନ୍ତି ସାକ୍ଷାତ୍ ସଚ୍ଚିଦାନନ୍ଦ ପୁରୁଷୋତ୍ତମଙ୍କର ବିଗ୍ରହ । ତେଣୁ ତାଙ୍କୁ ଦାରୁବ୍ରହ୍ମ ବୋଲି କୁହାଯାଏ । ମନ ମାଧ୍ୟମରେ ବ୍ରହ୍ମଙ୍କୁ ବିଚାର କରାଯାଇପାରେ ନାହିଁ । ସେ ସାକାର ଓ ନିରାକାର ଉଭୟର ଉର୍ଦ୍ଧ୍ୱରେ । ସେ ସ୍ୱତନ୍ତ୍ର ସ୍ୱରୂପରେ ପୁରୁଷୋତ୍ତମ କ୍ଷେତ୍ର ବା ପୁରୀ କ୍ଷେତ୍ରରେ ବିରାଜିତ । ଶିବ ପୁରାଣରେ ଉଲ୍ଲେଖ ଅଛି –

*'ପୁରୁଷୋତ୍ତମାତ୍ ପରଂ କ୍ଷେତ୍ରଂ ନାସ୍ତ୍ୟନ୍ୟଦ୍ ଭବମୋଚନମ୍ ।*
*ଯତ୍ର ସାକ୍ଷାତ୍ ପରଂବ୍ରହ୍ମ ଦାରୁବ୍ୟାଜଶରୀରଭୃତ୍ ॥'*

ଅର୍ଥାତ୍ ''ମୁକ୍ତିଲାଭ କରିବା ସକାଶେ ପୁରୁଷୋତ୍ତମ କ୍ଷେତ୍ର ବ୍ୟତୀତ ଅନ୍ୟକ୍ଷେତ୍ର ସଂସାରରେ ନାହିଁ । ଏହି କ୍ଷେତ୍ରରେ ସାକ୍ଷାତ୍ ପରମବ୍ରହ୍ମ ଦାରୁବ୍ରହ୍ମ ରୂପେ ଶରୀର ଧାରଣ କରିଛନ୍ତି ।'' ଉକ୍ତ ଶ୍ଳୋକରେ ପ୍ରଥମ ପାଦରେ ସ୍ପଷ୍ଟ ଭାବରେ ପୁରୀକ୍ଷେତ୍ରକୁ ପୁରୁଷୋତ୍ତମ ଧାମ ଏବଂ ଦ୍ୱିତୀୟ ପାଦରେ ସାକ୍ଷାତ ପରମବ୍ରହ୍ମ ଦାରୁବ୍ରହ୍ମ ରୂପେ ଶରୀର ଧାରଣ କରିଛନ୍ତି ବୋଲି କୁହାଯାଇଛି ।

ପୁରୁଷୋତ୍ତମ ହିଁ ସ୍ୱୟଂ ବ୍ରହ୍ମ । ସେ ପୁରୁଷ ଓ ସେ ହିଁ ପ୍ରକୃତି । ଦୁଇଟି ତତ୍ତ୍ୱର ସମନ୍ୱୟ ଏକାଧାରରେ ତାଙ୍କଠାରେ ସମ୍ଭବ । ସୃଷ୍ଟି, ସ୍ଥିତି ଓ ପ୍ରଳୟ ଯେତେବେଳେ ସେ କରୁନାହାନ୍ତି ଅର୍ଥାତ୍ ସମାହିତ ସତ୍ତା ଭାବରେ ରହିଛନ୍ତି, ସେତେବେଳେ ତାଙ୍କୁ ପୁରୁଷ କୁହାଯାଏ । ଯେତେବେଳେ ଏହି ସବୁ କ୍ରିୟା ସଂପାଦନ କରୁଛନ୍ତି, ସେତେବେଳେ ସେ ପ୍ରକୃତି ପଦବାଚ୍ୟ । ଶ୍ରୀଜଗନ୍ନାଥଙ୍କଠାରେ ଏକାଧାରରେ ପୁରୁଷ ଓ ପ୍ରକୃତି ସମନ୍ୱିତ ହୋଇ ରହିଥିବାରୁ ସେ ହେଉଛନ୍ତି ପୁରୁଷୋତ୍ତମ ତତ୍ତ୍ୱର ପ୍ରତୀକ । ସେ ରାଧା ଓ କୃଷ୍ଣଙ୍କର ସମନ୍ୱିତ ଚେତନାର ପ୍ରତୀକ । ସେ ଏକାଧାରରେ ଭୈରବ ଓ ଦକ୍ଷିଣକାଳିକା ।

ମହିୟରଠାରୁ ପ୍ରାପ୍ତ ସାରଦା ଦେବୀ ମନ୍ଦିର ଶିଳାଲେଖ (ଦଶମ ଶତାବ୍ଦୀର ମଧ୍ୟଭାଗ) ରେ ପୁରୁଷୋତ୍ତମ ନାମର ଉଲ୍ଲେଖ ରହିଛି । ପୁରୁଷୋତ୍ତମ ଶବ୍ଦର ପ୍ରୟୋଗ କ୍ଷେତ୍ରରେ ଏହା ପ୍ରାଚୀନତମ ଶିଳାଲେଖ ବୋଲି ସ୍ୱୀକୃତ ହୋଇଛି ।

ଏଥିରେ ଉଲ୍ଲେଖ କରାଯାଇଛି ଯେ-

*'ସମୁଦ୍ର ମଜ୍ଜନାତ୍ ନୂନମ୍ ଓଡ୍ରେଷୁ ପୁରୁଷୋତ୍ତମଃ ।*
*ଦୃଷ୍ଟାତବାନ୍ତିକମ୍ ଭୂୟଃ ପୁନରାଗଚ୍ଛତି .... ।।*
*ତତଶ୍ଚ ଗଣିତୈରେବ ଦିବସୈର୍ଦ୍ଦେବଦୁର୍ଲ୍ଲଭଃ ।*
*ପ୍ରାପ୍ତବାନ୍ ଜଳଧେସ୍ତୀରଂ ଦୃଷ୍ଟଶ୍ଚ ପୁରୁଷୋତ୍ତମଃ ।।'*

ଦ୍ୱାଦଶ ଶତାବ୍ଦୀର ପ୍ରାରମ୍ଭରେ ଖୋଦିତ ଏକ ଶିଳାଲିପିରେ ପୁରୁଷୋତ୍ତମ ନାମର ଉଲ୍ଲେଖ ଅଛି । ଏହି ଶିଳାଲିପିକୁ ନାଗପୁର ଶିଳାଲିପି ବୋଲି କୁହାଯାଏ । ଏହା ଖ୍ରୀ:ଅ ୧୧୦୪ ରେ ଖୋଦିତ ହୋଇଛି ବୋଲି ଜଣାଯାଏ । ଏଥିରେ ଉଲ୍ଲେଖ ରହିଛି ଯେ –

*'ଦେବୋଽସୌ ପୁରୁଷୋତ୍ତମଃ ସଭଗବାନ୍ନାଶିଶ୍ରୟେ ଯଃ ଶ୍ରିୟା ।*
*ଯେନେଦଂ ବଳି ବୈରିବନ୍ଧବିଧିନା ବିଶ୍ୱଂ ସମାଶ୍ୱାସିତମ୍ ।।*
*ଯେନାଧାରି ବସୁନ୍ଧରେତି ଦଧତଃ ସାନନ୍ଦମନ୍ଦାକ୍ଷତାମ୍ ।*
*ତସ୍ୟ ପ୍ରାଚ୍ୟ ପୟୋନିଧୌ ବୁଧଜନୈଃ ବ୍ୟାଜସ୍ତୁତିଃ ପ୍ରସ୍ତୁତା ।।'*

ଏତଦ୍‌ବ୍ୟତୀତ ପୁରୁଷୋତ୍ତମଙ୍କ ଉପସ୍ଥିତି ଯୋଗୁ ଏହି କ୍ଷେତ୍ର ଯେ ଜଗତରେ ଏକ ଦୁର୍ଲ୍ଲଭ କ୍ଷେତ୍ର ଏବଂ ଉତ୍କଳ ଦେଶ ଯେ ଜଗତରେ ଶ୍ରେଷ୍ଠସ୍ଥାନ, ଏକଥା ବ୍ରହ୍ମପୁରାଣରେ ଅବତାରଣା କରାଯାଇଛି ।

*'ଆସ୍ତେ.ତତ୍ର ମୁନିଶ୍ରେଷ୍ଠ ! ବିଖ୍ୟାତଃ ପୁରୁଷୋତ୍ତମଃ ।*
*ଯାବତ୍ ଉତ୍କଳମର୍ଯ୍ୟାଦାଦିକ୍‌କ୍ରମେଣ ପ୍ରକୀର୍ତ୍ତିତା ।।*
*ତାବତ୍ କୃଷ୍ଣପ୍ରସାଦେନ ଦେଶଃ ପୁଣ୍ୟତମୋ ହି ସଃ ।*
*ଯତ୍ର ତିଷ୍ଠତି ବିଶ୍ୱାତ୍ମା ଦେଶେ ସ ପୁରୁଷୋତ୍ତମଃ ।।'*

(ବ୍ରହ୍ମପୁରାଣ, ୪୦ ଅଧ୍ୟାୟ, ୩୫-୩୬ ଶ୍ଳୋକ)

ଅର୍ଥାତ୍ - *''ହେ ମୁନିମାନେ, ସେହି କ୍ଷେତ୍ରରେ ବିଖ୍ୟାତ ପୁରୁଷୋତ୍ତମ ବିରାଜମାନ । ଦିଗ୍‌ବିଭାଗ ଅନୁସାରେ ଯେତେଦୂର ପର୍ଯ୍ୟନ୍ତ ଉତ୍କଳ ଦେଶର ସୀମା ଅଛି, ଯେଉଁଠାରେ ବିଶ୍ୱାତ୍ମା ପୁରୁଷୋତ୍ତମ ଜଗନ୍ନାଥ ବିରାଜମାନ, କୃଷ୍ଣଙ୍କର ପ୍ରସାଦରେ ସେହିଦେଶ ପୁଣ୍ୟତମ ।''*

'ତନ୍ତ୍ରଯାମଳ' ଗ୍ରନ୍ଥର ୧୭ଶ ଖଣ୍ଡରେ ଉଲ୍ଲେଖ ଅଛି ଯେ -

*'ଭାରତେଚୋତ୍କଳେ ଦେଶେ ଭୂସ୍ୱର୍ଗେ ପୁରୁଷୋତ୍ତମେ ।*
*ଦାରୁରୂପୀ ଜଗନ୍ନାଥୋ ଭକ୍ତାନାମଭୟପ୍ରଦଃ ॥'*

'ତନ୍ତ୍ରଯାମଳ' ଗ୍ରନ୍ଥ ପ୍ରାୟ ଚତୁର୍ଥ ଶତାବ୍ଦୀ ବା ତତ୍ ପୂର୍ବରୁ ରଚିତ ହୋଇଥିବାର ଜଣାଯାଏ । ଅତଏବ ଖ୍ରୀଷ୍ଟୀୟ ୪ର୍ଥ ଶତାବ୍ଦୀ ବା ତତ୍ ପୂର୍ବରୁ ପୁରୁଷୋତ୍ତମ କ୍ଷେତ୍ରର ପ୍ରସିଦ୍ଧି ପ୍ରତିଷ୍ଠିତ ହୋଇସାରିଥିଲା ବୋଲି କୁହାଯାଇପାରେ । ଶଙ୍କରାଚାର୍ଯ୍ୟ ଶ୍ରୀକ୍ଷେତ୍ରକୁ ଆସିଲା ବେଳକୁ ଶ୍ରୀକ୍ଷେତ୍ର ପ୍ରତିଷ୍ଠା ଲାଭ କରିସାରିଥିଲା । ପୁରୀ ପୁରୁଷୋତ୍ତମକ୍ଷେତ୍ର ଭାବରେ ଓ ଶ୍ରୀଜଗନ୍ନାଥ ସ୍ୱୟଂ ପୁରୁଷୋତ୍ତମ ରୂପରେ ସେତେବେଳକୁ ପ୍ରତିଷ୍ଠିତ ହୋଇସାରିଥିଲେ । ନବମ ଶତାବ୍ଦୀରେ ମୁରାରି ମିଶ୍ରଙ୍କ ଦ୍ୱାରା ରଚିତ ନାଟକ 'ଅନର୍ଘରାଘବ' ନାଟକରେ ଶ୍ରୀଜଗନ୍ନାଥଙ୍କୁ ପୁରୁଷୋତ୍ତମ ରୂପରେ ବର୍ଣ୍ଣନା କରାଯାଇଛି । ଏଥିରେ ଉଲ୍ଲେଖ ଅଛି ଯେ –

*''ଭଗବତଃ ଶ୍ରୀପୁରୁଷୋତ୍ତମସ୍ୟ ଯାତ୍ରାୟାମୁପସ୍ଥାନୀୟାଃ ସଭାସଦଃ''* । ଏକାଦଶ ଶତାବ୍ଦୀର ମଧ୍ୟଭାଗରେ ଶ୍ରୀକୃଷ୍ଣମିଶ୍ରଙ୍କ ଦ୍ୱାରା ରଚିତ ହୋଇଥିଲା ସଂସ୍କୃତ ନାଟକ 'ପ୍ରବୋଧଚନ୍ଦ୍ରୋଦୟ' । ଏହି ନାଟକର ଦ୍ୱିତୀୟଅଙ୍କରେ ଜଗନ୍ନାଥଙ୍କ ମନ୍ଦିର ପ୍ରସଙ୍ଗ ସ୍ଥାନିତ । ଏଥିରେ ଶ୍ରୀଜଗନ୍ନାଥଙ୍କୁ ପୁରୁଷୋତ୍ତମ ନାମରେ ନାମିତ କରାଯାଇଛି ।

*'ଅହମୁତ୍କଳଦେଶାଦାଗତୋଽସ୍ମି । ଅସ୍ତି ତତ୍ର ସାଗରତୀର ସଂନିବେଶେ ପୁରୁଷୋତ୍ତମ ଶବ୍ଦିତଂ ଦେବାୟତନମ୍'* ।

(ସଂ ରାମଚନ୍ଦ୍ର ମିଶ୍ର, ପୃ- ୭୪)

ଖ୍ରୀ ୧୧୩୭ରେ ଖୋଦିତ ବିହାରର ଗୟା ନିକଟସ୍ଥ ଗୋବିନ୍ଦଲିପିରୁ ଜଣାଯାଏ ଯେ ମନୋରଥ ନାମକ ଜଣେ ବ୍ୟକ୍ତି ପୁରୁଷୋତ୍ତମ କ୍ଷେତ୍ରକୁ ଆସିଥିଲେ । ଗୋବିନ୍ଦଲିପିରେ ଉଲ୍ଲେଖ ରହିଛି ଯେ –

*'ଗତ୍ୱା ଶ୍ରୀପୁରୁଷୋତ୍ତମଂ ଭଗବନ୍ ହୃଦ୍ୟପ୍ରତିଷ୍ଠାପଦମ୍ ।*
*ପାରାବାରତଟ ପଟ୍ଟୀୟସୀ ................ ॥'*

ବେଦର ଭାଷ୍ୟକାର ସାୟଣାଚାର୍ଯ୍ୟ (ଖ୍ରୀ ୧୩୦୦-ଖ୍ରୀ ୧୩୮୦)ଙ୍କ ବର୍ଣ୍ଣନାରୁ ପୁରୁଷୋତ୍ତମ ପାଠରେ ଦାରୁବ୍ରହ୍ମ ପୁରୁଷୋତ୍ତମଙ୍କର ସୂଚନା ମିଳେ । ସେ କହିଛନ୍ତି – *"ଅଦଃ ବିପ୍ରକୃଷ୍ଟ ଦେଶେ ବର୍ତମାନ ଅପୁରୁଷଂ ନିର୍ମାତା ପୁରୁଷେଣ ରହିତଂ ଯଦାରୁ ଦାରୁମୟଂ ପୁରୁଷୋତ୍ତମାଖ୍ୟଂ ଦେବତା ଶରୀରଂ ସିନ୍ଧୋପାରେ ସମୁଦ୍ରତୀରେ ପ୍ଲବତେ ଜଳସ୍ୟୋପରି ବର୍ତ୍ତତେ ।"* ଏହାର ସାରମର୍ମ ହେଲା – "ବର୍ତ୍ତମାନ ସମୁଦ୍ରରେ ପୁରୁଷୋତ୍ତମ ନାମକ ଦେବତାଙ୍କ ଶରୀର ଜଳ ଉପରେ ଭାସମାନ ।" ଶ୍ରୀ ଜଗନ୍ନାଥ ଯେ ସ୍ୱୟଂ ପୁରୁଷୋତ୍ତମ, ଏହି ତଥ୍ୟଟି ଏଥିରୁ ସୁଲଭ ।

ସ୍କନ୍ଦ ପୁରାଣ ବୈଷ୍ଣବ ଖଣ୍ଡ, ପୁରୁଷୋତ୍ତମକ୍ଷେତ୍ର ମାହାତ୍ମ୍ୟରେ ଉଲ୍ଲେଖ ରହିଛି ଯେ –

*'ଅତୋ ଦଶାବତାରଣାଂ ଦର୍ଶନୋଦୈସ୍ତୁ ଯତ୍ ଫଳମ୍ ।*
x x x x
*ତତ୍ ଫଳଂ ଲଭତେ ମର୍ତ୍ତ୍ୟୋ ଦୃଷ୍ଟ୍ୱା ଶ୍ରୀପୁରୁଷୋତ୍ତମମ୍ ।।'*

ଏହାର ସାରମର୍ମ ହେଉଛି, *"ଏହି ହେତୁ ମତ୍ସ୍ୟାଦି ଦଶାବତାର ଦର୍ଶନାଦି କଲେ ଯେଉଁ ଫଳ ହୁଏ ମାନବ କେବଳ ପୁରୁଷୋତ୍ତମଙ୍କ ଦର୍ଶନରେ ସେହି ଫଳ ଲାଭ କରିଥାଏ ।"* ପୁନଶ୍ଚ, ଏହି ସ୍କନ୍ଦ ପୁରାଣର ଉତ୍କଳ ଖଣ୍ଡରେ ଋଷିମାନଙ୍କୁ ଜୈମିନୀ ଶ୍ରୀଜଗନ୍ନାଥଙ୍କ ବିବିଧ ଯାତ୍ରାର ଅନୁଷ୍ଠାନ ପ୍ରସଙ୍ଗ ଅବତାରଣା କଲାବେଳେ ଶ୍ରୀଜଗନ୍ନାଥଙ୍କୁ ପୁରୁଷୋତ୍ତମ ବୋଲି ଉଲ୍ଲେଖ କରିଛନ୍ତି । ଜୈମିନୀ କହୁଛନ୍ତି –

*'ଶୃଣ୍ୱତାଂ ତଦ୍ବତୋ ବ୍ରୁହି ଯଥାଦେଶଂ କୃତଃ ପୁରା ।*
*ସର୍ବଥା ବର୍ତ୍ତତେ ଲୋକହିତାୟ ପୁରୁଷୋତ୍ତମଃ ।।*
*ନାନାଗୁଣବିକାରୈଶ୍ଚ ନାନାରୂପବିଚେଷ୍ଟିତୈଃ ।*
*ନାନାଭାବବିଳାସେନ ବିଜହାର ଜଗନ୍ମୟଃ ।।'*

ଅର୍ଥାତ୍ – *"ଭଗବାନ୍ ପୁରୁଷୋତ୍ତମ ସବୁବେଳେ ଲୋକମାନଙ୍କର ହିତ ପାଇଁ ନାନା ପ୍ରକାର ଲୀଳା କରିବାରେ ପ୍ରବୃତ୍ତ ହୋଇଥାନ୍ତି ଏବଂ ସେଥିପାଇଁ ସେହି ଜଗନ୍ମୟ ଜଗନ୍ନାଥ ଦେବ ନାନା*

*ପ୍ରକାର ଗୁଣବିକାର, ନାନାପ୍ରକାର ରୂପ ଓ ଚେଷ୍ଟାରେ ଏବଂ ନାନାପ୍ରକାର ଭାବରେ ବିହାର କରନ୍ତି ।''*

୨ୟ ଅନଙ୍ଗଭୀମଦେବ ଖ୍ରୀ ୧୨୧୬ରେ ବର୍ତ୍ତମାନର ବଡ଼ଦେଉଳ ନିର୍ମାଣ କରିଥିଲେ । ମନ୍ଦିର ନିର୍ମାଣ ପ୍ରସଙ୍ଗରେ ମାଦଳାପାଞ୍ଜିରେ ପ୍ରଦତ୍ତ ବର୍ଣ୍ଣନାରେ ଶ୍ରୀକ୍ଷେତ୍ର ଶବ୍ଦ ପରିବର୍ତ୍ତେ ପୁରୁଷୋତ୍ତମ-କଟକ ଶବ୍ଦ ରହିଛି । ମାଦଳାପାଞ୍ଜିରେ ଉଲ୍ଲେଖ ଅଛି *''ଅ ୧୫ଙ୍କ ସ୍ରାହି ଫଗୁଣ ଶୁକ୍ଳଦଶମୀ ତକ୍ୱାଳ ଏକାଦଶୀ ଗୁରୁବାରରେ ଶ୍ରୀପୁରୁଷୋତ୍ତମକଟକେ ପାତ୍ରମନ୍ତ୍ରୀ ସଭାସଦ୍‌ବର୍ଗଙ୍କୁ ସମ୍ବୋଧନ କରି ଏପରି ଆଜ୍ଞା ଶୁଣାଇଥିଲେ''* - ଇତ୍ୟାଦି...

ସାରଳା ମହାଭାରତର ଭୀଷ୍ମପର୍ବରେ ଶ୍ରୀଜଗନ୍ନାଥଙ୍କ ବର୍ଣ୍ଣନା ପ୍ରସଙ୍ଗରେ କବି ପୁରୁଷୋତ୍ତମ କ୍ଷେତ୍ର ଓ ପୁରୁଷୋତ୍ତମ ପ୍ରଭୁଙ୍କର ନାମ ଉଲ୍ଲେଖ କରିଛନ୍ତି । ତାଙ୍କ ଭାଷାରେ –

*'ପୁରୁଷୋତ୍ତମ କ୍ଷେତ୍ର ଯେ କୋଟିଯେ ତୀର୍ଥ ଘେନି*
*ବସିଲେ ହରି ବଳରାମ ସୁଭଦ୍ରା ଯେ ତିନି*

x x x x

*ପୁରୁଷମାନଙ୍କର ଉତ୍ତମ ଯେଣୁ ପୁରୁଷୋତ୍ତମ ନାମ*
*ପରମାନନ୍ଦ ସ୍ୱାମୀ ଅଧମ ଉଦ୍ଧାରଣ ।'*

ପୁନଶ୍ଚ, କାଇଁଶିକା ପର୍ବରେ କବି ସାରଳା ଦାସ ଶ୍ରୀଜଗନ୍ନାଥଙ୍କର ବିଭିନ୍ନ ନାମ ମଧ୍ୟରୁ ପୁରୁଷୋତ୍ତମ ନାମ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି ।

*'ଜୟତୁ ମାଧବ ପୁରୁଷଙ୍କର ଉତ୍ତମ*
*ଜୟତୁ ମାଧବ ପ୍ରସନ୍ନ ପରଂବ୍ରହ୍ମ ।'*

ରୁଦ୍ରସୁଧାନିଧି ଗ୍ରନ୍ଥଟି ରଚିତ ହୋଇଛି ୧୬ଶ ଶତାବ୍ଦୀର ୨ୟ-୩ୟ ଦଶନ୍ଧି ଭିତରେ । ଏଥିରେ ସ୍ରଷ୍ଟା ନାରାୟଣାନନ୍ଦ ଅବଧୂତ ସ୍ୱାମୀ ପ୍ରସଙ୍ଗକ୍ରମେ ଶ୍ରୀଜଗନ୍ନାଥଙ୍କ ମହିମା ବର୍ଣ୍ଣନା ଅବକାଶରେ ପ୍ରଭୁଙ୍କ ଧାମକୁ ପୁରୁଷୋତ୍ତମ ଧାମ ନାମରେ ନାମିତ କରିଛନ୍ତି ।

ତାଙ୍କ ଭାଷାରେ – *'ହାଦେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ସିଦ୍ଧମାନେ ପୁତ୍ରଦାରା ଘେନି କରିଥାନ୍ତି ବାସ ।'* ଇତ୍ୟାଦି ଇତ୍ୟାଦି ।

ଦିବାକର ଦାସଙ୍କ ରଚିତ ଜଗନ୍ନାଥଚରିତାମୃତ ଗ୍ରନ୍ଥରେ ବର୍ଣ୍ଣିତ ପୁରୁଷୋତ୍ତମ ଓ ଶ୍ରୀମଦ୍‌ଭଗବଦ୍‌ଗୀତାର ପୁରୁଷୋତ୍ତମ ଅଭିନ୍ନ । ଦିବାକର ଦାସଙ୍କ ଉକ୍ତି ଏହିପରି –

*'x x x x - ଏହି ଯେ ପୁରୁଷୋତ୍ତମ*
*ବ୍ରହ୍ମାଣ୍ଡ ପାଳନ କରନ୍ତି । ପୁଣି ଏ ସ୍ଥାନେ ଅବସ୍ଥିତି*
*ଏହି ଯେ କ୍ଷେତ୍ରଜ୍ଞ ପୁରୁଷ । କ୍ଷର ଅକ୍ଷର ଏ ବିଶେଷ ।'*
*x x x x*

ପୁନଶ୍ଚ,

*'କ୍ଷର ଅକ୍ଷର ଅତିକ୍ରମ । କରି ବିରାଜେ ଏହି ଧାମ ।'*
*(ଜଗନ୍ନାଥ ଚରିତାମୃତ-୧୨ଶ ଅଧ୍ୟାୟ)*

ଅଚ୍ୟୁତାନନ୍ଦଙ୍କର ହରିବଂଶରେ ଶ୍ରୀଜଗନ୍ନାଥଙ୍କ ବନ୍ଦନା ଓ ବର୍ଣ୍ଣନା ବିଭିନ୍ନ ପରିପ୍ରେକ୍ଷୀରେ କରାଯାଇଛି ।

*'ନମାମି ଶ୍ରୀ ନୀଳଗିରି ହେ ପୁରୁଷୋତ୍ତମ*
*ସକଳ ବେଦ ପୁରାଣେ ଅଧିକ ତୋ' ନାମ ।'*

'ଶଶିରେଖା' କାବ୍ୟରେ ପଦ୍ମନାଭ ଶ୍ରୀଚନ୍ଦନ ଶ୍ରୀଜଗନ୍ନାଥଙ୍କୁ ପୁରୁଷୋତ୍ତମ ଭାବରେ ବର୍ଣ୍ଣନା କରିଛନ୍ତି । ମଙ୍ଗଳାଚରଣରେ ସେ ଶ୍ରୀଜଗନ୍ନାଥଙ୍କୁ ଜଗତର କର୍ତ୍ତା, ଚଉବର୍ଗଦାତା, ଦାରୁବ୍ରହ୍ମ ଓ ଶ୍ରୀପୁରୁଷୋତ୍ତମ ରୂପେ ବର୍ଣ୍ଣନା କରିଛନ୍ତି ।

*'ଜୟ ଜୟ ଜଗନ୍ନାଥ ଜଗତ କରତା*
*ଧର୍ମ-ଅର୍ଥ-କାମ-ମୋକ୍ଷ ଚତୁର୍ବର୍ଗଦାତା*
*ଦାରୁରୂପେ ବ୍ରହ୍ମ ବିଜେ କରି ନୀଳାଚଳେ*
*ଶ୍ରୀପୁରୁଷୋତ୍ତମେ ଯାହା କହନ୍ତି ଭୂତଳେ ।'*

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ସ୍ୱରଚିତ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ଉଲ୍ଲେଖ କରିଛନ୍ତି ଯେ ଏ କ୍ଷେତ୍ର ହେଉଛି ଶ୍ରେଷ୍ଠ । ଏହାର ନାମ ପୁରୁଷୋତ୍ତମ, କାରଣ ଏଠାରେ ସ୍ୱୟଂ ପୁରୁଷୋତ୍ତମ ଆବିର୍ଭୂତ ହୋଇଛନ୍ତି ଏବଂ ନାମୀଙ୍କ ନାମାନୁସାରେ କ୍ଷେତ୍ରର ନାମ ଏପରି ରଖାଯାଇଛି ।

*'ଶୁଣ କୋବିଦେ ଭାରତ ଖଣ୍ଡେ ପୁଣ୍ୟଧାମ*
*ଯେଣୁ ନାରାୟଣ ଦେହୀ, ତେଣୁ ସେହି ନାମ '*

ଏହାଛଡ଼ା ରୀତିଯୁଗ ତଥା ଆଧୁନିକ ଯୁଗରେ ମଧ୍ୟ ଶ୍ରୀଜଗନ୍ନାଥଙ୍କୁ ବହୁସ୍ଥାନରେ ପୁରୁଷୋତ୍ତମ ନାମରେ ନାମିତ କରାଯିବାର ଦୃଷ୍ଟାନ୍ତ ରହିଛି । ପରିଶେଷରେ ସଂକ୍ଷେପରେ ଏତିକି କୁହାଯାଇପାରେ ଯେ ଶ୍ରୀପୁରୁଷୋତ୍ତମ ଓ ଶ୍ରୀଜଗନ୍ନାଥ ହେଉଛନ୍ତି ଏକ ଓ ଅଭିନ୍ନ ।



# ଶ୍ରୀଜଗନ୍ନାଥଙ୍କ ଜଣାଣରେ ବ୍ୟାଜ ସ୍ତୁତି

*"ଦନ୍ତକ୍ଷତ ଚୂତ ଶବରଣୀ ଦେଲା ଖାଇଲୁ ତାର ଅଇଁଠା ।*
*ଶୋଇଲା ଶେଯରେ ଶ୍ରୀବସ୍ତ ବ୍ରାହ୍ମଣ ମାଇଲା ପରା ଗୋଇଠା ।।*
*ଭଲଭଲ ଲୋକେ ଦେଉଳକୁ ଗଲେ ପଣ୍ଡା ମାରନ୍ତି ଘଉଡ଼ି ।*
*ଏବେ ନୀଚଲୋକେ ଦରଶନ କରି ଝିଙ୍କନ୍ତି ରଥ ଦଉଡ଼ି ।।"*

(ଗୌରଚରଣ ଅଧିକାରୀ)

ଭୟରୁ ଭକ୍ତି ଆସେବୋଲି କିଏ କିଏ କହିଥାନ୍ତି, ମାତ୍ର ଏହା ଏକ ଭ୍ରମ । ଭୟରୁ ଭକ୍ତି ଆସେନାହିଁ, ଆସେ ବିସ୍ମୟ ଅଥବା ବିରକ୍ତି । ଅନୁରକ୍ତିରୁ ଭକ୍ତି ଆସେ । ଏଇ ଭକ୍ତି ବ୍ୟକ୍ତି, ଜାତି, ଦେଶ ସର୍ବୋପରି ଭଗବାନଙ୍କ ନିମନ୍ତେ ଉଦ୍ଦିଷ୍ଟ ହୋଇପାରେ । ପ୍ରଶଂସାରେ ଭଗବାନଙ୍କ ପ୍ରତି ଭକ୍ତି ଯେପରି ପ୍ରକଟିତ ହୋଇପାରେ ବ୍ୟାଜସ୍ତୁତିରେ ମଧ୍ୟ ତାହା ସେପରି ପ୍ରକଟିତ ହୋଇପାରେ । ବ୍ୟାଜସ୍ତୁତି ହିଁ ପ୍ରଶଂସାର ନାମାନ୍ତର । ବେଳେବେଳେ ଭକ୍ତର ନିଛକ ଗାଳିରେ ତାହା ରୂପାୟିତ ହୋଇଥାଏ ।

ଭଗବାନ ଭକ୍ତର ଗାଳି ସହନ୍ତି, ଗର୍ବ ସହନ୍ତି ନାହିଁ । ଅହଂକାରୀ ଲୋକ ଅପେକ୍ଷା ଗାଳି ଦେଉଥିବା ଲୋକର ସେ ଅଧିକ ନିକଟବର୍ତ୍ତୀ ହୋଇଥାନ୍ତି । ଭକ୍ତର ଗାଳି ଓ ଫୁଲମାଳି ଭଗବାନଙ୍କ ନିକଟରେ ସମାନ ହୋଇଥାଏ । ଭାବକୁ ସେ ଗ୍ରହଣ କରନ୍ତି ବୋଲି ତ ତାଙ୍କ ନାମ ଭାବଗ୍ରାହୀ । ଭକ୍ତିରେ ପତ୍ର, ପୁଷ୍ପ, ଜଳ ଓ ଫଳ ଯାହାଦେଲେ ସେ ଗ୍ରହଣ କରନ୍ତି । ଶ୍ରୀମଦ୍‌ଭଗବଦ୍‌ଗୀତାରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି-

*'ପତ୍ରଂ ପୁଷ୍ପଂ ଫଳଂ ତୋୟଂ ଯୋ ମେ ଭକ୍ତ୍ୟା ପ୍ରଯଚ୍ଛତି*
*ତଦହଂ ଭକ୍ତ୍ୟୁପହୃତମଶ୍ନାମି ପ୍ରଯତାତ୍ମନଃ ।'*

*(୯/୨୬)*

ଅର୍ଥାତ୍, *"ଯେଉଁ ପବିତ୍ର-ଚିତ୍ତ-ନିଷ୍କାମ ସାଧକ ମୋତେ ଭକ୍ତି ସହକାରେ ପତ୍ର, ଫୁଲ, ଫଳ ଓ ଜଳ ଅର୍ପଣ କରନ୍ତି, ମୁଁ ସେହି ଭକ୍ତମାନଙ୍କର ଭକ୍ତିପ୍ରଦତ୍ତ ଦ୍ରବ୍ୟସମୂହ ଗ୍ରହଣ କରିଥାଏ ।"*

ଭକ୍ତଠାରୁ ଫୁଲମାଳି ପରି ଗାଳିକୁ ମଧ୍ୟ ଭକ୍ତବାନ୍ଧବ ଶ୍ରୀଜଗନ୍ନାଥ ଆଦରରେ ଗ୍ରହଣ କରିଥାନ୍ତି । ଭକ୍ତମାନଙ୍କର ସ୍ତୁତିରେ ସେ ଯେତିକି ପ୍ରୀତ, ଗାଳିରେ ମଧ୍ୟ ସେତିକି ଅନୁରକ୍ତ । ଓଡ଼ିଆ ଜାତିର ଆରାଧ୍ୟ ଦେବତା ସେହି ପରମ ପ୍ରଭୁଙ୍କ ପାଇଁ କେତେକ ଓଡ଼ିଆ କବି ବ୍ୟାଜସ୍ତୁତିରେ ନିଜର ଭକ୍ତି ପ୍ରକଟ କରିଛନ୍ତି । ତହିଁରୁ କିଛି ମାତ୍ର ଏହି ପ୍ରବନ୍ଧରେ ଉପସ୍ଥାପିତ ।

ଆତ୍ମୀୟତା ବଢ଼ିଲେ ଅଧିକାର ବଢେ । ଅଧିକାର ବଢିଲେ ଅଭିମାନ ଆସେ । ଅଭିମାନରୁ ଅଭିଯୋଗର ସୃଷ୍ଟି ହୁଏ । କବିଚିତ୍ତର ଅଭିମାନ ଭରା ସ୍ୱତଃସ୍ଫୂର୍ତ୍ତ ଅଭିବ୍ୟକ୍ତି ହିଁ ବ୍ୟାଜସ୍ତୁତିମୂଳକ ସୃଷ୍ଟିର ମୂଳଭିତ୍ତି ।

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଓଡ଼ିଆ ସାହିତ୍ୟରେ ଅନ୍ୟତମ ସ୍ୱନାମଧନ୍ୟ ସ୍ରଷ୍ଟା । ସେ ଥିଲେ ଅଭିମନ୍ୟୁ ସାମନ୍ତସିଂହାରଙ୍କର ଗୁରୁ । ଶ୍ରୀଜଗନ୍ନାଥଙ୍କ ପ୍ରତି ତାଙ୍କର ଥିଲା ଅସୀମ ଭକ୍ତି । ଭଗବାନ ସର୍ବଶକ୍ତିମାନ, ସମଗ୍ର ଜଗତର ନିୟନ୍ତା । ତାଙ୍କ ଦୟାହେଲେ ଅସମ୍ଭବ ବୋଲି କିଛି ରହେ ନାହିଁ, ସବୁକିଛି ସମ୍ଭବ ହୁଏ । ଭଗବାନ ଯେବେ ଦୁଃଖୀର ଦୁଃଖ ଦୂର ନ କରିବେ, ତାହାହେଲେ ତାଙ୍କ ମହିମା କ୍ଷୁର୍ଣ୍ଣ ହେବ, ତାଙ୍କର କୀର୍ତ୍ତିଚନ୍ଦ୍ରରେ କଳଙ୍କ ଲାଗିବ ବୋଲି କବି କହିଛନ୍ତି –

*'ଦାସ ଯେବେ ନାଶଯିବ କ୍ଷିତିରେ ଅକୀର୍ତ୍ତି ହେବ*
*କୀରତି ଚନ୍ଦ୍ରରେ ଲାଗିଯିବ କଳଙ୍କ ।'*

ଅଭିମନ୍ୟୁ ସାମନ୍ତସିଂହାରଙ୍କର ପ୍ରତିଷ୍ଠା ଓଡ଼ିଆ ସାହିତ୍ୟରେ ସ୍ୱତନ୍ତ୍ର । 'ବିଦଗ୍ଧ ଚିନ୍ତାମଣି' ଓ 'ପ୍ରେମ ଚିନ୍ତାମଣି' ପ୍ରଭୃତି କାବ୍ୟରଚନା ସହିତ ସେ କେତେକ ଭଜନଜଣାଣ ମଧ୍ୟ ରଚନା କରିଛନ୍ତି । ଗୋଟିଏ ଜଣାଣରେ କବି କଣ୍ଠରୁ ଝରିପଡ଼ିଛି ଶ୍ରୀ ଜଗନ୍ନାଥଙ୍କ ପ୍ରତି ଅଭିମାନ ଭରା ଆକୁଳ ଅଭିବ୍ୟକ୍ତି । ଯେଉଁ ପ୍ରଭୁ ଗଜର ଜୀବନ ରକ୍ଷା କରିଥିଲେ, ଦ୍ରୌପଦୀଙ୍କ ମାନରକ୍ଷା କରିଥିଲେ, ମୃଗୁଣୀର ଜୀବନ ରକ୍ଷା କରିଥିଲେ ସେହି ପ୍ରଭୁ କବିଙ୍କ ଦୁଃଖ ଶୁଣୁନାହାନ୍ତି ।

*'ସେହି ପ୍ରଭୁ ନୁହ କି ତୁମ୍ଭେ*
*ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।'*

କବିସୂର୍ଯ୍ୟ ବଳଦେବ ରଥଙ୍କର ଓଡ଼ିଆ ସାହିତ୍ୟକୁ ଅବଦାନ ଅବିସ୍ମରଣୀୟ । ଓଡ଼ିଶୀ, ଛାନ୍ଦ, ଚମ୍ପୂ ରଚନା ସହିତ ସେ କେତେକ ଭଜନ ଜଣାଣ ରଚନା କରିଛନ୍ତି । 'ସର୍ପ ଜଣାଣ' ତାଙ୍କର ଏକ ଅନବଦ୍ୟ କୃତି । ଏଥିରେ କବି ଶ୍ରୀଜଗନ୍ନାଥଙ୍କୁ ସର୍ପ ସହିତ ତୁଳନା କରିଛନ୍ତି ।

ମନଭରି ଗାଳି ଦେଇଛନ୍ତି ପରମ ପ୍ରଭୁଙ୍କୁ । ଜଣାଣରେ ଭକ୍ତିଯେତିକି ଯୁକ୍ତି ସେତିକି । ସର୍ବୋପରି ଏଥିରେ ଥିବା ଆନ୍ତରିକତା ଓ ଆତ୍ମୀୟତା ଅନନ୍ୟ ।

*'କାଳସର୍ପ ଆପଣ      କବଳ କର ପ୍ରାଣ*
*ପବନମାନଙ୍କୁ ସବୁରି ହେ ।'*

ପୁନଶ୍ଚ – *କାହାକୁ ବୋଲି ଚକ୍ରୀ   ଚକ୍ରଥିବାରୁ ଚକ୍ରୀ*
*ତୁମ୍ଭେ ତ ବୋଲାଅ ମଣ୍ଡଳେ*
*ବେଢାରେ କୁଣ୍ଡଳୀ ସେ   ଆପଣ ତ ବିଶେଷେ*
*ଭୂଷିତ ମକରକୁଣ୍ଡଳେ ।*
*ଅଦୃଶ୍ୟ ହେବାରୁ ତା' ପଦ*
*ତାହାକୁ ବୋଲି ଗୂଢ଼ପଦ*
*ଆପଣା ଚରଣ ତ      ବିରଞ୍ଚିକୁ ଗୁପତ*
*କାହିଁ ତା' ଠାରୁ ତୁମ୍ଭ ଭେଦ ହେ ।'*

ଅନ୍ୟ ଏକ ଜଣାଣ 'କ୍ଷୀରମୟ ସିନ୍ଧୁ'ରେ କବି କହିଛନ୍ତି –

*'ଲାଞ୍ଚ ଦେଇଥିଲେ କାଞ୍ଚନ କେତେ କି*
*ପଞ୍ଚପଣ୍ଡୁ ରାଜ ସୁତେ ।'*

ଉତ୍କଳଘଣ୍ଟ ଯଦୁମଣିଙ୍କର ଶ୍ରୀଜଗନ୍ନାଥଙ୍କ ପ୍ରତି ଅଚଳା ଭକ୍ତି ଥିଲା । ତାଙ୍କର ଅଭିଯୋଗ ଯୁକ୍ତିଭିତ୍ତିକ । ସେହି ଯୁକ୍ତି ଅକାଟ୍ୟ ଓ ହୃଦୟସ୍ପର୍ଶୀ । ବ୍ୟାଜସ୍ତୁତି ଛଳରେ ପରମପ୍ରଭୁଙ୍କ ପ୍ରତି ଯେଉଁ ଭକ୍ତିଭାବନା କବି ପ୍ରକଟ କରିଛନ୍ତି, ତାହାର ତୁଳନା ନାହିଁ । ତାଙ୍କର ଅଭିଯୋଗ ଯେ ଶ୍ରୀଜଗନ୍ନାଥଙ୍କର ଦାତାପଣିଆ ଆଦୌ ନାହିଁ । ସିଏ ଜଣକଠାରୁ ଯାହା ନେଇଛନ୍ତି ଅନ୍ୟଜଣକୁ ତାହା ଦେଇଛନ୍ତି । ଉଦାହରଣ ସ୍ୱରୂପ ଶ୍ରୀକୃଷ୍ଣ ଅବତାରରେ ପରମ ପ୍ରଭୁ ଗୋପୀମାନଙ୍କର ବସ୍ତ୍ର ହରଣ କରି ନେଇଥିଲେ ଏବଂ ଦ୍ରୌପଦୀଙ୍କର ଆତଙ୍କ କାଳରେ ଦ୍ରୌପଦୀଙ୍କୁ ସେଇ ବସ୍ତ୍ର ପ୍ରଦାନ କରିଥିଲେ ।

'ଗୋକୁଳ-ଜଳଧରତ ଗଉରାଙ୍ଗୀଙ୍କ ମହତ
ନେଇଥିବା ସକାଶରୁ ହରି
ଦ୍ରୁପଦନୃପନନ୍ଦନା ମହତ-ହର ବେଦନା
ଟାଳିବାରେ ହେଲ ଧନ୍ୱନ୍ତରୀ !
ହେ ନୀଳାଚଳ ! କଳାକର ସତ କି ଏ ମିଛ
ନେଲ ଯାହା ଦେଲ ତାହା ଏଥକୁ କିପାଇଁ ମହା-
ଦାତା ପଣେ ପତାକା ବାନ୍ଧିଛ ହେ ।'

ଏଠାରେ ଉପସ୍ଥାପିତ ନିନ୍ଦା ପ୍ରକୃତ ନିନ୍ଦା ନୁହେଁ, ବରଂ ଅଶେଷ ଭକ୍ତିମତ୍ତାର ଅନ୍ୟ ସ୍ୱର, ଅନ୍ୟ ନାମ । 'ନାହିଁ' ଭିତରେ ଅନ୍ତଃସଲିଳା ଫଲ୍‌ଗୁପରି ଯେଉଁ 'ହଁ'ଟି ଅଛି ତାହାର ରସମାଧୁର୍ଯ୍ୟ ଅନିର୍ବଚନୀୟ ।

କବି ବାଙ୍କା ଦାସ ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ପ୍ରତି ସ୍ୱରଚିତ ଜଣାଣରେ ଗାଳିବର୍ଷଣ କରିଛନ୍ତି । ପ୍ରଭୁଙ୍କୁ ଡକାଇତ ବୋଲି କହିବାକୁ ସେ ପଶ୍ଚାତପଦ ହୋଇନାହାନ୍ତି ।

'ଟେକିଅଛ କର ଡାକିଲା ପ୍ରକାର
ଠକି ଦେଲ ମୁଁ କି କଳି ।
x x x x
ବାଙ୍କା ବୋଲେ ଚକା- ନେତ୍ର ନ ଜାଣଇ
ଏଡ଼େ ଡକାଇତ ବୋଲି ।'

କବି ନିତ୍ୟାନନ୍ଦ ଦାସଙ୍କର ବ୍ୟାଜସ୍ତୁତି ଆହୁରି ଶାଣିତ । ସେ ଅଭିଯୋଗ କରି କହିଛନ୍ତି ଯେ ଯିଏ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଗାଳି ଦେଇଛନ୍ତି ସିଏ ଲାଭ ପାଇଛନ୍ତି । ଯିଏ ମାଡ଼ ଦେଇଛି ସିଏ ସ୍ମରଣୀୟ ହୋଇରହିଛି । ପ୍ରସଙ୍ଗକ୍ରମେ ସେ କହିଛନ୍ତି ଯେ ଶ୍ରୀବତ୍ସଙ୍କ ପଦାଘାତ ଜନିତ ଚିହ୍ନକୁ ପ୍ରଭୁ କୌସ୍ତୁଭମଣି ସଦୃଶ ହୃଦୟରେ ଧାରଣ କରିଛନ୍ତି ଓ ବ୍ରାହ୍ମଣଙ୍କୁ ବୈକୁଣ୍ଠରେ ସ୍ଥାନ ଦେଇଛନ୍ତି । ଏବେ କବିଙ୍କର ଆକୁଳ ଆହ୍ୱାନ ଶ୍ରୀଜଗନ୍ନାଥ କାହିଁକି ଶୁଣୁନାହାନ୍ତି ବୋଲି କବି ବିସ୍ମୟ ପ୍ରକାଶ କରିଛନ୍ତି । ଯଦି ନ ଶୁଣୁଛନ୍ତି ତେବେ ନୀଳଚକ୍ରରୁ ପତିତପାବନ ନେତ କାହିଁକି କାଢ଼ିଦେଉ ନାହାନ୍ତି ?

*'ଦୀନବନ୍ଧୁ ବୋଲି ନାମ ଯେ ବହିଛ*
*ଏହା ନ ଚେତ କି ଭାବଗ୍ରାହୀ*
*ଏ ନାମ ଏବେ ଏଣିକି ନ ବହିବ*
*ଚକ୍ରପରୁ ନେତ ଥୁଅ ନେଇ ।'*

କବି ସାନନ୍ଦ ଦ୍ୱିଜ ଉଲ୍ଲେଖ କରିଛନ୍ତି ଯେ ପ୍ରଭୁଙ୍କ କୃପା ହେଉଛି ବିଶାଳ ଜଳଭଣ୍ଡାର । କବିଙ୍କର କାମନା ହେଉଛି ଏକ କ୍ଷୁଦ୍ରକୁମ୍ଭ । ଦୁଃଖର କଥା ଯେ ଏହି ଜଳଭଣ୍ଡାର ଦ୍ୱାରା କବିଙ୍କର କୁମ୍ଭଟି ପୂର୍ଣ୍ଣ ହୋଇପାରିଲା ନାହିଁ । ପ୍ରଭୁଙ୍କୁ ସେ ଲାଞ୍ଚୁଆ, ମିଛୁଆ ବୋଲି ଦୋଷାରୋପ କରିଛନ୍ତି । ଦୂରଅତୀତରେ ଗୋପପୁରରେ ତାଙ୍କର ଲାଞ୍ଚୁଆପଣ ପ୍ରମାଣିତ ହୋଇସାରିଛି ।

*'ନେବ ବୋଲି କିଛି ଲାଞ୍ଚ      ମନେ କି କରିଛ ପାଞ୍ଚ*
*ସେ କଥା ମନରୁ ମୁଞ୍ଚ      ଚଳିଗଲା ମନ ସ୍ୱଚ୍ଛ*
*ଗୋପପୁରେ ପୟସର ଚାଖିଚାଖି ।'*

କବି ଗୌରଚରଣ ଅଧିକାରୀ ପରମବ୍ରହ୍ମ ଶ୍ରୀଜଗନ୍ନାଥଙ୍କ ପ୍ରତି ଜଣାଣ ମାଧ୍ୟମରେ ଯେଉଁ ଛଳୋକ୍ତି ପ୍ରକଟ କରିଛନ୍ତି, ତାହା ଅତ୍ୟନ୍ତ ମର୍ମସ୍ପର୍ଶୀ । ଗୁଣ୍ଡିଚା ଯାତ୍ରାରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରା ଓ ଶ୍ରୀସୁଦର୍ଶନ ରତ୍ନସିଂହାସନରୁ ଗୁଣ୍ଡିଚା ଘରକୁ ଆସନ୍ତି ଓ ନବଦିନ ଯାତ୍ରାସାରି ପୁଣି ଶ୍ରୀମନ୍ଦିରକୁ ଫେରିଯାଆନ୍ତି । ଗୁଣ୍ଡିଚା ଘରେ ପ୍ରଭୁଙ୍କୁ ଦର୍ଶନ କରି କବି ପ୍ରଶ୍ନ କରିଛନ୍ତି ଯେ କେଉଁ ସୁଖ ପାଇବାକୁ ସେ ବଡ଼ ଦେଉଳରୁ ଏହାକୁ ଆସିଛନ୍ତି । ବଡ଼ ଦେଉଳରେ ଛପନପଉଟି ଭୋଗ କ'ଣ ରୁଚିଲାନାହିଁ ଯେ ମାଉସୀ ମାଆ ଦୁଆରକୁ ଆସି ପୋଡ଼ପିଠା ଖାଇବାକୁ ମନ ହେଲା ? ଆତ୍ମବିସ୍ମୃତ ପ୍ରାୟହୋଇ ବସିଥିବା ଶ୍ରୀଜଗନ୍ନାଥଙ୍କୁ ମହାଲକ୍ଷ୍ମୀଙ୍କୁ ନବଦିନ କଷ୍ଟକରି ଆସିବା କଥା କବି ସ୍ମରଣ କରାଇ ଦେଇଛନ୍ତି । ଆଉ ମଧ୍ୟ ଚେତେଇ ଦେବାକୁ ଭୁଲି ନାହାନ୍ତି ଯେ ମହାପ୍ରଭୁ ଯଦି ପ୍ରତ୍ୟାବର୍ତ୍ତନରେ ଟିକିଏ ବିଳମ୍ବ କରନ୍ତି ତେବେ ବହୁ ଅସୁବିଧାର ସମ୍ମୁଖୀନ ହେବେ ।

*'କଳାସିଂହ । କାହିଁକି ଅଇଲୁରେ ଶ୍ରୀନୀଳକନ୍ଦର ଛାଡ଼ି*
*ଭାଇଭଗ୍ନୀ ସଙ୍ଗେ ଲୀଳା କରିରଙ୍ଗେ ରହିଛୁ ଗୁଣ୍ଡିଚା ବାଡ଼ି ।*

x x x x x

*ନାଡ଼ୀ ବଢ଼ି ଗଜା ଖଣ୍ଡ ଖଇ ଖଜା ଏ ତୋତେ ନୋହିଲା ମିଠା*
*ମାଉସୀ ଦୁଆରେ ରହି ଚୋବାଇଲୁ ପାଉଁଶିଆ ପୋଡ଼ପିଠା ।*
*ଘର ଘରଣୀକି ନ' ଦିନକୁ ପରା କରି ଆସିଥିଲୁ କଣ୍ଢ*
*ସେ କଥା ପାଶୋରି ମୂଳାଉଛୁ ଗାଳି ତୁ ବଡ଼ ବିଷମ ଖଣ୍ଡ ।'*

ମହାଲକ୍ଷ୍ମୀ ଅନ୍ୟ ଦେବୀଙ୍କ ପରି ନୁହନ୍ତି । କଣ୍ଢ ଠାରୁ ଟିକିଏ ବିଳମ୍ବ ହେଲେ ଘରୁ ଘଉଡ଼ିଦେବେ ବୋଲି ଶ୍ରୀଜଗନ୍ନାଥଙ୍କୁ କବି ସତର୍କ କରାଇ ଦେଇଛନ୍ତି –

*'ଆନନାରୀ ପରି ନୁହନ୍ତି କମଳା ସେ ଯେ ନ ସହନ୍ତି ଟାହି*
*ଘଡ଼ିଏ ଉଛୁର ହେଲେ ଘଉଡ଼ିବେ ଘରେ ପୂରାଇବେ ନାହିଁ ।'*

ବହୁ ଗୀତିନାଟ୍ୟ ତଥା ପାର୍ଶର ସ୍ରଷ୍ଟା ଗଣକବି ବୈଷ୍ଣବ ପାଣିଙ୍କ ଭକ୍ତିମତ୍ତା ଅନନ୍ୟସାଧାରଣ । ଶ୍ରୀଜଗନ୍ନାଥଙ୍କ ପଦାରବିନ୍ଦରେ ମସ୍ତକ ତାଙ୍କର ଚିରଅବନତ । ଭକ୍ତିର କୁସୁମରେ ଅଞ୍ଜଳି ତାଙ୍କର ପୂର୍ଣ୍ଣ । ହୃଦୟର ଗଭୀରତମ ପ୍ରଦେଶରୁ ପ୍ରବାହିତ ବିଭୁପ୍ରୀତି କେତେବେଳେ ଗାଳି ଆକାରରେ ତ କେତେବେଳେ ଫୁଲଝରି ଆକାରରେ ଅଭିବ୍ୟକ୍ତ ହୋଇଛି । ସେ ଗାଳିରେ ଅଛି ସୀମାହୀନ ପ୍ରୀତିପ୍ରବଣତା । ଥରେ ପଢିଲେ ମନେ ହେବ ତୁଚ୍ଛା ଗାଳି । ବାରବାର ପଢିଲେ ଶବ୍ଦର ମହତ୍ୱ ତଥା ମନୋବୃତ୍ତିର ଗୁରୁତ୍ୱ ବୁଝିହେବ । ଗାଳି ଭିତରେ ବହୁତ ଆତ୍ମୀୟତା ଅଛି ବୋଲି ଅନୁଭବ କରିହେବ । ପାଣିକବି ଶ୍ରୀ ଜଗନ୍ନାଥଙ୍କୁ କହିଛନ୍ତି ଯେ ଯିଏ ପ୍ରଭୁଙ୍କୁ ମାଡ଼ ମାଇଲା ସେ ବଡ଼ ହେଲା, ପ୍ରଭୁ ତାକୁ ସୁରକ୍ଷା ପ୍ରଦାନ କଲେ ଇତ୍ୟାଦି ଇତ୍ୟାଦି । ବିଭିନ୍ନ ଉଦାହରଣ ଦେଇ କବି ବୈଷ୍ଣବ ପାଣି କହିଛନ୍ତି –

*'ଛାଡ଼ ମାଡ଼ଖିଆ ବୁଦ୍ଧି ହେ*
*ବଡ଼ ଦେଉଳ ବଡ଼ ଗୋସାଇଁ*
*ଯେ ମାଇଲା ମାଡ଼ ସେ ହୋଇଲା ବଡ଼*
*ବାଡ଼ ହେଲୁ ତାକୁ ତୁହି ।'*

ପରମ ପ୍ରଭୁଙ୍କର ପ୍ରଭୁପଣକୁ କବି ସାଦରେ ଗ୍ରହଣ କରିନାହାନ୍ତି । କବି କହିଛନ୍ତି ଯେ ପ୍ରଭୁ ମିଛଟାରେ ନୀଳାଚଳରେ ବସି ଅଛନ୍ତି । ମହାପ୍ରସାଦକୁ କହିଛନ୍ତି ପଣ୍ଡାରନ୍ଧା ଭାତ ବୋଲି । ତାଙ୍କ କଥାରେ କ୍ରୋଧ ନାହିଁ, ବିରକ୍ତି ନାହିଁ, ଅଛି ଅନୁରକ୍ତିର ସ୍ନିଗ୍ଧମଧୁର ପ୍ରଶାନ୍ତ ପ୍ରଲେପ ।

*'ମିଛେ ନୀଳାଚଳ ନାଥ ବସିଅଛୁ ନୀଳାଚଳେ*
*ପଣ୍ଡାରନ୍ଧା ଭାତ ଡାଲି ଗିଳିଣ ବଡ଼ଦେଉଳେ ।*
*ଗଣ୍ଡାଗଣ୍ଡା ହଣ୍ଡାହଣ୍ଡା  କାକରା ଆରିଷା ମଣ୍ଡା*
*ଥଣ୍ଡା ହେଲ ଦୁଇଭାଇ ଭଣ୍ଡିଆଇ ପାଞ୍ଚବେଳେ ।'*

ପାଣିକବି ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଭାତବିକା ଜଗନ୍ନାଥ ବୋଲି ଅବତାରଣା କରିଛନ୍ତି । କୃଷ୍ଣ ଅବତାରରେ ସେ ତାଙ୍କ ଯଦୁବଂଶକୁ କୌଶଳରେ ନାଶ କରିଥିଲେ । ତେଣୁ କବି ତାଙ୍କୁ ଗୋତରମରା ଗୋବିନ୍ଦ ବୋଲି ନିନ୍ଦା କରିଛନ୍ତି । ଅବଶ୍ୟ ଏ ନିନ୍ଦା ଭିତରେ ଭକ୍ତିମତ୍ତା ଓ ପ୍ରୀତିପ୍ରବଣତା ବିରାଜିତ ।

*'ଭାତବିକା ଜଗନ୍ନାଥ  ଚାତର ସରିବ ହେ*
*କାତରେ ଡାକି ଖାତରେ ପଡ଼ନ୍ତେ ଗରିବ ହେ ।*
*ଗୋତରମରା ଗୋବିନ୍ଦ  ଭିତର ତୋ' ବଡ଼ ମନ୍ଦ*
*ଭୁଞ୍ଜିବା ପତରେ ଧୂଳି କେ ନେଇ ଭରିବ ହେ ।'*

ଏତଦ୍‌ବ୍ୟତୀତ ଆଉ କେତେକ କବିଙ୍କ ବିରଚିତ ଜଣାଣରେ ଶ୍ରୀଜଗନ୍ନାଥଙ୍କ ପ୍ରତି ବ୍ୟାଜସ୍ତୁତି ରହିଛି । ଏହି ସଂକ୍ଷିପ୍ତ ପ୍ରବନ୍ଧରେ ସେଗୁଡ଼ିକର ଆଲୋଚନା ସମ୍ଭବ ନୁହେଁ ।



# ଭଂଜ ସାହିତ୍ୟରେ ଶ୍ରଦ୍ଧାର ସ୍ୱରୂପ

*"କଳିଙ୍ଗ କଳାପ୍ରାଣ ଓ ସଂଗୀତପ୍ରାଣ ଦେଶ । କବିସମ୍ରାଟଙ୍କ କବିତା ଏକାଧାରରେ ରସାଳ, କଳାମଞ୍ଜୁଳ ଓ ମୂର୍ଚ୍ଛନାମୟ । ରସାଳତାରେ, କଳାମଞ୍ଜୁଳତାରେ ଓ ମୂର୍ଚ୍ଛନାମୟତାରେ ତହିଁର ପଟାନ୍ତର ନାହିଁ । କବିସମ୍ରାଟ କଳିଙ୍ଗର ହୃଦୟନିଧି ।"*

( ପ୍ରବନ୍ଧ - କବିସାର୍ବଭୌମ କବିସମ୍ରାଟ ଉପେନ୍ଦ୍ର ଭଂଜ )

- ବିଚ୍ଛନ୍ଦଚରଣ ପଟ୍ଟନାୟକ

କବିସମ୍ରାଟ ଉପେନ୍ଦ୍ରଭଂଜ କଳିଙ୍ଗ କବିମଣ୍ଡଳୀ ରୂପକ ହାରର ହୀରାପଦକ । ସେ ଏକାଧାରରେ ଶବ୍ଦସମ୍ରାଟ ଓ ସଂଗୀତସମ୍ରାଟ । ତାଙ୍କ ଶବ୍ଦରେ ଅନୁରଣନ ଅଛି, ଭାବରେ ଲାବଣ୍ୟ ଅଛି । ହୃଦୟର ସୁକୁମାର ଅନୁଭବ ସହ ସଙ୍ଗୀତର ମୋହନବିଳାସ ସମନ୍ୱିତ ହୋଇ ସ୍ୱର୍ଗ ସୁଷମା ରଚନା କରିଛି । ଆଜି ରକ୍ତ ମାଂସର ଶରୀରରେ ନଥିଲେ ମଧ ଯଶୋଦେହରେ ସେ ଅମର ହୋଇ ରହିଛନ୍ତି ।

କେହିକେହି ସମାଲୋଚକ କହନ୍ତି ଯେ ଭଂଜ ସାହିତ୍ୟ ହେଉଛି ନାରୀ ଓ ଡିକ୍‌ସିନାରୀର ସମାହାର । କଥାଟି ଆଂଶିକ ଠିକ୍,-ମାତ୍ର ପୂର୍ଣ୍ଣ ଭାବରେ ଠିକ ନୁହେଁ । ଏହା ସ୍ୱୀକୃତ ଯେ ଯେଉଁ ନାରୀଚରିତ୍ର ସବୁ ରହିଛି ସେଗୁଡ଼ିକ ଦ୍ୱାରା ଭଂଜସାହିତ୍ୟ ରୁଚିହୀନ ହୋଇନାହିଁ, ବରଂ ରୁଚିପୂର୍ଣ୍ଣ ହୋଇଛି କାରଣ ଏମାନେ ପ୍ରାୟତଃ ସ୍ୱକୀୟାନାରୀ । ପ୍ରେମ ବୋଲି ଯାହାଅଛି ପ୍ରାୟତଃ ତାହା ହେଉଛି ଅନୁପମ ଦାମ୍ପତ୍ୟ ପ୍ରେମ ଯହିଁରେ ସମାଜକୁ ଉଦ୍‌ଭ୍ରାନ୍ତ କରିବାର ଅପପ୍ରୟାସ ନାହିଁ, ବରଂ ସମାଜକୁ ସୁସ୍ଥସୁନ୍ଦର ଓ ମାର୍ଜିତମଧୁର କରିବାର ପ୍ରଯତ୍ନ ଅଛି । ଭଂଜଙ୍କ କାବ୍ୟନାୟିକା ଏକାଧାରରେ ସୌମ୍ୟା, ଶ୍ରୀମୟୀ ଓ ସଂସ୍କୃତିସଂପନ୍ନା । ସେ ପରିବେଶରେ ଫୁଲବାସ ଭରିଦିଏ, ପାରିବାରିକ ଜୀବନକୁ ମଧୁମୟ କରିଦିଏ । ଦିବ୍ୟଗୁଣର ଅଧିକାରିଣୀ, ସୁକୁମାରୀ, ସୁଗୁଣବତୀ ଓ ସୌଭାଗ୍ୟବତୀ ସେଇ ନାୟିକାର ପାଦରେଖାରେ ପଦ୍ମଫୁଟେ । ତା'ର ବ୍ୟବହାର ଓ ଚାଲିଚଳଣିରେ ବାତାବରଣ ହୋଇଉଠେ ସୀମାହୀନ ଆନନ୍ଦର ମଧୁସାଗର । ହିଂସ୍ରତା, ଈର୍ଷା, ବିରକ୍ତି, ଛଳନା, ପ୍ରତାରଣା, ପରଶ୍ରୀକାତରତା ଓ ଅସହିଷ୍ଣୁତା ଠାରୁ ନିରାପଦ ଦୂରତ୍ୱରେ ତା'ର ସ୍ଥିତି ।

ଦେହରୁ ଦେହାତୀତ ରାଜ୍ୟକୁ ଯିବା ପାଇଁ ଆଗ୍ରହ ଓ ଆନ୍ତରିକତା ଥିବାରୁ ତାକୁ ଦିବ୍ୟନାରୀ ବୋଲି ଭଂଜ କହିଛନ୍ତି ।' ଦିବ୍' ଧାତୁର ଅର୍ଥ ହେଉଛି ଚମକ୍ ଦେବା । ଦେବ ଶବ୍ଦର ସାଧାରଣ ଅର୍ଥ ହେଉଛି ଯେ ଚକ୍‌ଚକ୍ କରେ । ଦିବ୍ୟ ଶବ୍ଦକୁ ସାଧାରଣ ଅର୍ଥରେ ଆତ୍ମବିକାଶ ବା ଆତ୍ମଚେନତାର ଔଜ୍ଜଲ୍ୟ ବୋଲି ବୁଝାଯାଏ । ସେପରି ନାରୀ ସହଜଲଭ୍ୟ ନୁହନ୍ତି, ତାଙ୍କୁ ପାଇବା ପାଇଁ ସାଧନା ଆବଶ୍ୟକ । ଲାବଣ୍ୟବତୀ କାବ୍ୟରେ ପ୍ରଭାକରର ତପସ୍ୟା ଏହିପରି –

*'ତପ ତା ଅକଥନୀୟ ଦିବ୍ୟନାରୀ ଶ୍ରଦ୍ଧେ*
*ପଞ୍ଚାଗ୍ନି ସ୍ଥାପନ କରେ ତପରତୁ ମଧ୍ୟେ*
*ପ୍ରାବୃଟକାଳରେ ଗୃହୋଦରକୁ ନଯାଇ*
*ଝଞ୍ଜାବାତ ଜଳପାତ କରକା ସହଇ*
*ଶୀତେ ଜଳଶାୟୀ ଭୂମି ଶଯ୍ୟା ବସ୍ତ୍ରହୀନେ*
*ମୃଡିକାଶଙ୍କର ପୂଜାକରେ ପ୍ରତିଦିନେ ।'*

ଦିବ୍ୟ ନାରୀ ପ୍ରାପ୍ତି ନିମନ୍ତେ ସାଧନା ହେଉଛି ଶ୍ରଦ୍ଧାର ସାଧନା । ସାଧନା ପାଇଁ ସୁଦୃଢ ସଂକଳ୍ପ ପ୍ରୟୋଜନ । ଶ୍ରଦ୍ଧା ନଥିଲେ ସାଧନା ହୁଏନାହିଁ । କେବଳ ସାଧନା ପାଇଁ ସାଧନା ନୁହେଁ ଜୀବନପାଇଁ ସାଧନାର କଥା ଏଠାରେ କୁହାଯାଇଛି । ପାରିବାରିକ ଜୀବନର ସୁସ୍ଥତା ନିମନ୍ତେ ସାଧନା ଅଭିପ୍ରେତ । ପାରିବାରିକ ଜୀବନ ହେଉଛି ବିଶ୍ୱଜୀବନର ମୂଳଭୂମି । ସାଂପ୍ରତିକ ବିଶ୍ୱଜୀବନରେ ଏବେ ଶ୍ରଦ୍ଧା ନାହିଁ । ତାହା କରପତ୍ର ଯୋଡ଼ି ସତେ ଯେମିତି ମଣିଷ ଜୀବନରୁ ବହୁଦୂରକୁ ଅପସରି ଯାଇଛି । ସ୍ୱାମୀ ବିବେକାନନ୍ଦଙ୍କ ବାଣୀ ଏଇ ପରିପ୍ରେକ୍ଷୀରେ ସ୍ମରଣୀୟ – *'What we want is this Sraddha, unfortunately it has nearly vanished from India, and this is why we are in our present State. What makes the difference between man and man is the difference in this Sraddha and nothing else !'* ଶ୍ରଦ୍ଧା ହିଁ ମାର୍ଜିତ ବ୍ୟକ୍ତିଗତ ଜୀବନ, ପାରିବାରିକ ଜୀବନ, ସାମାଜିକ ଜୀବନ ତଥା ରାଷ୍ଟ୍ରୀୟ ଜୀବନର ଭିତ୍ତିଭୂମି । ଶ୍ରଦ୍ଧା ପୋତି ଦିଏ ମନପୋଖରୀରେ ପଦ୍ମମୂଳଟିଏ, ଲହରାଇ ଦିଏ ଅନୁରାଗ ଭିତରେ ନୂତନ ରାଗଟିଏ, ଆଲୋକର ସଦନ ହୁଏ, ଆଲୋକର ସନ୍ତାନ ହୁଏ ।

'ଦିବ୍' ଧାତୁରୁ ଦିବ୍ୟଶବ୍ଦ ନିଷ୍ପନ୍ନ । 'ଦିବ୍' ଧାତୁର ଦଶଗୋଟି ଅର୍ଥ ରହିଛି । ସେଗୁଡ଼ିକ ଏହିପରି – (୧) କ୍ରୀଡ଼ା, (୨) ବିଜିଗୀଷା, (୩) ବ୍ୟବହାର, (୪) କାନ୍ତି, (୫) ଦ୍ୟୁତି, (୬) ସ୍ତୁତି, (୭) ମୋଦ, (୮) ମଦ, (୯) ସ୍ୱପ୍ନ ଓ (୧୦) ଗତି ।

**କ୍ରୀଡ଼ା :** ଏହା ଶାସ୍ତ୍ର ସମ୍ମତ, ୬୪ କଳାର ଅନ୍ତର୍ଭୁକ୍ତ । ଜଳକ୍ରୀଡ଼ା, ଦ୍ୟୁତକ୍ରୀଡ଼ା, ସୂତ୍ରକ୍ରୀଡ଼ା ଏବଂ ବାକ୍‌କ୍ରୀଡ଼ା ଏହାର ପରିସରଭୁକ୍ତ । ଏ ସବୁଥିରେ କାବ୍ୟନାୟିକା ପାରଦର୍ଶିତା ଅର୍ଜନ କରିଥିବା ଆବଶ୍ୟକ । ଜଳକ୍ରୀଡ଼ାର ବର୍ଣ୍ଣନା ଭଂଜକାବ୍ୟରେ ସ୍ୱତନ୍ତ୍ର ସ୍ଥାନ ପାଇଛି । କାବ୍ୟନାୟିକା ଜଳକ୍ରୀଡ଼ାରେ ଅତ୍ୟନ୍ତ ନିପୁଣା ।

*'ନାରୀ ନଦୀ ବାରି ନୋହିଲେ*
*ତହୁଁ ଘଡ଼ିଏ ଯାଏ*
*ହାସକୁମୁଦ, ନେତ୍ରମୀନ,*
*ମୁଖକମଳ ପ୍ରାୟେ ।'* *(ଲାବଣ୍ୟବତୀ)*

ବାକ୍‌କ୍ରୀଡ଼ାର ଚିତ୍ର ସେହି 'ଲାବଣ୍ୟବତୀ' ଗ୍ରନ୍ଥରେ ପ୍ରଦତ୍ତ ମନ୍ତ୍ରୀକନ୍ୟା ବାକ୍ କ୍ରୀଡ଼ାଛଳରେ ରାଜକନ୍ୟାକୁ ପ୍ରଶ୍ନ ପଚାରିଛି ଓ ରାଜକନ୍ୟା ସେହି ପ୍ରଶ୍ନର ଯଥାଯଥ ଉତ୍ତର ଦେଇଛି ।

*'ମନ୍ତ୍ରୀଜା ପୁଚ୍ଛିଲା ଜେମାକୁ ଚାରିବର୍ଣ୍ଣେ ଏସନ*
*ଏକାକ୍ଷରେ ଖ୍ୟାତ ଧରଣୀ କରଭୂଷା ତ୍ରିବର୍ଣ୍ଣ ।*
x x x x
*ବ୍ୟସ୍ତେ ବସନ୍ତାଦି ଫୁଲେକ ପୁଣି ତଟର ନାମ*
*ସମସ୍ତ ପଢିଲେ ହୋଇବ ଜଳେଥିଲା କୁସୁମ ।*
*ଚତୁରୀ ତୁରିତେ ଜାଣିଲା ହସି କହିଲା ତହିଁ*
*କଂସ କରୀବର ପରାୟେ ମୋତେ ପରତେ ହୋଇ ।'*
*(ଲାବଣ୍ୟବତୀ)*

ରାଜକୁମାରୀ ଉତ୍ତର ଦେଇଛି ଭିନ୍ନଭଂଗୀରେ । ତା'ର ମତରେ କଂସ କରୀବର ଅର୍ଥାତ୍ ଶବ୍ଦଟି ହେଉଛି କୁବଳୟ । ଏକାକ୍ଷରେ ଅର୍ଥାତ୍ 'କୁ' ଅର୍ଥ ପୃଥିବୀ । କରଭୂଷା ତ୍ରିବର୍ଣ୍ଣ ଅର୍ଥାତ୍ ବଳୟ । ବ୍ୟସ୍ତେ ଅର୍ଥାତ୍ ଓଲଟାଇ ପଢ଼ିଲେ ହେବ ବସନ୍ତ କାଳର କୁସୁମ 'ବକୁଳ' ପୁଣି ତଟର ନାମ ଅର୍ଥାତ୍ କୂଳ ।''

**ବିଜିଗୀଷା :** ଅର୍ଥାତ୍ ଜୟ କରିବାର ଇଚ୍ଛା, ଭଂଜ ନାୟିକା ସ୍ୱକୀୟାନାୟିକା । ସ୍ୱାମୀଙ୍କୁ ସୁକୁମାରତାରେ ଜୟ କରିବା ତାହାର ଇଚ୍ଛା । ରୁଚି, ଶାଳୀନତା ଓ ହୃଦୟବତ୍ତାରେ ନାୟିକା ନାୟକଠାରୁ ପାଦେ ଆଗେଇ ଯାଇଛି ଭଂଜ କାବ୍ୟରେ । ଏଥି ନିମନ୍ତେ ଗୋଟିଏ ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା । 'ବୈଦେହୀଶ ବିଳାସ'ରେ ରାମସୀତାଙ୍କର ଯେଉଁ ପ୍ରଥମ ମିଳନ ରାତ୍ରିର ପରିବେଶ ବର୍ଣ୍ଣନା କରାଯାଉଛି ତହିଁରେ ଥିବା ନୀରବତାର ଘନ ଆସ୍ତରଣକୁ ଭେଦ କରି ଶ୍ରୀରାମଚନ୍ଦ୍ର ପ୍ରଥମେ କହିଛନ୍ତି -

*'ବିଦଗ୍ଧ ଶ୍ରୀରାମଚନ୍ଦ୍ର କହେ*
*ବନ୍ଧୁ ଜୀବନ ଥିବାର ଏ ଦେହେ*
*ବିଳାସିନୀ ନ କରିବି ଆନକୁ*
*ବୋଲି ଛୁଇଁ ଦୀପ ହୁତାଶନକୁ ।'*

ଏକଥା ଶୁଣି ସୀତାଙ୍କ ମନରେ ଭାବାନ୍ତର ଆସିଛି । ଏକାନ୍ତରେ କାନ୍ତ ଅନୁରକ୍ତା ସୀତା ନାରୀସୁଲଭ ଲଜ୍ଜାକୁ ସମ୍ମାନ ଦେଇ କେତେ ଧାଡ଼ି ଲେଖି ରଖି ଦେଇଛନ୍ତି ଶ୍ରୀରାମଚନ୍ଦ୍ରଙ୍କ ନିକଟରେ ।

*'ବଇଦେହୀ କେଶୁଁ କାଢ଼ି କେତକୀ*
*ବର୍ଣ୍ଣ ଲିଖିତ ପୋଛି କସ୍ତୁରୀକି*
*ବଳିନାହିଁ ଆନେ ଆଜଯାଏ ତ*
*ବଳାଇବି ଜନ୍ମେଜନ୍ମେ ମୋ ଚିତ୍ତ*
*ବର ମଣ୍ଡପରୁ ଯିବ ବାହୁଡ଼ି ।*
*ବାର୍ତ୍ତାବହେ ତୁମ୍ଭଙ୍କୁ ଥିବି ଲୋଡ଼ି ।'*

ଶ୍ରୀରାମଚନ୍ଦ୍ର କଥାରେ କହିଲେ ମାତ୍ର ଦେବୀ ସୀତା ଆଉ ପାଦେ ଆଗେଇ ଯାଇ ଲିପିବଦ୍ଧ କରିଦେଲେ ମନର କଥାକୁ କେତକୀ ପାଖୁଡ଼ାରେ । ସେଇ ଜନ୍ମ କେବଳ ନୁହେଁ ଜନ୍ମପରେଜନ୍ମ ସେ ରାମଚନ୍ଦ୍ରଙ୍କୁ ପତିରୂପେ ବରଣ କରିବେ ବୋଲି ପ୍ରତିଶ୍ରୁତି ଦେଲେ । ସମର୍ପଣର ମୂର୍ତ୍ତିମନ୍ତ ପ୍ରତୀକ ଦେବୀ ସୀତା ନିଜର ଚେତନା ତଥା ମାର୍ଜିତ ରୁଚିରେ ଶ୍ରୀରାମଙ୍କୁ ଜୟକରି ଯାଇଛନ୍ତି, ଏଥିରେ ବହୁ ଭାଷଣ ନାହିଁ ।

**ବ୍ୟବହାର :** ବ୍ୟବହାରବିଧି ଭାରତୀୟ ସଂସ୍କୃତିର ଅନ୍ୟତମ ବିଶେଷତ୍ୱ । ପୂର୍ବପୀଢ଼ି ଠାରୁ ପରପୀଢ଼ି ଏହାକୁ ଶିକ୍ଷା କରିଥାନ୍ତି । ଏହାର ପ୍ରଭାବ ସୁଦୂର ପ୍ରସାରୀ । ପାରିବାରିକ ଜୀବନର ସମୃଦ୍ଧି ଓ ସଂହତି, ସାମାଜିକ ଜୀବନର

ବିକାଶ ଓ ସୁଷମ ପରିପ୍ରକାଶ ନିମନ୍ତେ ଏହି ବିଧିର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପାରିବାରିକ ଜୀବନର କେନ୍ଦ୍ରବିନ୍ଦୁ ହେଉଛି ନାରୀ । ଅନ୍ୟମାନଙ୍କ ପ୍ରତି ତାର ଯଥାଯୋଗ୍ୟ ବ୍ୟବହାର ଅଭିନନ୍ଦନୀୟ । ପ୍ରେମସୁଧାନିଧି କାବ୍ୟରୁ ଏହି ପରିପ୍ରେକ୍ଷୀରେ କଥାଟିଏ ସ୍ମରଣକୁ ଆସେ । ଉକ୍ତ କାବ୍ୟରେ ସଖୀମାନେ ପ୍ରେମସୁଧାନିଧିକୁ ମନମୋହିନୀ ବେଶରେ ସଜାଇଦେଇଛନ୍ତି । କାନ୍ତ ସହିତ ପ୍ରଥମ ମିଳନର ପରିବେଶରେ ନେଇ ଛାଡ଼ିଲା ବେଳେ କାନ୍ତସହ ଯଥୋଚିତ ବ୍ୟବହାର ବିଧି ସମ୍ପର୍କରେ ତାକୁ କିଞ୍ଚିତ୍ ସୂଚନା ଦେଇଛନ୍ତି । ଲଜ୍ଜା ନାରୀର ଭୂଷଣ । କାନ୍ତ ଦର୍ଶନରେ ଲଜ୍ଜା ନ ଛାଡ଼ିବାକୁ ଓ ମନ୍ଦ ଦୃଷ୍ଟି ଛାଡ଼ିବାକୁ ସଖୀମାନେ ଉପଦେଶ ଦେଇଛନ୍ତି ।

'ନାଥ ଦରଶନେ ମନ୍ଦାକ୍ଷକୁ ଦୂରକର ।
ମନ୍ଦାକ୍ଷକୁ ଦୂରକରିବାର ଅବେଭାର ଗୋ ।'

ପ୍ରେମସୁଧାନିଧି - ୫/୧୯

ମନ୍ଦାକ୍ଷ ଶବ୍ଦକୁ କବି ଏଠାରେ ମନ୍ଦ ଦୃଷ୍ଟି ଓ ଲଜ୍ଜା ଅର୍ଥରେ ପ୍ରୟୋଗ କରିଛନ୍ତି ।

ଶାଶୁଘରେ ନଣନ୍ଦଙ୍କୁ ଶ୍ରଦ୍ଧା ଓ ସମ୍ମାନ କରିବା ଓ ଶାଶୁଙ୍କୁ ଅଶେଷ ସମ୍ମାନ ଦେବାରେ ଭଞ୍ଜକାବ୍ୟର ନାୟିକା ତ୍ରୁଟି କରିନାହିଁ । ବୋହୂ ହୋଇ ଶାଶୁଘରେ ପାଦ ଦେଉଦେଉ ବାଟ ଓଗାଳି ବସିଥିବା ନଣନ୍ଦଙ୍କୁ ନବବସନଭୂଷଣ ଦେଇ ଖୁସି କରାଇଛି ଏବଂ ଶାଶୁଙ୍କୁ କୃତଜ୍ଞତାଭରା ପ୍ରଣାମ ଜଣାଇଛି । ଲାବଣ୍ୟବତୀ କାବ୍ୟରେ ଏହି କଥାର ଉଲ୍ଲେଖ ରହିଛି ।

'ନନନ୍ଦା ନିଷେଧେ ପୁର ସ୍ୱୟଂ ସୁକୁମାରୀ
ଯତ୍ନ ରତ୍ନ ଭୂଷଣ ବସନେ ବୋଧ କରିଯେ
ଶାଶୁଙ୍କୁ ଓଳଗି ବାସ ନିଉଛାଳି କଲା
ପୁର ସିନ୍ଧୁ ହୁଳହୁଳି ନାଦେ ଉଛୁଳିଲା ଯେ ।'

**କାନ୍ତି ଓ ଦ୍ୟୁତି :** ଭଂଜକାବ୍ୟର ନାୟିକା ଅନୁପମ ସୌନ୍ଦର୍ଯ୍ୟମୟୀ, ସୌଭାଗ୍ୟର ମୂର୍ତ୍ତିମତୀ ମର୍ତ୍ତ୍ୟଲକ୍ଷ୍ମୀ । ତନୁଗଠନର ସୁକୁମାରତା, ଚାଲିର ଅଳିଅଳତା, ହସର ମଧୁମୟତା ଓ କଥାର ଲାଳିତ୍ୟ ତା'ର ଅନନ୍ୟ ସାଧାରଣ । ମର୍ତ୍ତ୍ୟରେ ସେ ଅମର୍ତ୍ତ୍ୟର ଲୀଳା ପ୍ରତିମା, ଆନନ୍ଦର ମନ୍ଦାକିନୀଧାରା, ନାହିଁ ନଥିଲା ନୋହିବ ସୁନ୍ଦରୀ । ତା'ର ଚାଲିରେ ହାତୀ ଲାଜରେ ଭିଜି ଆଡ଼େଇ ଯାଏ, କଟାକ୍ଷ ଛଟାରେ ମୃଗ ହାରିଯାଇ ଜଙ୍ଗଲରେ ଲୁଚିରହେ, ତନୁ କାନ୍ତି ଦେଖି କେତକୀ

ଅପମାନରେ କଣ୍ଟାବେଷ୍ଟିତ ହୁଏ , କଣ୍ଠର ଗଠନ ଚାତୁରୀ ଦେଖି ଶଙ୍ଖ ନିଜେ ସମାନ ନୁହେଁ ବୋଲି ପ୍ରତିଦିନ ପ୍ରଭାତରୁ ଉଦ୍‌ଘୋଷଣା କରେ ।

*'ଝଳି କାନ୍ତିରେ ଲଭିଣ ଭୀତିକି*
*କଲା କଣ୍ଟକ ଦୁର୍ଗକୁ କେତକୀ*
*x x x x*
*କମ୍ବୁ କଣ୍ଠ ଦେଖି ଅତି ଆର୍ତ୍ତିରୁ*
*ସମନୋହେ ବୋଲି ଡାକେ ପ୍ରାତରୁ ।'*

*ଲାବଣ୍ୟବତୀ*

ଅବଶ୍ୟ କାବ୍ୟନାୟିକାର ଦୀପ୍ତି ଓ ଦ୍ୟୁତି ଭାରତୀୟ କାବ୍ୟ ପରଂପରାରେ ବହୁ ପୂର୍ବରୁ ପ୍ରକଟିତ । ସଂସ୍କୃତ ସାହିତ୍ୟରେ ଏହାର ରାଶିରାଶି ପ୍ରମାଣ ରହିଛି । ଉପେନ୍ଦ୍ରଭଂଜ ତାହାକୁ ଅନୁଶୀଳନ ଓ କେତେକ କ୍ଷେତ୍ରରେ ଅନୁସରଣ କରିଛନ୍ତି । ଉଦାହରଣ ରୂପରେ ଗୋଟିଏ ପଦ ଉଦ୍ଧାର କରିବା ଅପ୍ରାସଂଗିକ ହେବନାହିଁ । ଭଂଜ 'ସୁଭଦ୍ରା ପରିଣୟ'ରେ ସୁଭଦ୍ରାଙ୍କର ଚିକ୍କଣ ଶ୍ୟାମଳ କେଶରାଶିର ବର୍ଣ୍ଣନା କରିଛନ୍ତି । ଏଇ ବର୍ଣ୍ଣନା ନିମନ୍ତେ ସେ ନୈଷଧ କାବ୍ୟ ନିକଟରେ ଋଣୀ । ନୈଷଧରେ କୁହାଯାଇଛି –

*'ଅସ୍ୟାଃ କଚାନାଂ ଶିଖିନଶ୍ଚ କିଂନୁ*
*ବିଧିଂ କଳାପୌ ବିମତେରଗାତାମ୍*
*ତେନାୟମେଭିଃ କିମପୂଜି ପୁଷ୍ପୈ –*
*ରଭର୍ଷି ଦତ୍ତ୍ୱା ସ କିମର୍ଦ୍ଧଚନ୍ଦ୍ରମ୍ ।'*

ଉପେନ୍ଦ୍ରଭଂଜ କହିଛନ୍ତି ସୁଭଦ୍ରା ପରିଣୟ କାବ୍ୟରେ –

*'ସୁକୁନ୍ତଳା ସୁକୁନ୍ତଳ ନୀଳକୁଟିଳ କୁନ୍ତଳ*
*ଚିକ୍କଣ ଲମ୍ବ ବିଭିନ୍ନ ବାସନିବାସ*
*ସୁହୃଦ ମୃଢବରହୀ ପୁଚ୍ଛଲକ୍ଷ୍ୟ ହେବାପାଇଁ*
*ଗଲଥା ପାଇଲା ଯାଇଁ ଲୋକେଶ ପାଶ*
*ସେ ଚିହ୍ନ ଚନ୍ଦ୍ରିକା ସମାନ*
*ସଭୟ ହୋଇଲେ ଶୁଣି ଉପମାଗଣ ।'*

**ସ୍ତୁତି :** ପ୍ରଶଂସାମୂଳକ ବାକ୍ୟ ବିଶେଷକୁ ସ୍ତୁତି କୁହାଯାଏ । ଦାମ୍ପତ୍ୟ ଜୀବନର ପରିପୂର୍ଣ୍ଣତା ପାଇଁ ଏହାର ଆବଶ୍ୟକତା ଅଧିକ । ପରସ୍ପର ପ୍ରତି ଆନ୍ତରିକତାର ଏହା ପରିଚାୟକ । ପାରସ୍ପରିକ ଅନୁରକ୍ତି ଓ ସମ୍ମାନବୋଧ ଏହାର ଭିତ୍ତି । ଭଂଜ ନାୟକ କହିଛି –

*'କଲେ ତୁ ଚିର ଅନୁଗ୍ରହ ସୁଦନ୍ତୀ*
*ଅଳତା ଚିତ୍ରେ ଚିତ୍ରକାର ହୁଅନ୍ତି ରେ ।*
*ସେବାରେ ଆଳୀ ଫୁଲ ଗୁଚ୍ଛାରେ ମାଳୀ*
ହୋଇ ଲଗାନ୍ତି କାମ ବଦନେ କାଳି ରେ ।'

(ଲାବଣ୍ୟବତୀ)

ଏପରି ପ୍ରଶଂସାମୂଳକ ବାକ୍ୟର ଯୋଗ୍ୟା ହୋଇଥିବା ଦରକାର ଭଂଜ ନାୟିକା ।

**ମୋଦ :** ନାୟକର ଗୌରବରେ ନାୟିକା ଗୌରବଦୀପ୍ତା । ନାୟିକାର ଗୌରବରେ ନାୟକ ଗୌରବାନ୍ୱିତ । ଏହା ସ୍ୱକୀୟା ପ୍ରେମର ନିର୍ମଳନିଷ୍ଠା ତଥା ପରମ ପ୍ରତିଷ୍ଠାର ଅଧିଷ୍ଠାନ, ତ୍ୟାଗ ଏହାର ମର୍ମବାଣୀ, ଅହଂକୁ ଛାଡ଼ି ପରସ୍ପର ଏଥିରେ ପ୍ରୟାସ କରନ୍ତି ପରସ୍ପରର ସମ୍ମାନ ବୃଦ୍ଧି । ବିଦେଶରେ ଥିବା ନାୟକକୁ କେଉଁ ବିଦ୍ୟାଧରୀ ଧରି ରଖିଲା ବୋଲି ନାୟିକା ମନରେ ଶଙ୍କା ଜାତହୋଇଛି । ସେ ଏଥିରେ ବ୍ୟଥିତ ହୋଇଛି, ମାତ୍ର କ୍ରୋଧାନ୍ୱିତ ହୋଇନାହିଁ । ବରଂ ଚିନ୍ତା କରିଛି ଯେ ନାୟକ ବିଦେଶରୁ ଫେରି ଆସନ୍ତେ ତାଙ୍କ ସହ ଅନୁଚାରୀ ଥିଲେ ମଧ୍ୟ ସେ ତାଙ୍କ ସେବାରେ ଜୀବନ ଅତିବାହିତ କରନ୍ତା । କାମରୁ କ୍ରୋଧ ଉତ୍ପନ୍ନ ହୁଏ । ଏଠାରେ କାମଠାରୁ ପ୍ରେମ ବଳଶାଳୀ ହୋଇଥିବାରୁ ଏବଂ ଆସକ୍ତିଠାରୁ ଅନୁରକ୍ତି ଅଧିକ ରହିଥିବାରୁ ନାୟିକା ମନରେ ଏପରି ଭାବଧାରା ସୃଷ୍ଟିହୋଇଛି । 'ରଖିଲା ମନ ବିଦ୍ୟାଧରୀ ଧରିରେ' ଶୀର୍ଷକ ସଙ୍ଗୀତରେ ସେ କହିଛି -

'ରହନ୍ତି ମୁଁ ସେବାରେ, ଏତେ ଜାଣନ୍ତି ବାରେ,
ସଙ୍ଗତେ ଥିଲେ ଅନୁଚାରୀ ଚାରି ରେ ।
ଉପଇନ୍ଦ୍ର କହଇ, ଲିଭିବା ଯୋଗନାହିଁ,
ମଲିଟି ହେଲା ହରଅରି ଅରିରେ ।।'

**ମଦ :** ମଦକୁ ସାଧାରଣତଃ ଗର୍ବ ବୋଲି ବୁଝାଯାଏ । ମଦ କହିଲେ ମଧ୍ୟ ଆତ୍ମବିଶ୍ୱାସକୁ ବୁଝାଏ । ଭଂଜ ନାୟକ ଆତ୍ମବିଶ୍ୱାସ ରୂପକ ଧନରେ ଧନଶାଳୀ । ନାୟିକା ଉପରେ ତା'ର ଅସୀମ ଆନ୍ତରିକତା । ଭଂଜ ନାୟିକାର ଆତ୍ମବିଶ୍ୱାସ ମଧ୍ୟ ଅନୁରୂପ ଭାବରେ ଗଭୀର ଓ ସୁଦୂର ପ୍ରସାରୀ । ସେ ସ୍ୱକୀୟା ପ୍ରେମକୁ ଉଚ୍ଚାସନ ଦେବା ସଙ୍ଗେସଙ୍ଗେ ଏହାର ବିରୋଧୀ ଶତ ପ୍ରଲୋଭନକୁ ପାଦରେ ଆଡ଼େଇ ଦେଇପାରେ ଏବଂ କହିପାରେ -

*'ବିକଶିଛି କି ଶିଖରୀ ଶିଖେ*
*ବିନା ଜଳରେ ପଦ୍ମ ତା' ସୁଖେ ?*
*ବନ୍ଧନ ଆଶାବନ୍ଧରେ କି କୁଞ୍ଜର*
*ଶୁଣା ପ୍ରବନ୍ଧ କି ମୂର୍ଖ ମୁଖେ*
*ଗୋ ବାମାୟେ ।'*

*(ବୈଦେହୀଶ ବିଳାସ)*

ଆଶାବନ୍ଧ ଯେ ବୁଢ଼ୀଆଣି ସୂତା ଏବଂ କୁଞ୍ଜର ଯେ ହାତୀ । ଉପରୋକ୍ତ ପଦ୍ୟାଂଶରୁ ଭଂଜକାବ୍ୟର ନାୟିକାର ଆତ୍ମବିଶ୍ୱାସର ମହନୀୟତା ଅନୁମେୟ ।

**ସ୍ୱପ୍ନ :** ସ୍ୱପ୍ନ ଏଠାରେ ମଧୁର କଳ୍ପନାର ଅନ୍ୟ ରୂପ । ମଧୁର କଳ୍ପନା ନଥିଲେ ଦାମ୍ପତ୍ୟ ଜୀବନ ପ୍ରୀତିସ୍ନିଗ୍ଧ ହୁଏନାହିଁ । ଜୀବନରେ ଘୋର ବାସ୍ତବତା ରହିବ ହିଁ ରହିବ । ଏଥିସହିତ ମଧୁର କଳ୍ପନାର ସମନ୍ୱୟ ଏକାନ୍ତ ଜରୁରୀ । ସ୍ୱକୀୟା ନାରୀର ମନ କଳ୍ପନାର ନନ୍ଦନବନ । ତାହା ଯେତିକି ସରସ, ସେତିକି ସତେଜ, ଯେତିକି ଶୋଭନୀୟ ସେତିକି ଲୋଭନୀୟ । ସ୍ୱକୀୟା ନାରୀର ପ୍ରାଣକୁଞ୍ଜରେ ସୀମାହୀନ କଦମ୍ବ ରୋମାଞ୍ଚ ସୃଷ୍ଟି ହୁଏ, ଅମରାବତୀର ଅସୀମ-ଲାବଣ୍ୟ ଦିବ୍ୟସୁରଭି ନେଇ ମୂର୍ତ୍ତହୁଏ । ଭଂଜ କାବ୍ୟର ନାୟିକାର ମନ ଶୁଷ୍କ, ନୀରସ, ରିକ୍ତ ବା ତିକ୍ତ ନୁହେଁ । ଭାବପ୍ରବଣତା, ମାଦକତା ତଥା ଏକପତିପ୍ରାଣତାର ସ୍ନେହମଞ୍ଜୁଳ ସ୍ପର୍ଶରେ ଏହା ନିରନ୍ତର ପ୍ରୀତିପୁଲକିତ ।

ମେଘକୁ ଚାହିଁ ଆନମନା ହୋଇଛି ଭଞ୍ଜ ନାୟିକା । ମେଘକୁ ଦୂତକରି ପଠାଇଛି ପ୍ରବାସରେ ଥିବା କାନ୍ତ ନିକଟକୁ । ଏଇ ଅବକାଶରେ କେତେ ସୁଖସ୍ମୃତି ଭାସିଉଠିଛି ତା'ର ନୟନ ପଲକରେ, ମାନସପଟରେ ଆଙ୍କିହୋଇଯାଇଛି କେତେ ଚାରୁଚିତ୍ର ।

ସେ ନିରାଶ ହୋଇନାହିଁ, ଆଶା ରଖିଛି ଯେ ତା' କାନ୍ତ ପ୍ରବାସରୁ ଫେରିବେ, ଆଉ ତାକୁ ସ୍ୱପ୍ନ ମହଲର ରାଜରାଣୀ ରୂପରେ ସଜାଇ ଦେବେ । ଏଥିନିମନ୍ତେ ସେ ବିଭୁ କରୁଣା ପ୍ରାର୍ଥନା କରିଛି ଏବଂ ଆଷାଢ଼ ଶୁକ୍ଳ ବାଣୀରେ ରଚିତ 'ରମଣି ରତନ ମେଘକୁ ଚାହିଁ' ଶୀର୍ଷକ ଚଉପଦୀରେ କହିଛି –

'ସତେକି କରିବେ ହର ଗଉରୀ
ପ୍ରବାସୁ ମୋ କାନ୍ତ ଆସିବେ ଫେରି
କରିବେ ଅଙ୍କ ପଲଙ୍କେ ଶୟନ
ସତେକି ମୋ ଦୁଃଖ ହେବ ମୋଚନ
କରି ରସକେଳି
ଭଣେ ଉପଇନ୍ଦ୍ର ଏ ରସେ ଭାଳି ।'

**ଗତି :** ସ୍ୱକୀୟା ନାୟିକା ହେଉଛି ନାୟକର ଗତିମୁକ୍ତି ଦାୟିନୀ । ସେ କେବଳ ରତିପ୍ରତିମା ନୁହେଁ, ମୁକ୍ତି ପ୍ରଦାୟିନୀ ମଧ୍ୟ । ଲାବଣ୍ୟବତୀ କାବ୍ୟରେ କାବ୍ୟର ନାୟକ ଚନ୍ଦ୍ରଭାନୁ ଶାୟିତା ଲାବଣ୍ୟବତୀକୁ ଅଣିମାଦି ସୁଖଦାୟୀ ବୋଲି କହିବା ଦ୍ୱାରା ଏହା ପ୍ରକଟିତ ହେଉଛି । ନାୟକ କହିଛି ଯେ –

*'ଅଣିମାଦି ସୁଖଦାୟୀ ଶୋଇଅଛି ଅଣିହୋଇ*
*ପଲ୍ୟଙ୍କ ଅଙ୍କରେ ଦିଶେ ଏମନ୍ତ ଶୋଭା*
*ରସାଣରଜତ ବାଢ଼େ କନକଲତା କି ଜଢ଼େ*
*ବିଶଦଘନରେ କି ସେ ଚପଳା ପ୍ରଭା ।*
*ବାମକର କପୋଳ ତଳ,*
*କେନ୍ଦୁପଲ୍ଲବେ ଥୁଆ କି ଫୁଲ୍ଲକମଳ ।'*

*ଲାବଣ୍ୟବତୀ*

ଭାରତୀୟ ସଂସ୍କୃତିକୁ ମର୍ଯ୍ୟାଦା ଦେଇ ଭଂଜକବି ଦିବ୍ୟନାରୀତ୍ୱର ଅବତାରଣା କରିଛନ୍ତି । ନାରୀଜାତିକୁ ଯଥାଯଥ ସମ୍ମାନ ଦେବାର ପରମ୍ପରା ବିଶେଷତଃ ପ୍ରାଚୀନ ଭାରତୀୟ ସଂସ୍କୃତିରେ ଅଧିକ ଥିଲା । ଗୃହର ଲକ୍ଷ୍ମୀବୋଲି ନାରୀମାନଙ୍କୁ ବିଚାର କରାଯାଉଥିଲା । ସେମାନଙ୍କ ମଧ୍ୟରୁ ଅନେକ ଆତ୍ମଶିକ୍ଷାରେ ଶିକ୍ଷିତା ଥିଲେ । ଆତ୍ମସଚେତନତା ଓ ସାଧନା ଯୋଗୁଁ ସେମାନେ ନିଜର ଯଥାର୍ଥ ସ୍ୱରୂପକୁ ଚିହ୍ନି ପାରିଥିଲେ । ଗୃହଥିଲା ତାଙ୍କପାଇଁ ସାଧନାର ସ୍ଥାନ । ପ୍ରାଚୀନ ଭାରତୀୟ ପରିବାରଥିଲା ପ୍ରାୟତଃ ଏକାନ୍ନବର୍ତ୍ତୀ । ଐକ୍ୟତାନର ପ୍ରଭାବରେ ଋଦ୍ଧିମନ୍ତ

ହେଉଥିଲା ଗୃହ ପରିବେଶ । ଅଥର୍ବ ବେଦରୁ ଉଦାହରଣ ଟିଏ ଦେଲେ କଥାଟି ଅଧିକ ସ୍ପଷ୍ଟ ହେବ ।

*'ସମ୍ରାଜ୍ଞେୟଧି ଶଶୁରେଷୁ ସମ୍ରାଜ୍ଞ୍ୟତ ଦେବୃଷୁ ।*
*ନନାନ୍ଦୁଃ ସମ୍ରାଜ୍ଞେୟଧି ସମ୍ରାଜ୍ଞୁ ତ ଶ୍ୱଶ୍ରାଃ ।।'*

*(କାଣ୍ଡ -୧୪, ସୂକ୍ତ ୧, ମନ୍ତ୍ର ୪୪)*

ଅର୍ଥାତ୍ ହେ ବଧୂ ! ଶ୍ୱଶୁରଙ୍କ ମଧରେ ମହାରାଣୀ ହୁଅ, ଦେବରଙ୍କ ମଧରେ ମହାରାଣୀ ହୁଅ, ନଣନ୍ଦଙ୍କ ମଧରେ ମହାରାଣୀ ହୁଅ ଏବଂ ଶାଶୁଙ୍କ ଦୃଷ୍ଟିରେ ମହାରାଣୀ ହୋଇ ରୁହ ।

ମାତୃଭାଷା ପ୍ରତି ଗଭୀର ଶ୍ରଦ୍ଧା ଭଂଜ ସାହିତ୍ୟର ଅନ୍ୟତମ ଅମୂଲ୍ୟ ବିଭବ । ତତ୍କାଳରେ ଓଡ଼ିଆ ଭାଷାପ୍ରତି ସଂସ୍କୃତ ପଣ୍ଡିତମାନଙ୍କର ନାସିକାକୁଞ୍ଚନ ଭଂଜକବିଙ୍କୁ ମର୍ମାହତ କରିଛି । ମାତୃଭାଷାର ମହତ୍ତ୍ୱ ପ୍ରତିପାଦନ ନିମନ୍ତେ ମାତୃଭାଷାରେ ଉଚ୍ଚକୋଟୀର କାବ୍ୟ ରଚନା କରିବା ସଙ୍ଗେସଙ୍ଗେ ଉପେନ୍ଦ୍ରଭଂଜ ସଂସ୍କୃତ ପଣ୍ଡିତମାନଙ୍କୁ ତାହାକୁ ନୈଷଧ କାବ୍ୟ ପ୍ରାୟ ଗ୍ରହଣ କରିବାକୁ ଆହ୍ୱାନ ଦେଇଛନ୍ତି ।

*'ଏ ତ ପରାକୃତ କାବ୍ୟ ଛାନ୍ଦ ପ୍ରାନ୍ତ ସତ*
*ଦୃଷ୍ଟି ଦୃଷ୍ଟାନ୍ତର ଏଥି ଅଛି ବିଶେଷତଃ*
*ଘେନ ନୈଷଧ ପରାୟେ*
*ଉପଇନ୍ଦ୍ର କହେ ବୁଧ ପ୍ରମୋଦ କରାଏ ।'*

*(କୋଟିବ୍ରହ୍ମାଣ୍ଡ ସୁନ୍ଦରୀ)*

ଗୁରୁ ଓ ଗୁରୁଜନଙ୍କ ପ୍ରତି ନମ୍ରତା ଓ ଭକ୍ତି ଭାରତୀୟ ସଂସ୍କୃତିର ଅନ୍ୟତମ ବୈଶିଷ୍ଟ୍ୟ । ଅନ୍ୟକୁ ସମ୍ମାନ ଦେବା ଦ୍ୱାରା ନିଜର ମାନବିକତା ପ୍ରକଟିତ ହୋଇଥାଏ । ତହିଁରୁ ମିଳେ ଗଭୀର ଆତ୍ମସନ୍ତୋଷ । ପୂର୍ବସୂରୀମାନେ ଚିରନମସ୍ୟ ଓ ବନ୍ଦନୀୟ । ତାଙ୍କର ପୂଜା ହିଁ ପୂଜ୍ୟପୂଜା । ପୂଜ୍ୟପୂଜାର ଗୁରୁତ୍ୱ ଅସୀମ । ଯେଉଁ ଜାତି ପୂଜ୍ୟପୂଜା କରି ଶିଖିନାହିଁ, ସେ ଜାତି ପ୍ରଗତି କରିପାରେ ନାହିଁ । ବ୍ୟକ୍ତି ଚେତନାର ଅଗ୍ରଗତି ପାଇଁ ପୂଜ୍ୟପୂଜାର

ଆବଶ୍ୟକତା ଅପରିହାର୍ଯ୍ୟ । ଭଂଜକବି ଭାରତୀୟ ସଂସ୍କୃତିର ଏଇ ବିଶିଷ୍ଟ ବିଭବ ପ୍ରତି ସଚେତନ ଥିବାର ଜଣାଯାଏ ।

*'ବାଲ୍ମୀକି ବ୍ୟାସ କବି ଯହିଁରେ        ମହାକାବ୍ୟ କେ ପୁରାଣ କରେ*
*ମହାନାଟକ ବାତସୁତରେ ହେଲେ ରଚିତା ଯେ*
*ରଚିଲେ କାବ୍ୟ ଯେ କାଳିଦାସେ        ଚମ୍ପୂ ରଚନା ଭୋଜନରେଶେ*
*କୃପାସିନ୍ଧୁଏ ଗୀତ ପ୍ରକାଶେ ଛାଡ଼ିଲି ଚିନ୍ତା ଯେ ।'*
*(ବୈଦେହୀଶ ବିଳାସ)*

କଠିନ ଶବ୍ଦର ପ୍ରୟୋଗ ଏବଂ ବର୍ଣ୍ଣନାରେ ଅତିରଞ୍ଜନର ଭାରରେ ଭଞ୍ଜ ସାହିତ୍ୟ ସପୂର୍ଣ୍ଣ ଭାବରେ ଆକ୍ରାନ୍ତ ବୋଲି କେହିକେହି କହିଥାନ୍ତି । ଏକଥା ଶତ ପ୍ରତିଶତ ଠିକ ନ ହେଲେ ମଧ୍ୟ କେତେକାଂଶରେ ଠିକ, କାରଣ କ୍ଲିଷ୍ଟ ଶବ୍ଦର ପ୍ରୟୋଗ ଓ ଅଳଙ୍କାରର ଅଧିକ ବ୍ୟବହାର ସେ କାଳର ରୁଚି ଥିଲା । ଅବଶ୍ୟ କେତେକ କାବ୍ୟର କେତେକ ଛାନ୍ଦରେ ସହଜ ବୋଧଗମ୍ୟ ଭାଷାର ପ୍ରୟୋଗ ମଧ୍ୟ ରହିଛି । ଅଭିଧାନ ବ୍ୟବହାର ନ କରି ସେହିସବୁ ଛାନ୍ଦଗୁଡ଼ିକୁ ମଧ୍ୟ ପଢ଼ି ବୁଝିହୁଏ ।



# ପଦ୍ୟରେ ଭଂଜଙ୍କ ପ୍ରଶସ୍ତି :

୧. ଉପଇନ୍ଦ୍ର ପଦ ଅଭିମନ୍ୟୁ ମନୁ
ଉପେକ୍ଷିତ ନୋହିବ ତ ଦିନୁଦିନୁ ।

'ବିଦଗ୍ଧ ଚିନ୍ତାମଣି'
ଅଭିମନ୍ୟୁ ସାମନ୍ତ ସିଂହାର

୨. ଭାଗ୍ୟବାନ ବେନିବାଣୀଙ୍କ କୁମର
କବି ବଳଦେବ ଭଂଞ୍ଜ ବୀରବର
କାହିଁ ସେହି, କାହିଁ ମୁହିଁ ଅକିଞ୍ଚନ
ଦେଖୁଥିଲି ସିନା ଜାଗ୍ରତ ସ୍ୱପନ ।

'ଚିଲିକା'
ରାଧାନାଥ ରାୟ

୩. ନିଶୀଥ ସମୟେ ସ୍ୱପ୍ନ ଯୋଗେ ବୀଣାପାଣି
ବୋଇଲେ ଉପେନ୍ଦ୍ର ଭଞ୍ଜ 'ଶୁଣବତ୍ସ ! ବାଣୀ
x x x x
ନାନା ଛନ୍ଦୋବନ୍ଧେ ଗୀତ କରିବୁ ରଚନା
ତୋହ ଯୋଗେ ହେଉ ମାତୃଭାଷା ବିଭୂଷଣା
ଘୋଷିବ ଅକ୍ଷୟକୀର୍ତ୍ତି ଯୁଗଯୁଗାନ୍ତର
ଗାଇବେ ଉତ୍କଳ ଦେଶବାସୀ ନାରୀନର ।

'ଅବସର ବାସରେ'
ଫକୀରମୋହନ ସେନାପତି

୪. ହେ କବି ଶେଖର ଭଞ୍ଜ ବୀରବର !
କୋଟି ଉତ୍କଳ ସନ୍ତାନେ
ଆଜି ନବଯୁଗେ ଧନ୍ୟ ଧନ୍ୟବାଦ
କରୁଛନ୍ତି ତୁମ୍ଭ ନାମେ ।

'ଅବକାଶ ଚିନ୍ତା'
ଉତ୍କଳମଣି ଗୋପବନ୍ଧୁ ଦାସ

୫. ସୁପଣ୍ଡିତ ହେ ଉପେନ୍ଦ୍ର ଭଞ୍ଜ ବୀରବର
କବି କୁଳପତି ତୁମ୍ଭେ ଅଟ ଉତ୍କଳର
ତୁମ୍ଭ ଘେନି ମାତୃଭାଷା ସାହିତ୍ୟ ଶାଳିନୀ
ତୁମ୍ଭ ଯୋଗୁଁ ମାତୃଭାଷା ଆଜି ହେ ମାନିନୀ ।

'ଜନ୍ମଭୂମି'
ନନ୍ଦକିଶୋର ବଳ

୬. ସାରସ୍ୱତ-ରାଜ୍ୟ-ରାଜ-ଚକ୍ରବର୍ତ୍ତୀ
କାବ୍ୟ ତପୋବନ ତପଃସିଦ୍ଧ ଯତି
ଉତ୍କଳ-ସାହିତ୍ୟ-କଳ୍ପଦ୍ରୁମ-ମଞ୍ଚ
କବି-କୁଳଟୀକା ଉପଇନ୍ଦ୍ରଭଂଜ ।

'ଘୁମୁଷର କାବ୍ୟ'
ଚିନ୍ତାମଣି ମହାନ୍ତି

୭. ଯାଇଅଛ ଭଞ୍ଜ କବି ହେ
ଛାଡ଼ି ଏ ଧରାଧାମ
କେତେଶ ବରଷ ଗଲାଣି
ଘୋଷେ ଉତ୍କଳ ନାମ ।
ସେ ଉତ୍କଳ କଳାରାଇକେ
ଉଚ୍ଚେ ରଖିଛ ଟେକି
କପାଳେ ତା' ସ୍ୱର୍ଣ୍ଣ ଅକ୍ଷରେ
ଖ୍ୟାତି ଯାଇଛ ଲେଖି ।
ଏ ତହୁଁ କି ଆଉ ଦିଅନ୍ତ
ନର ଜନମ ଲଭି
ହେ ଭଞ୍ଜ କୁଳଜ ତିଳକ
ଦୀପ୍ତ ଉତ୍କଳ ରବି ।

'ଗୀତାୟନ'
ଗୋଦାବରୀଶ ମିଶ୍ର

୮ ନବ ନୀଳଘନ ଚପଳା ସମାନ
ହସିଲ ତରୁଣ ରାଜିଲ କବି
ନିଦ୍ରିତା ଧରା ନିର୍ବାକ କାରା
ପ୍ରଥମେ ଦିଶିଲା ତୁମରି ଛବି ।

'ଭଞ୍ଜକବି'

ଗୋଦାବରୀଶ ମହାପାତ୍ର

୯. ଶୁଭକ୍ଷଣେ ଜନ୍ମି ହେ କବି ସମ୍ରାଟ
ସାହିତ୍ୟ ରାଜ୍ୟକୁ ଦେଖାଇଲ ବାଟ
ତବ କବିତାର ରସମୟ ଛନ୍ଦ
ଯୋଗୀର ଜୀବିକା ଭୋଗୀର ଆନନ୍ଦ
ରସିକ କୁଳର ହୃଦୟ ମଣ୍ଡନ
ପଣ୍ଡିତ ମଣ୍ଡଳୀ ଜୀବର ଜୀବନ ।

'କବି ସମ୍ରାଟ ଉପେନ୍ଦ୍ର'

ବିଦ୍ୟୁତ୍ ପ୍ରଭା ଦେବୀ

୧୦. କବି-କୁଳକଞ୍ଜ ଉପେନ୍ଦ୍ରଭଞ୍ଜ
ପ୍ରୀତି-କୁସୁମର ଫଗୁଣ କୁଞ୍ଜ
ଜୀବନବେଦର ପ୍ରଣବ ଗାନ
ହୃଦୟବୀଣାର ମଧୁର ତାନ
ତୁମେ ଗଗନର ତାରା ଯେ ।
ସୁନ୍ଦର-ନନ୍ଦନ-ବନ ବିଭୂଷଣ ମଞ୍ଜୁଳ-ମନ୍ଦାର-ଝରା ଯେ ।
କବିକୁଳ ରାଜା ହେ ରାଜେଶ୍ୱର
ସଂଗୀତ ସମ୍ରାଟ ଶବ୍ଦସାଗର
ଆପାଶୋରା ତୁମେ ରସିକ କବି
ଭାରତୀ ଭୁବନେ ଅଭୁଲା ଛବି
ନିଅ ଆମ ପ୍ରଣିପାତ ଯେ ।
ତୁମରି ଆଶିଷେ କୁସୁମିତ ହେଉ ଓଡ଼ିଆ ସାହିତ୍ୟ ପଥ ଯେ ।

'ଶତପ୍ରଣାମ'

ଶରତ ଚନ୍ଦ୍ର ରଥ



# ଭଞ୍ଜ ସଙ୍ଗୀତମାଳା – ଏକ ଅଧ୍ୟୟନ

*"କଜ୍ଜଳକଳା ଆଷାଢୀମେଘ ଯେତେବେଳେ ଆକାଶରେ ଘେରି ଆସୁଥାଏ, କିଆରୀର କର୍ମନିରତ ଚାଷୀ ମଥାରେ ଟୋପିଟୋପି ଅମୃତ ବରଷିଦେଉଥାଏ– ଲଙ୍ଗଳମୁନ ଚଳାଉଚଳାଉ ଛାଏଁଛାଏଁ ତୁଣ୍ଡରୁ ତା'ର ଫୁଟି ଉଠେ– 'ଦେଖିନବ କାଳିକା ବକାଳିକାମାଳିକା ଆଳିକାଳିକା କାନ୍ତ ସ୍ମରି ।*

*କହନ୍ତୁ ତ, ଏଠାରେ ସଂଗୀତ ନା ସାହିତ୍ୟ, କିଏ ଭଞ୍ଜ କବିଙ୍କୁ ସ୍ମରଣ କରାଇଦିଏ – ମୂର୍ଖ ବା ଚାହାଳୀ ପାଠୁଆ ସେଇ ଚାଷୀକୁ ?"*

*( ପ୍ରବନ୍ଧ-ସଙ୍ଗୀତ କବିସମ୍ରାଟ ଭଞ୍ଜକବି)*

*-କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ*

ସମ୍+ଗୈ ଧାତୁରେ 'କ୍ତ' ପ୍ରତ୍ୟୟ ଯୋଗେ ସଂଗୀତ ଶବ୍ଦର ସୃଷ୍ଟି । ଶାସ୍ତ୍ରାନୁସାରେ ନାଟ୍ୟ, ଗୀତ ଓ ବାଦ୍ୟର ପ୍ରତିପାଦକ ଗ୍ରନ୍ଥକୁ ସଂଗୀତ ଗ୍ରନ୍ଥ କୁହାଯାଏ । ଏହା ସାମବେଦର ଅଙ୍ଗ ଗ୍ରନ୍ଥ ବିଶେଷ । କୁହାଯାଏ ବ୍ରହ୍ମାନିଜେ ସାମବେଦରୁ ଏହାକୁ ସଂଗ୍ରହ କରିଛନ୍ତି । ସଂଗୀତ ରତ୍ନାକର ଗ୍ରନ୍ଥରେ ଉଲ୍ଲେଖ କରାଯାଇଛି ଯେ 'ସାମବେଦୋଦିତଂ ଗୀତଂ ସଂଜଗ୍ରାହପିତାମହଃ' । ରାଗ, ସ୍ୱର ଓ ତାଳର ସମନ୍ୱୟରେ ସଂଗୀତର ଆବିର୍ଭାବ ହୁଏ । ଗାନ ଭାସ୍କର ଗ୍ରନ୍ଥରେ କୁହାଯାଇଛି "ରାଗଃ ସ୍ୱରଶ୍ଚତାଳଶ୍ଚ, ତ୍ରିଭିଃ ସଂଗୀତ ମୁଚ୍ୟତେ ।" ସଂଗୀତ ମାନବ ଜାତିର ହୃଦୟରେ ନୂତନ ଚୈତନ୍ୟ ଉତ୍ପନ୍ନ କରିଥାଏ । ଏହା ଯୋଗଠାରୁ କୌଣସି ଗୁଣରେ କମ୍ ନୁହେଁ । ଜାଗତିକ ଜୀବନର କ୍ଲାନ୍ତିକୁ ଦୂରକରେ ସାହିତ୍ୟ, ବିଶେଷତଃ ସାହିତ୍ୟରେ ଥିବା ସଂଗୀତମୟତା । ସଂଗୀତର ସ୍ଥିତି ଭୌତିକ ସ୍ତରର ଉର୍ଦ୍ଧ୍ୱରେ । ତାହା ଦିବ୍ୟଚେତନାର ମାଧୁର୍ଯ୍ୟ, ସୌନ୍ଦର୍ଯ୍ୟ ଓ ଐଶ୍ୱର୍ଯ୍ୟର ତ୍ରିବେଣୀଧାରାରେ ସିକ୍ତ ଏକ ଲଳିତ ବିଭବ । ତା'ର ସୁକୁମାର ସ୍ପର୍ଶରେ ପରିବେଶ ହୁଏ ଅପାର୍ଥିବ ଆନନ୍ଦର ନନ୍ଦନବନ । ପାରିଜାତଫୁଲର ଅନୁପମ ମହକରେ ମହକି ଉଠେ ସେ ପରିବେଶର ପ୍ରତି କୋଣଅନୁକୋଣ ।

ଗାନରୁ ଆଉ ଅଧିକ ପୁଲକଯୁକ୍ତ ଅନୁଭବ ନାହିଁ ବୋଲି କୁହାଯାଏ । 'ସଂଗୀତ ସାଗର' ଗ୍ରନ୍ଥ ଅନୁସାରେ –

*'ପୂଜା କୋଟି ଗୁଣଂ ଧ୍ୟାନଂ ଧ୍ୟାନାତ୍ କୋଟି ଗୁଣଂଜପଃ*
*ଜପାତ୍ କୋଟି ଗୁଣଂ ଗାନଂ, ଗାନାତ୍ ପରଂତରଂ ନହି ।'*

ସଂଗୀତର ପ୍ରଭାବରେ ପ୍ରଭାବିତ ହୋଇ ଗାୟକ ତଥା ଶ୍ରୋତାଙ୍କର ଚିତ୍ତବୃତ୍ତି ଦୂରତମ ଦିଗ୍‌ବଳୟରୁ ଅଧିକ ଦୂରତ୍ୱକୁ, ଉଚ୍ଚତମ ପର୍ବତମାଳାରୁ ଅଧିକ ଉଚ୍ଚତାକୁ, ଗଭୀରତମ ମହାସାଗରରୁ ଅଧିକ ଗଭୀରତାକୁ ପ୍ରସାରିତ ହୋଇଯାଏ । ଅଶାନ୍ତ ମନରେ ଶାନ୍ତିର ପ୍ରଲେପ ଆଣିବା, ଭାରାକ୍ରାନ୍ତ ବାତାବରଣକୁ ଲଘୁ କରିବା ନିମନ୍ତେ ସଂଗୀତର ମହତ୍ତ୍ୱ ଅବିସମ୍ବାଦିତ । ସଂଗୀତ ପ୍ରାୟତଃ ଉଚ୍ଚ ପ୍ରାଣିକ ଜଗତରୁ ଅବତରି ଆସେ । ଅନ୍ତର୍ଜୀବନ ସହିତ ଏହାର ସଂପର୍କ ନିବିଡ଼ । ଯଦି ଉଚିତ ଧାରାରେ ସଂଗୀତ ଗାନ କରାଯାଏ ଓ ଶ୍ରବଣ କରାଯାଏ, ତେବେ ଏହା ଦ୍ୱାରା ସଂଗୀତଶିକ୍ଷୀ ଓ ଶ୍ରୋତା ଉଭୟଙ୍କର ଚେତନାର ବିକାଶ ଘଟେ । କେତେକ ସ୍ୱତନ୍ତ୍ର ଅନୁଭବ, ଭାବପ୍ରବଣତା, ଆସ୍ପୃହା ତଥା ଚିନ୍ତାଧାରା ସଂଗୀତ ମାଧ୍ୟମରେ ରୂପପ୍ରାପ୍ତ ହୋଇପାରେ । ରାଗରାଗିଣୀର ଝଙ୍କାରରେ ବାତାବରଣରେ ପ୍ରଭାବଶାଳୀ ଭାବତରଙ୍ଗ ଭରିଯାଏ ଏବଂ ସେହି ଭାବତରଙ୍ଗରୁ ସୃଷ୍ଟି ହୁଏ ମୋହନୀୟ ଓ ମହନୀୟ ଭିନ୍ନାଭିନ୍ନ ଅନୁଭବ । ବିଭିନ୍ନ ରାଗର ଭିନ୍ନଭିନ୍ନ ପ୍ରଭାବ ସମ୍ପର୍କରେ ଶାସ୍ତ୍ରରେ ଉଲ୍ଲେଖ କରାଯାଇଛି । ମେଘମହ୍ଲାର ରାଗ ଗାୟନ ଯୋଗୁ ପରିବେଶରେ ଧାରା ବର୍ଷଣର ଅନୁଭୂତି ମୂର୍ତ୍ତ ହୁଏ, ଦୀପକ ରାଗର ଗାନ ମାଧ୍ୟମରେ ଏପରି ଅନୁଭୂତି ହୁଏ ଯେ ସତେ ଅବା ଅନ୍ଧାରରେ ଦୀପ ଜଳିଉଠି ବାତାବରଣକୁ ସରସ ଓ ସତେଜ କରିଦେଉଛି । ହିନ୍ଦୋଳ ରାଗ ମାଧ୍ୟମରେ ନବବସନ୍ତର ପ୍ରଫୁଲ୍ଲତାକୁ ଅନୁଭବ କରିହୁଏ ।

ମଣିଷ ପାଇଁ ସଂଗୀତର ଆବେଦନ ଅନିର୍ବଚନୀୟ । ମନକୁ ପ୍ରସନ୍ନ ରଖିବା ପାଇଁ, ମନରୁ ଯାନ୍ତ୍ରିକ ଚିନ୍ତାର ଅପସାରଣ ପାଇଁ ସର୍ବୋପରି ଭଗବତ ସତ୍ତାର ସନ୍ଧାନ ନିମନ୍ତେ ପ୍ରେରଣା ଦେବାପାଇଁ ସଂଗୀତ ଭରିଦିଏ ସୀମାହୀନ ଶକ୍ତି ଓ ସାମର୍ଥ୍ୟ । ଶ୍ରୀମାଙ୍କ ଭାଷାରେ, ***"The role of music lies in helping the consciousness to uplift itself towards the spiritual heights"*** ।

ଚେତନାର ପରିବର୍ତ୍ତନରେ ବ୍ୟକ୍ତିର ଅନେକ ସମସ୍ୟାର ସମାଧାନ ସମ୍ଭବ ହୁଏ । ଏପରିକି ଶାରୀରିକ ଅସୁସ୍ଥତା ମଧ୍ୟ କେତେକାଂଶରେ ଦୂର ହୁଏ । ବାଙ୍ଗାଲୋରର ପ୍ରତିଷ୍ଠିତ ସଂଗୀତଜ୍ଞ ଡଃ ଏଲ୍. ସୁବ୍ରମଣ୍ୟମ୍ ଏବଂ ଗଣପତି ସଚ୍ଚିଦାନନ୍ଦ ସ୍ୱାମୀ ଏ ଦିଗରେ ଗବେଷଣା କରି ବହୁ ସଫଳତା ଅର୍ଜନ କରିଛନ୍ତି । ସେମାନଙ୍କ ମତାନୁସାରେ କେତେକ ସାଂଗୀତିକ ଧ୍ୱନିତରଙ୍ଗ ମଣିଷର କୋଷକୁ ପ୍ରଭାବିତ କରି କେତେକ ରୋଗଗ୍ରସ୍ତ କୋଷକୁ ସୁସ୍ଥ କରିଦେଇପାରେ । କେତେଜଣ ମାନସିକ ରୋଗଗ୍ରସ୍ତ ବ୍ୟକ୍ତି, ଶାରୀରିକ ପରିଶ୍ରମଜନିତ ରୋଗାକ୍ରାନ୍ତ ବ୍ୟକ୍ତି ଏବଂ ମଧୁମେହ ରୋଗୀଙ୍କୁ ପ୍ରାୟ ୬ ମାସ ଗୀତ ଶୁଣାଇ ସେମାନେ ବେଶ୍ ସଫଳତା ଲାଭ କରିଛନ୍ତି । ଏ ଦିଗରେ ଅଧିକରୁ ଅଧିକ ଗବେଷଣା ଜାରିରହିଛି । ଆଉ କେତେକ ରାଗ ଗବେଷକଙ୍କ ମତରେ ଆଶାବରୀ ରାଗର ପ୍ରଭାବରେ ରକ୍ତ ଅଶୁଦ୍ଧତା ଜନିତ କିଛି ରୋଗ ଦୂର ହୋଇପାରେ, ଭୈରବ ରାଗର ପ୍ରଭାବରେ କାଶ, ଶ୍ୱାସ ତଥା ଶ୍ୱାସନଳୀର ପ୍ରଦାହ ପ୍ରଶମିତ ହୋଇପାରେ ।

ସଂଗୀତର ଅନୁପମ ମନମୋହିନୀ ଶକ୍ତି ରହିଛି ଯାହାକି ବୈଜ୍ଞାନିକମାନଙ୍କୁ ବହୁଭାବରେ ଆକୃଷ୍ଟ କରିପାରେ । ବିଶ୍ୱବିଖ୍ୟାତ ବୈଜ୍ଞାନିକ ଆଲବର୍ଟ ଆଇନଷ୍ଟାଇନ୍‌ଙ୍କର ବେହେଲାବାଦନରେ ପାରଦର୍ଶିତା ଥିଲା । ଜର୍ମାନୀର ବୈଜ୍ଞାନିକ ସାର୍ ଜନ ଫ୍ରେଡ଼ରିକ୍ ୱିଲିୟମ୍ ହରସ୍କେଲ ଏକାଧାରରେ ଥିଲେ ବୈଜ୍ଞାନିକ ଓ ସଂଗୀତଜ୍ଞ । ଦିନସାରା ସେ ଦୂରବୀକ୍ଷଣ ଯନ୍ତ୍ର ପ୍ରସ୍ତୁତିରେ ମନୋନିବେଶ କରିବା ସହ ସନ୍ଧ୍ୟାରେ ସଂଗୀତ ଆସରରେ ଯୋଗ ଦେଉଥିଲେ, ରାତିରେ ଆକାଶକୁ ନିରୀକ୍ଷଣ କରୁଥିଲେ । ନିଜ ବୈଜ୍ଞାନିକ ଅନୁଶୀଳନ ଓ ଅନୁଧ୍ୟାନର ଫଳ ସ୍ୱରୂପ ସେ ୟୁରାନସ୍ ଗ୍ରହ ସହିତ ୨୫୦୦ ନିହାରିକା, ୮୦୬ ଯୁଗ୍ମ ତାରକା ଆବିଷ୍କାର କରିଥିଲେ । ନୋବେଲ ପୁରସ୍କାର ବିଜେତା ଭାରତୀୟ ବୈଜ୍ଞାନିକ ଚନ୍ଦ୍ରଶେଖର ଭେଙ୍କଟରମଣ ସଙ୍ଗୀତପ୍ରେମୀ ଥିଲେ । ବିଶେଷତଃ କର୍ଣ୍ଣାଟକୀ ସଂଗୀତର ସେ ଥିଲେ ଜଣେ ବିଶିଷ୍ଟ ଗ୍ରାହକ । ମୃଦଙ୍ଗବାଦ୍ୟ ଥିଲା ତାଙ୍କର ଅତି ପ୍ରିୟ ବାଦ୍ୟ । ସଙ୍ଗୀତ ଶୁଣି ସେ ଅନ୍ତର୍ମନର ଗଭୀରତମ ଗଭୀରତାକୁ ଚାଲିଯାଉଥିଲେ ।

ପରିବେଶରେ ସୌନ୍ଦର୍ଯ୍ୟ ବୋଧ, ଅଧ୍ୟାତ୍ମ ଚେତନା ତଥା ମାନବିକ ମୂଲ୍ୟବୋଧ ଆଣିବାରେ ସଂଗୀତର ଭୂମିକା ଅସାଧାରଣ । ସ୍ୱାମୀ ପ୍ରଜ୍ଞାନାନନ୍ଦ

ସ୍ୱରଚିତ Historical Development of Indian Music ପୁସ୍ତକରେ ଉଲ୍ଲେଖ କରିଛନ୍ତି, *"Music can be said to be the sweet and soothing sounds that vibrate and create an aesthetic feeling and beauties of the nature."* । ଯେତେ କଳାତ୍ମକ ବିଭବ ଅଛି ତହିଁରୁ ସଂଗୀତ ହେଉଛି ଅଧିକ ସୂକ୍ଷ୍ମତମ ବିଭବ, ଯାହାକି ମନୁଷ୍ୟ ପାଇଁ ଆଣିଦିଏ ଅଗ୍ରଗତି କନ୍ଥେ ଅନେକ ପ୍ରେରଣା ଓ ଆପଦ ବିପଦରେ ଅଶେଷ ସାନ୍ତ୍ୱନା । ଉପରୋକ୍ତ ପୁସ୍ତକରେ ସ୍ୱାମୀ ପ୍ରଜ୍ଞାନାନନ୍ଦ କହିଛନ୍ତି – *"Music is recognized as the greatest and finest art that brings permanent peace and solace to the human world."* ଅତଏବ ସଂଗୀତ ଆମୋଦିତ କରେ, ଆଲୋକିତ କରେ, ଶାରୀରିକ ଯନ୍ତ୍ରଣାକୁ ଅବଲୁପ୍ତ କରେ ସର୍ବୋପରି ଆନ୍ତର ଚେତନାକୁ ପରିବ୍ୟାପ୍ତ କରେ ।

ଓଡ଼ିଶାର ମନ୍ଦିର ମାଳାରେ ଅଙ୍କିତ ନୃତ୍ୟରତା ନର୍ତ୍ତକୀଙ୍କର ଶତଶତ ଚିତ୍ର ଓଡ଼ିଶାରେ ସଙ୍ଗୀତପ୍ରିୟତାର ବଳିଷ୍ଠ ପ୍ରମାଣ ଦିଏ । ଅତୀତରେ ରାଣୀ ଓ ରାଜକୁମାରୀମାନେ ସଙ୍ଗୀତଶାସ୍ତ୍ର ବିଶାରଦା ଥିଲେ, ଏହା ମଧ୍ୟ ଯୁଗୀୟ କାବ୍ୟମାନଙ୍କରୁ ଜଣାଯାଏ ଓଡ଼ିଶାରେ ଯେ ସଙ୍ଗୀତର ଚର୍ଚ୍ଚା କେବଳ ଥିଲା ତାହା ନୁହେଁ, ସଙ୍ଗୀତ ସଂପର୍କିତ କେତେକ ତାତ୍ତ୍ୱିକ ଗ୍ରନ୍ଥ ମଧ୍ୟ ଏଠାରେ ରଚିତ ହୋଇଥିଲା । ଏଥି ମଧ୍ୟରେ କୃଷ୍ଣଦାସ ବଡ଼ଜେନା ମହାପାତ୍ରଙ୍କ 'ଗୀତ ପ୍ରକାଶ' ହଳଧର ମିଶ୍ରଙ୍କ 'ସଙ୍ଗୀତ କଳ୍ପଲତା', ନାରାୟଣ ମିଶ୍ରଙ୍କ 'ସଙ୍ଗୀତ ସରଣୀ' ଅନ୍ତର୍ଭୁକ୍ତ । ଏହା ଉଲ୍ଲେଖଯୋଗ୍ୟ ଯେ ଓଡ଼ିଶାରେ ସଂସ୍କୃତ ଶ୍ଳୋକକୁ ଆବୃତ୍ତି ପରିବର୍ତ୍ତେ ଗାନ କରାଯାଏ । ଉଚ୍ଚକୋଟୀର ସଂସ୍କୃତ କାବ୍ୟ ଓ ମହାକାବ୍ୟମାନଙ୍କୁ ପଣ୍ଡିତମଣ୍ଡଳୀ ଏଠାରେ ସୁଲଳିତ ସ୍ୱରରେ ଗାନ କରିଥାନ୍ତି ।

ମଧ୍ୟଯୁଗ ଓଡ଼ିଆ ସାହିତ୍ୟର ମୁଖ୍ୟ ବିଭବ ଥିଲା ସଂଗୀତ । ସଂଗୀତ ବିହୀନ ସାହିତ୍ୟର ପରିକଳ୍ପନା ସେତେବେଳେ ଏକପ୍ରକାର ଅସମ୍ଭବ ଥିଲା । କଥାବସ୍ତୁ ଯାହା ହେଉନା କାହିଁକି ସ୍ୱର, ତାଳ, ରାଗ ଓ ଲୟର ଚମତ୍କାରିତା ଯୋଗୁ ଅତୀତରୁ ଅଦ୍ୟାବଧି ଏ ସାହିତ୍ୟ ଆଦୃତ । ତତ୍କାଳୀନ କବିକୁଳ ସଂଗୀତ ଶାସ୍ତ୍ରରେ ଦକ୍ଷ ଥିଲେ । ମଧ୍ୟଯୁଗ ଓଡ଼ିଆ ସାହିତ୍ୟର ଲବ୍ଧପ୍ରତିଷ୍ଠ ସ୍ରଷ୍ଟା ଉପେନ୍ଦ୍ରଭଂଞ୍ଜ କେବଳ କବିସମ୍ରାଟ ନଥିଲେ, ଥିଲେ ମଧ୍ୟ ସଂଗୀତ ସମ୍ରାଟ । ସାଙ୍ଗୀତିକ ଲାବଣ୍ୟର ମଧୁଲହରୀରେ ସିକ୍ତ ତାଙ୍କ ରଚନାମାଳାର

ବେଳାଭୂମି ।ତାଙ୍କ ରଚିତ କାବ୍ୟଗୁଡ଼ିକ ଯେପରି ହୃଦୟଗ୍ରାହୀ, ସଂଗୀତଗୁଡ଼ିକ ସେପରି ଶ୍ରୁତିମଧୁର ଓ ମର୍ମସ୍ପର୍ଶୀ ।

ସାଙ୍ଗୀତିକତାର ମନମୋହିନୀ ସ୍ପର୍ଶ ସହିତ ପ୍ରୀତିପ୍ରବଣତାର ମଧୁମଞ୍ଜୁଳ ଅଭିବ୍ୟକ୍ତି ଭଂଜସଂଗୀତକୁ କରିଛି ଶୋଭାଶ୍ରୀ ବିମଣ୍ଡିତ । ଯେତେଥର ଶୁଣିଲେ ବିରକ୍ତି ଆସେ ନାହିଁ, ବରଂ ପୁନଃପୁନଃ ଶୁଣିବାର ଇଚ୍ଛା ଜାଗ୍ରତ ହୁଏ । ଆଦିରସର ଅଭିଷେକ ଓ ନିରାଜନା ବହୁ ଭଂଜ ସଂଗୀତରେ ପରିଦୃଷ୍ଟ ହୁଏ । ନବରସ ଭିତରେ ଆଦିରସ ଶ୍ରେଷ୍ଠ ବୋଲି କୁହାଯାଇଛି ।

*'ଶୃଙ୍ଗାର ଏବ ପ୍ରଥମଃ ପରପ୍ରହ୍ଲାଦନୋ ରସଃ*
*ତନ୍ମୟଂ କାବ୍ୟମାଶ୍ରିତ୍ୟ ମାଧୁର୍ଯ୍ୟଂ ପ୍ରତିତିଷ୍ଠତେ ।'*

ଭାରତ ବର୍ଷରେ ପ୍ରେମର ପବିତ୍ରତା କାଳେକାଳେ ସୁରକ୍ଷିତ । ଏହା ଶାସ୍ତ୍ରସମ୍ମତ ଚତୁର୍ବର୍ଗରୁ ଏକ ବର୍ଗ । ଏ ଦିଗରେ ସଂସ୍କୃତ ସାହିତ୍ୟର ପ୍ରାଚୀନ ସ୍ରଷ୍ଟାଗଣ ଯେଉଁ ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି, ତାହାର ତୁଳନା ନାହିଁ । କବିଗୁରୁ କାଳିଦାସଙ୍କ ସମେତ ଶ୍ରୀହର୍ଷ ଓ ବିଶାଖାଦତ୍ତ ଏ ଦିଗରେ ଏକ ଏକ ସୁବର୍ଣ୍ଣକୀର୍ତ୍ତିସ୍ତମ୍ଭ । ଭାରତବର୍ଷରେ ପାଳିତ ମଦନ ଉତ୍ସବ ଓ ବସନ୍ତ ଉତ୍ସବର ପରଂପରା ପ୍ରେମର ଫଗୁ ବିଞ୍ଚିଦିଏ, ଜନମାନସରେ ପବିତ୍ରତାର ଗଙ୍ଗାଜଳ ସିଞ୍ଚିଦିଏ । ପ୍ରେମରେ ପ୍ରତିଶୋଧ ନଥାଏ, ଥାଏ ଅସରନ୍ତି ସହିଷ୍ଣୁତା । ପ୍ରେମ ଶାଶ୍ୱତ, ଅକ୍ଷୟ, ଅମର । ପ୍ରେମ କେବଳ ଦିଏ, ବିନିମୟରେ କିଛି ଦାବି କରେ ନାହିଁ ।

ଭଂଜ ସଂଗୀତର ଶୃଙ୍ଗାରରସ ମୁଖ୍ୟତଃ ସ୍ୱକୀୟା ପ୍ରେମ ବା ଦାମ୍ପତ୍ୟ ପ୍ରେମର ଭିତ୍ତିରେ ପ୍ରତିଷ୍ଠିତ । ଦାମ୍ପତ୍ୟ ପ୍ରେମ କହିଲେ ଦୈହିକ ପ୍ରେମ ସହିତ ମାନସିକ ପ୍ରେମର ସମନ୍ୱୟକୁ ବୁଝାଏ । ମାନସିକ ପ୍ରେମ ହେଉଛି ଦୈହିକ ପ୍ରେମର ଉତ୍ସ । ଏହି ଉତ୍ସରୁ ବିଚ୍ଛିନ୍ନ ହୋଇଗଲେ ପ୍ରେମ ବିକୃତ ହୋଇ କାମରେ ପରିଣତ ହୋଇଯାଏ । ପାରିବାରିକ ଜୀବନକୁ ସୁଦୃଢ଼ ତଥା ସୁସ୍ଥ କରିବା ପାଇଁ ଦାମ୍ପତ୍ୟ ଜୀବନ ଅନୁକୂଳ ଆବେଶ ସୃଷ୍ଟି କରିଥାଏ । ପତି ଓ ପତ୍ନୀ ପରସ୍ପର ପ୍ରତି ଅଧିକରୁ ଅଧିକ ଆକୃଷ୍ଟ ହୋଇ ସ୍ୱର୍ଗ ସୁଖ ଲାଭ କରିଥାନ୍ତି, ମନରେ ଥାଏ ଅନାବିଳ ଆନନ୍ଦର ମଧୁର ମୂର୍ଚ୍ଛନା । ଏହି ପ୍ରେମର ବିଜୟବାନା ଉଡ଼ିଛି ପ୍ରାୟ ପ୍ରତ୍ୟେକ ଭଞ୍ଜସଙ୍ଗୀତରେ । ପ୍ରେମ ହିଁ ଜୀବନ,

ଜୀବନ ହିଁ ପ୍ରେମ । ଏ ଉକ୍ତିର ସତ୍ୟତା ଏଥିରେ ଉପଲବ୍ଧ । ପ୍ରେମର ଫୁଲଫୁଟେ, ପ୍ରେମରେ ଝରଣା ଝରେ, ପ୍ରେମରେ କୋଇଲିଗାଏ, ପ୍ରେମରେ ମୟୂର ନାଚେ, ପ୍ରେମ ବିନା ସବୁ ଶୁଷ୍କ, ସବୁ ନୀରସ । ଯେଉଁଠାରେ ପ୍ରେମ ନାହିଁ ବା ପ୍ରକାଶିତ ହେବାକୁ ଚାହେଁ ନାହିଁ, ସେଠାରେ ଆସୁରିକତାର ରାଜତ୍ୱ ପ୍ରତିଷ୍ଠିତ ହୋଇଥାଏ । ଭଞ୍ଜ ଥିଲେ ପ୍ରେମର ପୂଜାରୀ । ପ୍ରେମର ନିରାଜନା ନିମିତ୍ତ ତାଙ୍କର ପ୍ରାୟ ପ୍ରତ୍ୟେକ ସଂଗୀତ ଏକଏକ ପୂଜାଫୁଲ । ଭିନ୍ନ ଭିନ୍ନ ରାଗିଣୀରେ ରଚିତ ତାଙ୍କର ପ୍ରତ୍ୟେକ ସଙ୍ଗୀତ ଅସୀମ ଆକର୍ଷଣର ଅଧିକାରୀ । ଯହିଁରେ ରହିଛି ଝରାଶିଶିରର ସୁରମ୍ୟସ୍ନିଗ୍ଧତା ଓ ମଳୟ ପବନର ଅନୁପମ ମାଦକତା ।

ମୁଖ୍ୟତଃ କଥାବସ୍ତୁ ଦୃଷ୍ଟିରୁ ଭଞ୍ଜସଙ୍ଗୀତକୁ ତିନି ଭାଗରେ ବିଭକ୍ତ କରାଯାଇପାରେ । ଯଥା – (୧) ଶ୍ରୀକୃଷ୍ଣଲୀଳାଭିତ୍ତିକ ସଙ୍ଗୀତ,
(୨) ଲୌକିକ ପ୍ରଣୟଭିତ୍ତିକ ସଙ୍ଗୀତ ।
(୩) ଭକ୍ତିଭିତ୍ତିକ ସଙ୍ଗୀତ

## (୧) ଶ୍ରୀକୃଷ୍ଣଲୀଳାଭିତ୍ତିକ ସଙ୍ଗୀତ ।

ଶ୍ରୀକୃଷ୍ଣଙ୍କର ମାନବାୟିତ ରୂପ ଓ ତାହାର ପରିଚର୍ଯ୍ୟା ପ୍ରସଙ୍ଗ 'ମଲ୍ଲୀମାଳ ଶ୍ୟାମକୁ ଦେବି' ଶୀର୍ଷକ ସଙ୍ଗୀତରେ ବର୍ଣ୍ଣିତ । ଦେବତାଙ୍କୁ ମାନବ କରିବାର ଅମଳିନ ପ୍ରୟାସ 'ଯଥା ଦେବେ ତଥା ଦେହେ' ନ୍ୟାୟରେ ଏଥିରେ ମୂର୍ତ୍ତିମନ୍ତ । ଏଥିରେ ଶ୍ରୀକୃଷ୍ଣଙ୍କୁ ମଲ୍ଲୀମାଳ ଦେଇ ପାନଦେଇ ବିମୋହିତ କରି ନପାରିଲେ ଶିବଙ୍କ ପାଦରେ ନାୟିକାର ଶରଣ ନେବା ପ୍ରସଙ୍ଗ ଭିତରେ ଯେଉଁ ପ୍ରୀତିପ୍ରବଣତା ପ୍ରକଟିତ ହୋଇଛି ତାହାର ତୁଳନା ନାହିଁ । ଶ୍ରୀକୃଷ୍ଣଙ୍କ ଅଙ୍ଗରୁ ଝରିପଡୁଥିବା ଝାଳକୁ ନିଜ ପଣତ କାନିରେ ପୋଛି ଦେବାପାଇଁ ସେଇ ନାୟିକା ମନରେ ଅଶେଷ ଆଗ୍ରହ ରହିଛି ।

*'ତା ଅଙ୍ଗରୁ ସ୍ୱେଦବାରି, ଯଦି ପଡୁଥିବ ଝରି*
*ମୋ ଦୃଷ୍ଟି ପଡ଼ନ୍ତେ କାନି ପଣତରେ ପୋଛିବି ।'*

ଅନ୍ୟ ଏକ ସଙ୍ଗୀତ 'କହ କି କରିବି ବୁଦ୍ଧି ଦିଶୁନାହିଁ' ନାୟିକାର ବିରହାନୁଚିନ୍ତାକୁ ଭିତ୍ତିକରି ବିରଚିତ । କଲ୍ୟାଣ ରାଗ ଆଧାରିତ ଏହି ସଙ୍ଗୀତରେ ବିପ୍ରଲମ୍ଭ ଶୃଙ୍ଗାରର ଘନୀଭୂତ ଆବେଗ ପରିଲକ୍ଷିତ ।

ଶ୍ରୀମତୀଙ୍କ କଣ୍ଠରେ କବି କହନ୍ତି–

*'ଶେଯାଇ କୁସୁମ ଶେଯ, ସିଞ୍ଚୁ ତହିଁ ବିଧୁରଜ*
*କୁଞ୍ଚୁ ଝୀନ ବାସ ଆଜ , ସିଞ୍ଚୁଲି ବରଜି ଲାଜ*
*ମୁଞ୍ଜିମତେ ଘୁଞ୍ଚୁଲେ କି ପାଇଁ ଗୋ ପ୍ରିୟ ସହି ! '*

କୃଷ୍ଣପ୍ରୀତିରେସ୍ନିଗ୍ଧ ଅନ୍ୟଏକ ସଙ୍ଗୀତ ହେଉଛି 'ନୂଆ ନୂଆ ଦିନା କେତେ ମୋର ଅନୁରାଗ ଯେତେ'। ଏଥିରେ ଶ୍ୟାମ ବନ୍ଧୁଙ୍କ ପ୍ରୀତିର ସ୍ୱରୂପ ଅଙ୍କିତ ।

*'ଶ୍ୟାମ ବନ୍ଧୁ ପ୍ରୀତି ସେହିପରି*
*ଭାଙ୍ଗିଗଲେ ଆଉ ଯୋଡ଼ିତ ନ ପାରି ରେ ।'*

ଭଞ୍ଜକବି ବିରଚିତ ଅନ୍ୟ ଏକ ସଙ୍ଗୀତରେ ଦୂତୀ ପ୍ରତି ରାଧାଙ୍କର ଅଭିଯୋଗ ତଥା ଅଭିମାନ ଭିତ୍ତିକ ଉକ୍ତି ଉପସ୍ଥାପିତ । ଶ୍ୟାମନାଗର କୁଞ୍ଜକୁ ନ ଆସିଥିବାରୁ ରାଧାଙ୍କ ଅନ୍ତର ପ୍ରତିକ୍ରିୟାରେ ଜର୍ଜରିତ । ଶ୍ୟାମ ଶିଖଣ୍ଡଚୂଳ ବୃତ୍ତରେ ରଚିତ 'ଖାଇ ମରିବି ବିଷ' ଶୀର୍ଷକ ଉକ୍ତ ସଙ୍ଗୀତରେ ପ୍ରାଣସଖୀକୁ ହୃଦୟ ବ୍ୟଥା ଜଣାଇ ରାଧା କହନ୍ତି ଯେ ସେ ଫୁଲଶେଯ ସଜାଇ ଅପେକ୍ଷା କରିଥିଲେ ମଧ୍ୟ କୃଷ୍ଣ ତାଙ୍କ ପୁରକୁ ଆସିଲେ ନାହିଁ । ନିଜ ପରି ଆଉ ଦୁଃଖୀ ସୃଷ୍ଟିରେ ନଥିବେ, ଏପରି କହି ନିଜକୁ ଧିକ୍କାର କରିଛନ୍ତି ରାଧା ।

*'ଖିତିରେ ନାହିଁ କେହି ମୋ ପରି ଦୁଃଖୀ*
*ଖଳ ଫାନ୍ଦେ ପଡ଼ିଲି ସର୍ବ ଉପେକ୍ଷି ।'*

ପରଜ-ଏକତାଳିରେ ରଚିତ 'ସଙ୍ଗାତ ମନାକଲିପରାତତେ' ଶୀର୍ଷକ ସଙ୍ଗୀତରେ ରାଧାଙ୍କ ପ୍ରତି ସଖୀର ବ୍ୟାଜ ନିନ୍ଦା ମିଶ୍ରିତ ସହାନୁଭୂତି ଉପସ୍ଥାପିତ । ସଖୀ କହିଛି ଯେ ମନା ନମାନି ଶ୍ରୀକୃଷ୍ଣଙ୍କୁ ବାରମ୍ବାର ଅନାଇ ଯେଉଁ ପରମାଦ ମଞ୍ଜିକୁ ରାଧା ନିଜ ଅନ୍ତରରେ ପୋତି ଦେଲେ ତହିଁରୁ ଆନନ୍ଦ ପ୍ରାପ୍ତିର ଆଶା କରିବା ବିଡ଼ମ୍ବନା ନୁହେଁ କି ? କଥା ଅଟକି ରହିନି, ଗୋପକଟକର କୋଣେ କୋଣେ ପ୍ରକଟ ହୋଇଛି । ତେଣୁ କେବଳ ଲୁହପୋଛା ଯୋଗ ଅଛି, କଥା ନଶୁଣିବାର ଏହା ତ ଯଥାଯୋଗ୍ୟ ଫଳ -

'ପର କି ମୁଁ ତୋର ତରକିଲୁ ଗୀର
ପରଖତୁ ଏବେ ଚିତ୍ତେ
ତୁଚ୍ଛା ତୁ ଉତ୍ସାହ ଦେବାରୁ ତୋ ଇଚ୍ଛା
ସୁଖେ ଲୁହ ପୋଛା ଏତେ'

## (୨) ଲୌକିକ ପ୍ରଣୟଭିତ୍ତିକ ସଙ୍ଗୀତ ।

ଆଶାବରୀ ରାଗରେ ରଚିତ 'ଆଜ ଦେଖିଲିରେ ନବୀନ ବୟସୀ ବାଳା' ଗୀତରେ ଯେଉଁ ଲଳିତ ଶବ୍ଦଚିତ୍ର ପ୍ରଦତ୍ତ ତାହାର ପଟାନ୍ତର ନାହିଁ । କଳସୀ କାଖରେ ଧରି ଚାଲିଯାଉଥିବା ବାଳାର ଅଳସୀ ଭଙ୍ଗୀ କବିଙ୍କୁ ମନ୍ତ୍ରମୁଗ୍ଧ କରିଛି । ମନେହୁଏ କବିଙ୍କର ସୁମଧୁର ଭାବବିଭା କାଶତଣ୍ଡୀ ଫୁଲ ପରି ଏଥିରେ ଅଜାଡ଼ି ହୋଇପଡ଼ିଛି ।

*'ସୁନ୍ଦର କନ୍ଦର୍ପ ଦର୍ପଣ ପରାୟେ*
*ଝଟକୁ ଥିଲା ତା ମୁଖ*
*ଚାହିଁଲା ମାତ୍ରକେ କ୍ଷୟ ଗଲା ମୋର*
*ଅଙ୍ଗରୁ ଅନଙ୍ଗ ଦୁଃଖ ।'*

ଯେନତେନ ପ୍ରକାରେଣ ଏହି ବାଳାପ୍ରାପ୍ତିକୁ ସେ ଇଚ୍ଛା କରି ନାହାନ୍ତି ବରଂ ସେଥିପାଇଁ ଶିବସେବା କରିବା କଥା ଉଲ୍ଲେଖ କରିଛନ୍ତି । ଆମ ସଂସ୍କୃତିରେ ତପସ୍ୟାବରଣ, ବିଭୂଷଣ, ଶ୍ରେୟ ବସ୍ତୁ ପ୍ରାପ୍ତି ପାଇଁ ଅପରିହାର୍ଯ୍ୟ । କାରଣ ଏଇ ସଂସ୍କୃତି ହେଉଛି ତ୍ୟାଗ ଓ ତପସ୍ୟାର ସଂସ୍କୃତି । ଏଥିରେ ଏକନିଷ୍ଠ ତପସ୍ୟା ବ୍ୟତୀତ କୌଣସି କାର୍ଯ୍ୟ ଯଥାର୍ଥ ଭାବେ ସମାହିତ ହୋଇପାରେ ନାହିଁ ।

*'କୋଟି କୋଟି ଶିବ ସେବା କରିଥିବ*
*ଯେ ଥିବ ଗଙ୍ଗାରେ ଧାୟି*
*ବୋଲେ ଉପଇନ୍ଦ୍ର କବିକୁଳ ଚନ୍ଦ୍ର*
*ତା ସଙ୍ଗ ଲଭିବ ସେହି ।'*

ଦକ୍ଷିଣକାମୋଦି ରାଗରେ ରଚିତ 'ଆହା ମୋ ଲାବଣ୍ୟ ନିଧି' କବିତାରେ ନାୟକର ବିରହାନୁଚିନ୍ତା ପ୍ରକଟିତ । ବିରହରେ ପ୍ରୀତିର ସମୁଜ୍ଜ୍ୱଳତା ଅଧିକରୁ ଅଧିକ ଉଦ୍‌ଭାସିତ ହୋଇଥାଏ । ବିରହ ନଥିଲେ ମିଳନର ମାଧୁରିମା ବହୁଗୁଣିତ ହୁଏ ନାହିଁ । ବିରହର ହୃଦୟ ବିଦାରକ ଚିତ୍ର ନାୟକକୁ ମର୍ମାହତ କରିଛି ।

*'ଯେଣିକି ଚାହିଁଲେ ଧନ ଦିଶେ ତା ଚନ୍ଦ୍ରାନନ*
*ଏବେ କେମନ୍ତେ ବଞ୍ଚିବି ଦିନରେ ।'*

ଭଞ୍ଜକବିଙ୍କ ଜୀବନରେ କାନ୍ତା ବିରହ ଘଟିଥିବାରୁ ସେ ଥିଲେ ବ୍ୟଥାରେ ଜର୍ଜରିତ । ଜୀବନର ପ୍ରତିଟି ନିଃଶ୍ୱାସରେ ବିରହର ଦହନକୁ

ଅନୁଭବ କରିଥିଲେ । ତେଣୁ ତାଙ୍କ ଲେଖନୀରେ ବିରହର ଚିତ୍ର ଅଧିକ ମାର୍ମିକ ଭାବରେ ପରିସ୍ଫୁଟ ।

କଳହଂସ କେଦାର ରାଗରେ ରଚିତ 'ଦ୍ୱିତୀୟା ଯାମିନୀରେ ମୋ ପ୍ରାଣସହୀ' ସଙ୍ଗୀତରେ ଯେଉଁ ରସାଳ ପରିବେଶ ଚିତ୍ରିତ ତାହା ରସିକ ପାଠକ ମନରେ ଭାବାନ୍ତର ସୃଷ୍ଟି କରେ । ଗବାକ୍ଷ ବାଟରେ ଆସି କୋଠରୀରେ ବିଛୁରିତ ହୋଇଛି ଚନ୍ଦ୍ରକିରଣ । ତହିଁରେ ନାୟିକାର ମୁଖ ଆଭା ଝଟକି ଉଠିଛି । ସେହି ଆଭାରେ ନାୟକର ଆଖି ଝଲସି ଯାଇଛି । ବିଗ୍ଧଧା ନାୟିକାର ନୀରବତାର ଭାଷା ସେହି ପରିବେଶକୁ ଅତ୍ୟନ୍ତ ସ୍ୱର୍ଶକାତର କରିଛି ।

*'ପ୍ରଦୀପ ହତ ଦେଖି କରନ୍ତେ ଲୋଡ଼ା*
*ତତ୍‌କ୍ଷଣେ ଫେଇଦେଲା ଗବାକ୍ଷ ପୁଡ଼ା ଯେ ।*
*ଚନ୍ଦ୍ରକିରଣେ ଚନ୍ଦ୍ରମୁଖ ଦିଶିଲା*
*ବସନାଞ୍ଚଳ ମୁଖେ ଦେଇ ହସିଲା ଯେ ।*

\+ + + + +

*ଗଭାରୁ କରବୀର କୁସୁମ ତିନି*
*କାଢ଼ି ପକାଇ ଦେଲା ଘନଜଘନୀ ଯେ ।*

ପ୍ରବାସୀ ନାୟକର ବିରହାନୁଚିନ୍ତା 'ଆହା ମୋ ଜୀବନ ଧନ' କବିତାରେ ରୂପାୟିତ । ଏହା ଖମ୍ବାଜ ରାଗରେ ରଚିତ । ଦୂରରେ ରହି ନାୟିକାର ମାନସିକ ଅବସ୍ଥା ଚିତ୍ରଣ କରିଛି ନାୟକ । ମାନସ ନେତ୍ରରେ ଦର୍ଶନ କରିଛି ବିରହିଣୀ ନାୟିକାର ମଳିନ ଚିତ୍ରକୁ –

*'ଆଶା ପଲଙ୍କରେ ବସି ଭାଷା ଲେଖୁଥିବରେ*
*ଗଳେଥିଲା ମୋତିମାଳ, ତୁଟି ଲୋଟୁଥିବରେ*
*ଫିଟି ଲୋଟୁଥିବ କେଶ ଝାଳେ କଣ୍ଟୁଥିବରେ*
*ଝାଳେ ଜରଜର ହୋଇ ମଥା ପୋତିଥିବରେ ।'*

ରମଣୀ ମନର ଆଶା ପ୍ରକଟିତ ହୋଇଛି ଅନ୍ୟ ଏକ ସଙ୍ଗୀତରେ ଯାହା ଆଷାଢ଼ଶୁକ୍ଳ ବାଣୀରେ ରଚିତ । ପ୍ରବାସୀ ନାୟକର ଫେରିବାରେ

ବିଳମ୍ବ ହେବାରୁ ନାୟିକାର ମନ ଦୁଃଖରେ ଜର୍ଜରିତା । ଆକାଶରେ ଆସିଛି ଘନକୃଷ୍ଣ ମେଘମାଳା । ମେଘ ଆଗରେ କାଳିଦାସଙ୍କ ଯକ୍ଷ ପରି ମନର ଦୁଃଖ କହିଛି ଓ ମେଘକୁ ଦୂତ କରି ପଠାଇଛି ଭଞ୍ଜନାୟିକା । କାଳିଦାସଙ୍କ ପ୍ରଭାବରେ ଭଞ୍ଜକବି ଯେ ପ୍ରଭାବିତ ଏଥିରୁ ଏହାର ମିଳେ । ତେଣୁ 'ଉପମା କାଳିଦାସସ୍ୟ' ସହିତ ସ୍ୱରସାମ୍ୟ ରଖି କୁହାଯାଏ 'ଉପମା ଭଞ୍ଜବୀରସ୍ୟ' । ଭଞ୍ଜନାୟିକାର ଭାଷାରେ-

*'ରମଣୀ ରତନ ମେଘକୁ ଚାହିଁ*
*କହିବୁ ମେଘରେ କାନ୍ତକୁ ଯାଇ ।'*

ନାୟିକା ମନର ମୁଗ୍ଧ ଅନୁଭବ କବି ଲେଖନୀରେ ସ୍ପଷ୍ଟଭାବରେ ପରିସ୍ଫୁଟ । ନାୟିକାର ସ୍ମିତହାସ୍ୟ ନାୟକ ହୃଦୟରେ ଭରିଦେଇଛି ସୀମାହୀନ ଆନନ୍ଦ । ବ୍ୟଥା ଜର୍ଜରିତ କଣ୍ଠରେ ନାୟକ କହିଛି –

*'ଦୂରୁ ଦେଖି ଯେବେ ହସେ, ମୋ ଅଙ୍ଗେ ସୁଧା ବରଷେ*
*କେଉଁ ଅବିଗୁଣ ଚିନ୍ତି ମୋର*
*ଧନ୍ୟ କେ ଚତୁରୀ ନାରୀ ରଖିଲା ମନ୍ତର କରି*
*ଭଲା ଯତ୍ନ କରି ଭାଙ୍ଗି ଦେଲା ବିହି ରେ ସହଚରୀ ।'*

ଆଷାଢ଼ ଶୁକ୍ଳବାଣୀରେ ବିରଚିତ ପ୍ରବାସୀ ନାୟକର ଭାବନା ଭିତ୍ତିକ ଅନ୍ୟ ଏକ ସଙ୍ଗୀତ ''ବିଦେଶେ ନାୟକ ଭାଳଇ ବସି''ର ମର୍ମବାଣୀ ହେଉଛି ଅତୀତର ସ୍ମୃତିଚାରଣ । ରସିକ ନାୟକର ମାନସପଟରେ ଅଙ୍କିତ ସ୍ମୃତିଚିତ୍ର ଅନୁସାରେ–

*'ଦିନେ ହୋଇଥିଲା ଘୋର ବରଷା*
*ବୋଇଲି ବାନ୍ଧବୀ ଖେଳିବା ପଶା*
*ପଶାଖେଳ ମୋତେ ଆସଇ ନାହିଁ*
*ଦାନ ପଡ଼ିଲେ ସାର ଦେବି ବାହି*
*ସେ ଚତୁରୀ ବାଳୀ*
*ସାର ବାଛିନେଲା ହଳଦୀ କାଳୀ ।'*

ବିଧାତାକୁ ଧିକ୍କାର କରିଛି ନାୟକ ଦୂରରେ ରହିଛି ବୋଲି । ପ୍ରବାସୀ ଜୀବନର ଭାବାବେଗ କବିକୃତିରେ ରୂପାୟିତ । ଚାନ୍ଦିନୀରାତିର ମିଳନ ମାଧୁର୍ଯ୍ୟ

ନାୟକର ସ୍ମୃତିପଥାରୂଢ଼ ହୋଇଛି । ବିପ୍ରଲମ୍ଭ ଶୃଙ୍ଗାର ଅନୁଚିନ୍ତା ଘନୀଭୂତ ହୋଇଛି କବିକୃତ ଅନ୍ୟ ଏକ ସଙ୍ଗୀତରେ ଯାହା କାମୋଦୀ ରାଗରେ ରଚିତ । ସଙ୍ଗୀତର ଶୀର୍ଷକ ହେଉଛି ''କାନ୍ତବିନା ଦିବା ରଜନୀ ସଜନୀ କୋଟି ଯୁଗ ସମ ହେଲାଟିରେ'', ଏହି ସଙ୍ଗୀତରେ ବିରହିଣୀ ନାୟିକାର ମର୍ମ ବ୍ୟଥା ପ୍ରକାଶିତ । ରୀତି ସାହିତ୍ୟରେ ପ୍ରକୃତିର ପ୍ରଭାବ ନାୟକ ନାୟିକାଙ୍କର ଶୃଙ୍ଗାରିକ ଭାବନା ସହ ସମ୍ପର୍କିତ । କବିଙ୍କ ଭାଷାରେ -

*'ଭାଗିହେଲା ଆସି ଅଙ୍ଗକୁ ବସନ*
*ତଥିପରେ ଆଭରଣ ଏ ଭୂଷଣ*
*ଦେଖ ଦେଖ ସଖି ! ଏ ଝଞ୍ଜା ପବନ*
*କାମ ବାଣେ ପ୍ରାଣ ନେଲାଟିରେ ।'*

ଚଉତିଶା ଶୈଳୀରେ ରଚିତ କବିଙ୍କ ଅନ୍ୟ ଏକ କୃତି ହେଉଛି 'କନକ କମ୍ବୁକୁ ମୋ ଚିତ୍ତ ଥାଉ' ସଙ୍ଗୀତ । ଏହା ଆଷାଢ଼ ଶୁକ୍ଳ ବାଣୀରେ ରଚିତ । ଏଥିରେ ନାୟକର ଚିଟାଉ ନାୟିକା ପାଖକୁ ପ୍ରେରିତ । ଭଞ୍ଜକବି ପ୍ରତିଟି ପାଦରେ ବର୍ଣ୍ଣମାଳାସ୍ଥିତ ପ୍ରତ୍ୟେକ ବର୍ଣ୍ଣକୁ ଆଦ୍ୟରେ ରଖି କ୍ରମାନ୍ୱୟରେ ସଙ୍ଗୀତ ରଚନା କରିଛନ୍ତି । ପାଠକ ହୃଦୟରେ ଭାବାନ୍ତର ଆଣିବାର ସାମର୍ଥ୍ୟରେ ଏହା ବିମଣ୍ଡିତ । ମାଳତୀ ଓ ମଧୁକର କହିବା ଭିତରେ ଭଞ୍ଜନାୟକ ବିପରୀତ ରତି କଥା କହିଛି ।

*'ଡାଳିମ୍ବଦନ୍ତୀ ତୁ ଚନ୍ଦ୍ର ଚକୋର*
*ଢାଳେ ମୁଁ ଚାତକ ତୁ ଜଳଧର*
*ଅଙ୍ଗନା ମୁଁ ହଂସ ତୁ ମାନସର*
*ତଥା ତୁ ମାଳତୀ ମୁଁ ମଧୁକର ।'*

କବିକୃତ ଅନ୍ୟ ଏକ ସଙ୍ଗୀତରେ ମାନଭଞ୍ଜନ ପ୍ରସଙ୍ଗ ଉପସ୍ଥାପିତ । ଏହା ଆଷାଢ଼ ଶୁକ୍ଳବାଣୀରେ ରଚିତ । ରସିକ ହୃଦୟର ମଧୁମୟ ଭାବ ବିଭବ ଏଥିରେ ମୂର୍ତ୍ତିମନ୍ତ ! ରାମାୟଣର ମୁଖ୍ୟ ଚରିତ୍ରଗୁଡ଼ିକର ନାମ ବ୍ୟଞ୍ଜିତ ଶବ୍ଦକୁ ନେଇ ସେଗୁଡ଼ିକୁ ଯଥାଯଥ ସ୍ଥାନ ଦେଇଛନ୍ତି କବି ଉକ୍ତ ସଙ୍ଗୀତରେ । 'ରାମ ନୟନୀ ସେ କେଳି ପ୍ରବୀଣା' ଏହି ପାଦରୁ ସଙ୍ଗୀତର ଆରମ୍ଭ । ମାନିନୀ ନାୟିକା ମୁହଁ ତଳକୁ ପୋତିବାର ଚିତ୍ର କବି ଲେଖନୀରେ ''ସୀତା ମାତାଙ୍କୁ ପୋତୁଛ ଲପନ'' ଉକ୍ତି ମାଧ୍ୟମରେ ଚିତ୍ରିତ ।

ସୁଭରତ ପଦ, ମାର ଶତ୍ରୁଘନ ଶର, ତାରାପତି ମୁଖ, ସୁଗ୍ରୀବର ହାର, ବିଭୀଷଣର ବରଷା, ମେଘନାଦ ଶବଦ, ମନ୍ଦୋଦରୀ, ଲଙ୍କାରିଗମନ। ଇତ୍ୟାଦି ପଦମାଳା ମଧ୍ୟରେ କବିଙ୍କର ଯଥାର୍ଥ ପଦବିନ୍ୟାସ ଦକ୍ଷତା ପ୍ରକଟିତ ହେବା ସଙ୍ଗେ ସଙ୍ଗେ ପାଣ୍ଡିତ୍ୟର ସ୍ୱର୍ଣ୍ଣିମ ଆଲେଖ୍ୟ ଅଙ୍କିତ ।

## (୧) ଭକ୍ତିଭିତ୍ତିକ ସଙ୍ଗୀତ ।

ଉପେନ୍ଦ୍ରଭଞ୍ଜ ପ୍ରୀତିର କବି ହେଲେ ହେଁ ଭକ୍ତିକୁ ସମ୍ପୂର୍ଣ୍ଣ ତ୍ୟାଗ କରି ନାହାନ୍ତି । ତାଙ୍କର କାବ୍ୟ ଓ ସଂଗୀତ ଉଭୟ କ୍ଷେତ୍ରରେ ବିଭୁଭକ୍ତି ଯଥାଯୋଗ୍ୟ ଆସନରେ ଆସୀନ । ସଂଗୀତ ମାନଙ୍କରେ ସେ ବହୁବାର ଶିବଙ୍କ ନାମ ଉଲ୍ଲେଖ କରିବା ସହିତ ତାଙ୍କ ପ୍ରତି ଅନ୍ତରର ଗଭୀରତମ ପ୍ରଦେଶରୁ ଭକ୍ତିଭାବ ପ୍ରକଟ କରିଛନ୍ତି । ନାୟକ ଓ ନାୟିକା ପରସ୍ପରକୁ ଅଧିକରୁ ଅଧିକ ନିକଟରେ ପାଇବା ପାଇଁ ଶିବକୃପା ଯେ ଏକାନ୍ତ ଆବଶ୍ୟକ ତାହା ମର୍ମେମର୍ମେ ଉପଲବ୍ଧି କରିଛନ୍ତି ।

ଶ୍ରୀଜଗନ୍ନାଥଙ୍କ ନିମନ୍ତେ ତାଙ୍କ ହୃଦୟରେ ଅସୀମ ଭକ୍ତିଭାବ ଥିଲେ ହେଁ ତାଙ୍କ ରଚିତ ଜଗନ୍ନାଥ ଭଜନ ଅଧିକ ସଂଖ୍ୟାରେ ମିଳିନାହିଁ । ଗୋଟିଏ ଭଜନରେ କବି ଶ୍ରୀଜଗନ୍ନାଥଙ୍କ ଚରଣତଳେ ଆତ୍ମସର୍ମପଣ ପୂର୍ବକ ତାଙ୍କର ମହିମା ଗାନ କରିଛନ୍ତି । ରାମ ଅବତାରର ମର୍ଯାଦା ଓ ବୀରତ୍ୱ ପ୍ରସଙ୍ଗ, କୃଷ୍ଣଲୀଳାର ଅନୁପମ ରାଗରଙ୍ଗ ଅତିକମ୍ ଶବ୍ଦରେ ଏଥିରେ ଉପସ୍ଥାପିତ ହୋଇଛି । ଗଜଉଦ୍ଧାରଣ, ମାର୍କଣ୍ଡ ଋଷିଙ୍କର ସୁରକ୍ଷା, ବାଳି ବିନାଶନ, ରାବଣ ନିଧନ, ହରିଣୀର ବିପଦ ଭଞ୍ଜନ ଓ ଦ୍ରୌପଦୀଙ୍କ ଲଜ୍ଜା ନିବାରଣ ପ୍ରସଙ୍ଗ ମାଧ୍ୟମରେ ପରମ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଅସୀମ ମହିମା ବର୍ଣ୍ଣିତ ହୋଇଛି । ଏହି ଭଜନରୁ ପଦଟିଏ ଏହିପରି -

ଲକ୍ଷେ ଯୋଜନରେ ଗଜ ଡାକଦେଲା
ତା ଡାକ ଶୁଣିଲ ପଶା ଖେଳେ ।
ମାରକଣ୍ଡ ଋଷି ଯାଉଥିଲେ ଭାସି
ଉଦ୍ଧରି ଧଇଲ ବାମ କରେ ।।

ଦେବତାମାନଙ୍କ ମଧ୍ୟରେ ଶ୍ରୀଜଗନ୍ନାଥ ଓ କଳାକୃତି ମଧ୍ୟରେ କୋଣାର୍କ ପରି ଉତ୍କଳର କବିମାନଙ୍କ ମଧ୍ୟରେ ଉପେନ୍ଦ୍ରଭଂଜଙ୍କ ସ୍ଥାନ ସ୍ୱତନ୍ତ୍ର । ତାଙ୍କ ଦ୍ୱାରା ବ୍ୟବହୃତ ଶବ୍ଦଗୁଡ଼ିକରେ ଅନନ୍ୟ ଶକ୍ତି ନିହିତ ଯାହାକୁ କାଳ କବଳିତ କରିପାରିନାହିଁ । ଅଦ୍ୟାବଧି ତାହା କାଳଜୟୀ ହୋଇ ରହିଛି ଏବଂ ଅନାଗତ ସୁଦୂର ଭବିଷ୍ୟତ ପର୍ଯ୍ୟନ୍ତ ତାହା ଅମ୍ଳାନ ରହିଥିବ ।



*ଦେଶ ଏପରି ଏକ ଅପୂର୍ବ ଶକ୍ତିଶାଳୀ ଲେଖନୀର ଅପେକ୍ଷା ରଖିଥିଲା, ଯାହାର ଚାଳନା ଫଳରେ ସମସ୍ତ ବୈଷମ୍ୟ ଦୂରୀଭୂତ ହେବ, କମ୍ରତା ଓ କଠୋରତାର ସମନ୍ୱୟ ହେବ ଓ ରସିକତା ଏବଂ ଧାର୍ମିକତା, ରସାଳତା ଓ ଦୁର୍ବୋଧ୍ୟତା , ଭାବୁକତା ଓ ତାତ୍ତ୍ୱିକତା, ପାଣ୍ଡିତ୍ୟ ଓ କଳ୍ପନା ବିଳାସିତାର ଅପୂର୍ବ ମିଳନ ସାଧିତ ହୋଇପାରିବ । ଏହିପରି ଏକ ସାଧନା ମନ୍ଦିରର ଯେ 'ମୁଣ୍ଡି ମାରିଥିଲେ' ସେ ହେଉଛନ୍ତି ଉପେନ୍ଦ୍ର ଭଞ୍ଜ ।*

*(ଭଞ୍ଜ ଭୂମିକା)- ଗୌରୀ କୁମାର ବ୍ରହ୍ମା*

# ମେଘଦୂତ : ସ୍ରଷ୍ଟା କାଳିଦାସ ଓ ରାଧାନାଥ

*"କାଳିଦାସ ଯଦି ଏକ ମେଘଦୂତ ମାତ୍ର ରଚନା କରିଥାନ୍ତେ, ତେବେ ସୁଦ୍ଧା ସେ ସଂସାରରେ ମହାକବିମାନଙ୍କର ମଧ୍ୟରେ ଉଚ୍ଚସ୍ଥାନ ପାଇଥାନ୍ତେ । ଏହି କାବ୍ୟ ଅତ୍ୟନ୍ତ ସରସ ଓ ଅତ୍ୟୁତ୍କୃଷ୍ଟ ।"*

*(କାଳିଦାସ) - ମୂଳଲେଖା-ଶ୍ରୀବାସୁଦେବ ବିଷ୍ଣୁ ମିରାଶୀ*
*ଅନୁବାଦ-ଶ୍ରୀ ଅନନ୍ତ ତ୍ରିପାଠୀ ଶର୍ମା*

ଭାରତ ଭାରତୀଙ୍କର ବିମୁଗ୍ଧ ସେବକ କବିଗୁରୁ କାଳିଦାସ ମାଟି ଦେହରେ ନ ଥିଲେବି ଯଶୋଦେହରେ ଅମର ହୋଇ ରହିଛନ୍ତି । ଭାରତୀୟ ପ୍ରକୃତିର ପୃଷ୍ଠପୀଠିକା ଉପରେ ତାଙ୍କ ସର୍ଜନାର ସୌଧ ପ୍ରତିଷ୍ଠିତ । ସ୍ୱଦେଶର ନଦନଦୀ, ଗିରିବନ,କେଦାର କାନ୍ତାର ସବୁକିଛିର ପ୍ରଚ୍ଛଦ ପଟରେ ସେ ଭେଟିଥିଲେ ଅନ୍ୟ ଏକ ସୁକୁମାର ସତ୍ତାକୁ ଯାହାର ସଫଳ ରୂପାୟନ ହିଁ ତାଙ୍କ ସୃଷ୍ଟିସମ୍ଭାରର ବିଶେଷତ୍ୱ ।

ଶ୍ରୁତିମଧୁର ଶବ୍ଦ ସଂଯୋଜନା ସହିତ ସାଙ୍ଗୀତିକତାର ରମ୍ୟ ବିଳାସ ତାଙ୍କ ରଚନାରେ ଲକ୍ଷ୍ୟଣୀୟ । କି ମନମୋହିନୀ ଶକ୍ତିରେ ତାଙ୍କ ସୃଷ୍ଟି ଭରପୂର ଯେ ତାକୁ ବାରମ୍ବାର ପଢ଼ିଲେ ମଧ୍ୟ ବିରକ୍ତି ଆସେ ନାହିଁ । ଯେତେ ପଢ଼ିଲେ ସେତେ ନୂଆନୂଆ ଲାଗେ । ବିଶେଷତଃ ଉପମା ଅଳଙ୍କାରର ପ୍ରୟୋଗ ପାଠକକୁ ଅଧିକ ବିମୋହିତ କରେ । ସ୍ୱର୍ଣକାତର କବିଚିତ୍ତ ଓ ଶ୍ରଦ୍ଧାସଜଳ ପାଠକ ଚିତ୍ତ ମଧ୍ୟରେ ସୁବର୍ଣ୍ଣ ସେତୁ ହୁଏ କାଳିଦାସଙ୍କ ରଚନାମାଳା । ଅଶେଷ ସମ୍ମାନର ଅଧିକାରୀ କାଳିଦାସଙ୍କୁ ଭକ୍ତିସୁମନ ଦେଲାବେଳେ ସ୍ୱତଃ କଣ୍ଠରୁ ଉଚ୍ଚାରିତ ହୁଏ —

*ପୁରାକବିନାଂ ଗଣନା ପ୍ରସଙ୍ଗେ*
*କନିଷ୍ଠିକାଧିଷ୍ଠିତକାଳିଦାସଃ ।*

କବିଙ୍କର ରଚନା ସମୂହର ସୁବାସରେ ବିମୁଗ୍ଧ ପାଠକଟିଏ ଇଚ୍ଛାକରେ—

*କାଳିଦାସ କବିତା ନବଂବୟଃ*
*ସମ୍ଭବନ୍ତୁ ମମ ଜନ୍ମଜନ୍ମନି ।*

ସାହିତ୍ୟିକ ମଧୁମୟତା, ସ୍ରଷ୍ଟାମାନସର ସୁକୁମାରତା, ସର୍ବୋପରି ଜୀବନପ୍ରତି ଅଙ୍ଗୀକାରବଦ୍ଧତା କବି କାଳିଦାସଙ୍କ ସୃଷ୍ଟି ସମ୍ଭାରରେ ତଥାକଥିତ

ଆଧ୍ୟାତ୍ମିକତାଠାରୁ ଅଧିକ ପରିମାଣରେ ପରିବେକ୍ଷିତ । ବହିଃ ପ୍ରକୃତିରେ ପ୍ରାଣ, ମନ ଓ ଚେତନାର ଆରୋପଣରେ ସେ ଦକ୍ଷ । ପ୍ରାଣପ୍ରାଚୁର୍ଯ୍ୟର କବି, ଭାରତୀୟ ସାହିତ୍ୟର ଅନ୍ୟତମ ମୁକୁଟବିହୀନ ସମ୍ରାଟ କବି କାଳିଦାସଙ୍କୁ ଏହି ଅବକାଶରେ ସହସ୍ର ପ୍ରଣାମ ।

'ମେଘଦୂତ' ହେଉଛି କବିଙ୍କର ମାନବିକ ସମ୍ବେଦନାମୂଳକ ଏକ ସୁଷମସୃଷ୍ଟି ଯାହାର ସ୍ତରେସ୍ତରେ ମୁଗ୍ଧଅନୁଭବ ହିଁ ସଂଚରିତ । କାନ୍ତାବିରହୀ ଯକ୍ଷର ଭାବବିହ୍ୱଳ ଅନୁଚିନ୍ତା ଓ ଗଭୀର ଆଶାବାଦ ଉକ୍ତ ଖଣ୍ଡକାବ୍ୟରେ ଉପସ୍ଥାପିତ । କୌଣସି ଏକ ଅପରାଧରେ ଅପରାଧୀ ଯକ୍ଷକୁ କୁବେର ଏକ ବର୍ଷ ପାଇଁ ନିର୍ବାସନଦଣ୍ଡରେ ଦଣ୍ଡିତ କଲେ । ଫଳରେ ଯକ୍ଷ ଏକବର୍ଷ ଅଳକା ନଗରୀ ଛାଡ଼ି ଆସି ରାମଗିରିରେ ବାସକଲା । ଆଠମାସ ଅତିବାହିତ ହେବାପରେ ଆଷାଢ଼ ମାସର ପ୍ରଥମ ଦିବସରେ (ଅବଶ୍ୟ କେଉଁ କେଉଁ ପାଠାନ୍ତରରେ ଆଷାଢ଼ ମାସର ଶେଷ ଦିବସରେ) ଆକାଶରେ ମେଘକୁ ଦେଖି ଯକ୍ଷ ଆତୁର ହୋଇପଡ଼ିଲା । ବିରହିଣୀ ପ୍ରିୟତମା ପତ୍ନୀ ନିକଟକୁ ନିଜର କୁଶଳ ବାର୍ତ୍ତା ମେଘ ହାତରେ ପଠାଇବାକୁ ସ୍ଥିର କଲା ଏବଂ ପଠାଇଲା । ଉକ୍ତ ସଂରଚନାରେ ଆଦ୍ୟପ୍ରାନ୍ତ ମନ୍ଦାକ୍ରାନ୍ତା ବୃତ୍ତ ବ୍ୟବହୃତ । ନାମାନୁସାରେ ଏହିବୃତ୍ତ ମନ୍ଦଗତି ହୋଇଥିବାରୁ ବିପ୍ରଲମ୍ଭ ଶୃଙ୍ଗାରର ଉପସ୍ଥାପନା ନିମନ୍ତେ ଏହା ବିଶେଷ ଉପଯୋଗୀ । ମେଘକୁ ଅଳକାପୁରୀ ଯିବା ପାଇଁ ନିର୍ଦ୍ଦେଶିତ ମାର୍ଗ ଦର୍ଶନରୁ ଜଣାଯାଏ ଯେ କବି କାଳିଦାସ ଭାରତର ଭୂଗୋଳ ସହିତ ବେଶ୍ ପରିଚିତ ଥିଲେ । କେବଳ ପରିଚିତ ନୁହେଁ, ବହିଃପ୍ରକୃତିର ବର୍ଣ୍ଣନା କ୍ଷେତ୍ରରେ ତାଙ୍କର ଅଶେଷ ଦକ୍ଷତା ମଧ୍ୟ ଥିଲା । ପ୍ରାବନ୍ଧିକ ଓ ସମାଲୋଚକ ଡଃ ଧନେଶ୍ୱର ମହାପାତ୍ର କହନ୍ତି - "ସମଗ୍ର ଭାରତବର୍ଷ ପ୍ରତି କାଳିଦାସଙ୍କର କିପରି ଆନୁଗତ୍ୟ ଓ ଅନୁରକ୍ତି ଥିଲା, ତାହା ମେଘଦୂତରୁ ସୂଚୀତ ହୁଏ । ନିଜ ଜନ୍ମଭୂମି ଭାରତର ନଦନଦୀ, ଗିରିବନ, ନଗରନଗରୀ, ଜନପଦ, ଶସ୍ୟକ୍ଷେତ୍ର ଦେବାଳୟ ପ୍ରଭୃତିର ସୌନ୍ଦର୍ଯ୍ୟ ତଥା ମହିମା ବର୍ଣ୍ଣନା ଉଦ୍ଦେଶ୍ୟରେ ହିଁ ସେ ମେଘଦୂତର ପରିକଳ୍ପନା କରିଥିଲେ ।" ମେଘଦୂତର ବର୍ଣ୍ଣନା ପାଟବ ଓ ଉପସ୍ଥାପନା ବୈଭବ ପ୍ରଶଂସନୀୟ । ଏକ ସାର୍ବଜନୀନ ଓ ସର୍ବକାଳୀନ ଅନୁଭବଟିଏ ଏଥିରେ ସ୍ଥାନିତ ।

ଅନୁବାଦ ଅର୍ଥାତ୍ ଅନୁସୃଜନ । ଏହା ଏକ ବିଶିଷ୍ଟ କଳାତ୍ମକକ୍ରିୟା, ଯାହା ସ୍ୱତନ୍ତ୍ର ସାଧନା ଓ ସାମର୍ଥ୍ୟର ଅପେକ୍ଷା ରଖେ । ଗୋଟିଏ ଭାଷାର ସୃଷ୍ଟିକୁ ଅନ୍ୟଭାଷାଭାଷୀ ପାଠକମାନଙ୍କ ନିକଟରେ ପହଞ୍ଚାଇଦେବାର

ଗୁରୁଦାୟିତ୍ୱ ଅନୁବାଦକ ଗ୍ରହଣ କରିଥାନ୍ତି । ଏଥିନିମନ୍ତେ ଏକାଧିକ ଭାଷାର ବ୍ୟାକରଣ ଜାଣିବା ଏକାନ୍ତ ଜରୁରୀ । *Alexender Fraser Tytler*ଙ୍କ ମତରେ - *'The translation should be a complete transcript of the idea of the original work. The style and manner of writing should be of the same character with that of the original"* *(principle of translation)* ଅନୁବାଦ ମୁଖ୍ୟତଃ ଦୁଇ ପ୍ରକାରର । ଗୋଟିଏ ହେଲା ଶବ୍ଦାନୁବାଦ ଓ ଅନ୍ୟଟି ଭାବାନୁବାଦ। ଶବ୍ଦାନୁବାଦକୁ ଆକ୍ଷରିକ ଅନୁବାଦ ଏବଂ ଭାବାନୁବାଦକୁ ମର୍ମାନୁବାଦ ବୋଲି କୁହାଯାଏ ।

ଲେଖକଙ୍କର ଭୂମିକାଠାରୁ ଅନୁବାଦକଙ୍କର ଭୂମିକା ଆଦୌ ନ୍ୟୂନ ନୁହେଁ । ଅନୁବାଦକ ଏକାଧାରରେ ପାଠକ, ଗ୍ରାହକ, ସମାଲୋଚକ ଓ ସ୍ରଷ୍ଟା । ମୂଳଲେଖାର ଭାଷା ଓ ଅନୂଦିତ ଭାଷାରେ ତାଙ୍କର ଦକ୍ଷତା ଥିବା ଆବଶ୍ୟକ । ପାଣ୍ଡିତ୍ୟ ବା ବହୁଶାସ୍ତ୍ରଦର୍ଶିତା ନଥିଲେ ଉଚ୍ଚକୋଟୀର ଅନୁବାଦ ଏକପ୍ରକାର ଅସମ୍ଭବ । ଅନେକ ସମୟରେ ଯଥାଯୋଗ୍ୟ ଭାବାନୁବାଦ ମୂଳ ରଚନାଠାରୁ ମଧ୍ୟ ଅଧିକ ମନୋଜ୍ଞ ଓ ହୃଦୟସ୍ପର୍ଶୀ ହୋଇଥାଏ ।

ପାଠକୀୟ ଶ୍ରଦ୍ଧା ଓ ସମ୍ମାନ ହେଉଛି ଅନୁବାଦଗତ ମହତ୍ତ୍ୱର ମାନଦଣ୍ଡ । ଅନୁବାଦର ମାନ ନିର୍ଦ୍ଧାରଣ ପାଇଁ Mrs Haribandi Laxmi କହିଛନ୍ତି -

(1) **Readability –** i.e whether the translation is easy to read or jerky.

(2) **Effectiveness–** i.e whether the translation is as effective as the original.

(3) **Satisfaction –** i.e whether it can satisfy its intended readers.

(4) **Loyality –** i.e whether it is loyal to the original in doing justice to the original author.

(5) **Credibility of translator –**

i.e whether he is known for his competence in the target language.

(6) **Creativity of the translator –**

i.e whether he uses the language creatively or not.

ଭାବାନୁବାଦରେ କ'ଣ କ'ଣ ମୂଳଲେଖାରୁ ବାଦଦେବାକୁ ପଡ଼ିବ ଆଉ କ'ଣ କ'ଣ ନୂଆ କଥା ସଂଯୋଜନା କରିବାକୁ ପଡ଼ିବ ତାହା ଅନୁବାଦକଙ୍କ ଉପରେ ନିର୍ଭର କରେ । ମାତ୍ର ଆକ୍ଷରିକ ଅନୁବାଦରେ ଅନୁବାଦକଙ୍କର ଏ ସ୍ୱାଧୀନତା ସଂକୁଚିତ । ଆକ୍ଷରିକ ଅନୁବାଦର ଆକର୍ଷଣ ସ୍ୱତନ୍ତ୍ର । ମୁଖ୍ୟତଃ ଦେବତାଙ୍କ ସ୍ତବସ୍ତୋତ୍ର-ଭଜନ-କୀର୍ତ୍ତନକୁ ସାଧାରଣ ଜନତାର ଦରବାରରେ ପହଞ୍ଚାଇବା ନିମନ୍ତେ ଆକ୍ଷରିକ ଅନୁବାଦ ଏକ ବିଶିଷ୍ଟ ମାଧ୍ୟମ । ଏପରି ଅନୁବାଦର ଉପଯୋଗିତା ରହିଛି । ଏଥିପାଇଁ ମଧ୍ୟ ଉଭୟ ଭାଷାରେ ଗଭୀର ବ୍ୟୁତ୍ପତ୍ତି ଏକାନ୍ତ ଆବଶ୍ୟକ । ଆକ୍ଷରିକ ଅନୁବାଦର ନମୁନାଟିଏ ପ୍ରଦାନ କରିବା ଏଇ ଅବକାଶରେ ଅପ୍ରାସଙ୍ଗିକ ହେବ ନାହିଁ । ଶ୍ରୀମଦ୍ ଭଗବଦ୍ ଗୀତା ଏକ ଅନନ୍ୟ ସାଧାରଣ ଗ୍ରନ୍ଥ ଯାହାର ଅନୁବାଦ ଆକ୍ଷରିକ ହେବା ବାଞ୍ଛନୀୟ, ଅନ୍ୟଥା ଏହାର ମହତ୍ତ୍ୱ ହ୍ରାସ ପାଇବ । ସତ୍ୟବାଦୀ ବନବିଦ୍ୟାଳୟର ଅନ୍ୟତମ ଶିକ୍ଷକ ସାକ୍ଷୀଗୋପାଳ ନିକଟସ୍ଥ ନୂଆ ସୋମେଶ୍ୱରପୁର ନିବାସୀ ପଣ୍ଡିତ ରଘୁନାଥ ମିଶ୍ର ଏହି ଗୀତା ଗ୍ରନ୍ଥର ଆକ୍ଷରିକ ଅନୁବାଦ କରିଥିଲେ । ପୁସ୍ତକଟି ୧୯୫୧ ମସିହାରେ ସମାଜର ସଂପାଦକ ଡଃ ରାଧାନାଥ ରଥଙ୍କ ଦ୍ୱାରା ସତ୍ୟବାଦୀ ପ୍ରେସ୍, କଟକରୁ ମୁଦ୍ରିତ ହୋଇ ପ୍ରକାଶିତ ହୋଇଥିଲା । ଏଥିରେ ଅନୁବାଦକଙ୍କ ପାଣ୍ଡିତ୍ୟ ଓ ପ୍ରତିଭା ମୂର୍ତ୍ତିମନ୍ତ । ଗୀତାଗ୍ରନ୍ଥର ଔଦାର୍ଯ୍ୟ ଓ ଗାମ୍ଭୀର୍ଯ୍ୟ ଅନୁବାଦରେ ସୁରକ୍ଷିତ । ଏହି ପୁସ୍ତକର ମୁଖବନ୍ଧରେ ପଣ୍ଡିତ ନୀଳକଣ୍ଠ ଲେଖିଛନ୍ତି –"ଶ୍ରୀମାନ୍ ରଘୁନାଥ ମିଶ୍ର ଜୀବନରେ ମୋର ସହକର୍ମୀ ଥିଲେ । ଓଡ଼ିଆ ସାହିତ୍ୟରେ ତାଙ୍କର ପାଣ୍ଡିତ୍ୟ ଅଛି । ସେ ଏବେ ଶ୍ରୀମଦ୍‌ଭଗବଦ୍‌ଗୀତାର ଅନୁବାଦ କରିଛନ୍ତି । ଏହା ଏକ ନୂତନ ପ୍ରକାରର ଅନୁବାଦ, ଆକ୍ଷରିକ ଅନୁବାଦର ପରାକାଷ୍ଠା କହିଲେ ଚଳେ ।" ଅଳ୍ପକିଛି ଶ୍ଲୋକ ଓ ପଦକୁ ଉଦାହରଣ ରୂପେ ଗ୍ରହଣ କରିବା ଅପ୍ରାସଙ୍ଗିକ

ହେବନାହିଁ । ଭଗବାନ ଶ୍ରୀକୃଷ୍ଣ ଗୀତାଗ୍ରନ୍ଥର ଏକାଦଶ ଅଧ୍ୟାୟରେ କହିଛନ୍ତି –

*'କାଲୋଽସ୍ମି ଲୋକକ୍ଷୟକୃତ ପ୍ରବୃଦ୍ଧୋ-*
*ଲୋକାନ୍ ସମାହର୍ତ୍ତୁମିହ ପ୍ରବୃତ୍ତଃ ।*
*ଋତେଽପି ତ୍ୱାଂ ନ ଭବିଷ୍ୟନ୍ତି ସର୍ବେ*
*ଯେଽବସ୍ଥିତାଃ ପ୍ରତ୍ୟନୀକେଷୁ ଯୋଧାଃ ।।୩୨।।*
*ତସ୍ମାତ୍ୱମୁତ୍ତିଷ୍ଠ ଯଶୋ ଲଭସ୍ୱ*
*ଜିତ୍ୱା ଶତ୍ରୂନ ଭୁଙ୍କ୍ଷ୍ୱ ରାଜ୍ୟଂ ସମୃଦ୍ଧମ୍ ।*
*ମୟୈବୈତେ ନିହତାଃ ପୂର୍ବମେବ*
*ନିମିତ୍ତମାତ୍ରଂ ଭବ ସବ୍ୟସାଚିନ୍ ।' ।। ୩୩।।*

*ଅନୁବାଦକ ଶ୍ରୀଯୁକ୍ତ ମିଶ୍ର ଏହାର ଅନୁବାଦ କରି କହିଛନ୍ତି –*

*'ଆମ୍ଭେଟି ଉତ୍କଟକାଳ ଲୋକ ସଂହାରକ*
*ପ୍ରବୃତ୍ତ ହୋଇଛୁ ଏଥି ଲୋକ ସଂହାରଣେ,*
*ତୁମ୍ଭେ ଯୁଦ୍ଧ ନ କଲେ ହେଁ, ନ ରହିବେ କେହି*
*ପ୍ରତିପକ୍ଷ ଅନୀକିନୀ ସ୍ଥିତ ଯୋଦ୍ଧୃଗଣେ ।।୩୨।।*
*ତେଣୁ ଉଠ ! ଲଭ ଯଶ, ଶତ୍ରୁ-ଜୟକରି*
*ଧନଧାନ୍ୟପୂର୍ଣ୍ଣ ରାଜ୍ୟ ସୁଖେ ଭୋଗକର,*
*ଆମ୍ଭରେ ହିଁ ସର୍ବେ ହତ ହୋଇଛନ୍ତି ପୂର୍ବେ,*
*ସବ୍ୟସାଚି ! ହୁଅ ତୁମ୍ଭେ ନିମିତ୍ତ ମାତର ।' ।।୩୩।।*

ଏଥର ମୂଳ ଆଲୋଚନାକୁ ଫେରିବା । କାଳିଦାସକୃତ 'ମେଘଦୂତ'ର ଅନୁବାଦ ଭିନ୍ନଭିନ୍ନ ସମୟରେ ବିଭିନ୍ନ ଭାଷାରେ କରାଯାଇଛି । ଓଡ଼ିଆ ଭାଷାରେ ଆପାତତଃ ପ୍ରଥମେ କବିବର ରାଧାନାଥ ରାୟ ଏହାର ଅନୁବାଦ କରିଥିଲେ । ଅବଶ୍ୟ ଏହା ଆକ୍ଷରିକ ଅନୁବାଦ ନୁହେଁ, ଭାବାନୁବାଦ । ଏ ପ୍ରସଙ୍ଗରେ ଡଃ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) କହିଛନ୍ତି – *"ଏକ ଅନୂଦିତ ରଚନା ହେଲେ ହେଁ ଏଥିରେ ରାଧାନାଥଙ୍କ କବି ପ୍ରତିଭାର ସ୍ୱର୍ଣ୍ଣାଭ ଦ୍ୟୁତି ଉତ୍ତମ ରୂପେ ପ୍ରକଟିତ । ରାଧାନାଥଙ୍କ ଅନୁବାଦ ମୂଳ ରଚନାର ସଂପୂର୍ଣ୍ଣ*

*ଭାବାନୁସାରୀ ହୋଇଥିବାରୁ ଏହାକୁ ଆଦର୍ଶସ୍ଥାନୀୟ ଭାବେ ଅନେକେ ଗ୍ରହଣ କରିଛନ୍ତି''* ।

କବି ରାଧାନାଥଙ୍କର ଅନୂଦିତ 'ମେଘଦୂତ' ଗ୍ରନ୍ଥଟି ୧୮୭୩ ମସିହାର ଶେଷ ଭାଗକୁ ପୁସ୍ତକାକାରରେ ପ୍ରକାଶିତ ହୋଇଥିଲା । ପୁସ୍ତକାକାରରେ ପ୍ରକାଶିତ ହେବା ପୂର୍ବରୁ 'ଉତ୍କଳ ଦର୍ପଣ' ପତ୍ରିକାରେ ଏହାର କିଛିଅଂଶ ପ୍ରକାଶିତ ହୋଇଥିଲା । ପୁସ୍ତକର ପ୍ରଥମ ସଂସ୍କରଣରେ କବି ରାଧାନାଥ ତିନିପୃଷ୍ଠାର ଏକ ଭୂମିକା ସଂଯୋଜନ କରିଥିଲେ । ତା୧୨/୧୨/୧୮୭୩ରିଖରେ ଏହି ଭୂମିକା କବିଙ୍କଦ୍ୱାରା ଲିଖିତ ହୋଇଥିଲା । ଭୂମିକାରେ ରାଧାନାଥ ଆଲୋଚ୍ୟ ଅନୁବାଦରେ କେତେକ ବୈଷମ୍ୟ ଥିବା କଥା ସ୍ୱୀକାର କରିବା ସହିତ ଏହାର କାରଣ ମଧ୍ୟ ଦର୍ଶାଇଛନ୍ତି। ଅନୁବାଦରେ ମିତ୍ରାକ୍ଷରର ପ୍ରୟୋଗ ହେଉଛି ଏହାର ବିଶିଷ୍ଟ କାରଣ । କବିଙ୍କ ଭାଷାରେ ''ଅନେକ ସ୍ଥଳରେ ମିତ୍ରାକ୍ଷର ଉପଦ୍ରବରୁ ଅଗତ୍ୟା ନୂଆଭାବ ସନ୍ନିବେଶିତ କରାଯାଉଛି ।'' ଅନୁବାଦରେ କେବଳ କଳହଂସ କେଦାର ଏବଂ ରସକୁଲ୍ୟା ଏଇ ଦୁଇ ଛନ୍ଦ ବ୍ୟବହୃତ ହୋଇଅଛି ।

ଅନୂଦିତ ମେଘଦୂତ ପୁସ୍ତକରୁ ରାଧାନାଥଙ୍କ ଦ୍ୱାରା ଲିଖିତ ଭୂମିକାକୁ ସଂଗ୍ରହକରି ତା'ଉପରେ ସଂକ୍ଷିପ୍ତ ଟିପ୍ପଣୀ ଲେଖିଛନ୍ତି ଡଃ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) । ଏହା ୧୯୯୦ ମସିହା ଡିସେମ୍ବର ମାସର 'ଏଷଣା' ପତ୍ରିକାରେ ପ୍ରକାଶିତ ହୋଇଛି । ଏହାର ସଂପାଦକ ଡଃ କୃଷ୍ଣଚରଣ ବେହେରା ମହୋଦୟଙ୍କୁ ଏଥିପାଇଁ ଅଶେଷ କୃତଜ୍ଞତା ।

ରାଧାନାଥଙ୍କ ଅନୁବାଦ (ମର୍ମାନୁବାଦ) ମୂଳଲେଖାଠାରୁ କେତେକ ସ୍ଥଳରେ ଟିକିଏ ଭିନ୍ନ । କାଳିଦାସଙ୍କ ବିରଚିତ 'ମେଘଦୂତମ୍' ର 'ପୂର୍ବମେଘ' ଅଂଶରେ ୬୬ ଗୋଟି ଶ୍ଳୋକ ଏବଂ 'ଉତ୍ତର ମେଘ' ଅଂଶରେ ୫୫ ଗୋଟି ଶ୍ଳୋକ ରହିଛି । ରାଧାନାଥଙ୍କ 'ମେଘଦୂତ'ରେ 'ପୂର୍ବମେଘ' ଅଂଶରେ ୫୬୬ ପଦ ଏବଂ 'ଉତ୍ତର ମେଘ' ଅଂଶରେ ୪୬୮ ପଦ ରହିଛି । ଅବଶ୍ୟ ରାଧାନାଥଙ୍କର ପ୍ରତିପଦର ଏକଏକ ପାଦକୁ ଏକଏକ ପଦରେ ଗଣା ହୋଇଛି । ଅର୍ଥାତ୍ ଚାରିଗୋଟି ପାଦକୁ ରାଧାନାଥ ଚାରିଗୋଟି ପଦ ହୋଲି ଗ୍ରହଣ କରିଛନ୍ତି । କେବଳ ପଦସଂଖ୍ୟା ନୁହେଁ

ଶବ୍ଦ ସଂଯୋଜନାରେ ମଧ୍ୟ କେତେକ ସ୍ଥଳରେ ରାଧାନାଥ ଆଉ ପାଦେ ଆଗେଇ ଯାଇଛନ୍ତି । ଏ ସମ୍ବନ୍ଧରେ ଗୋଟିଏ ଉଦାହରଣ ଦିଆଯାଇପାରେ ।

ପୂର୍ବମେଘର ପ୍ରଥମ ଶ୍ଳୋକଟି ଏହିପରି–

*'କଶ୍ଚିତ୍ କାନ୍ତା ବିରହଗୁରୁଣା ସ୍ୱାଧିକାରାତ୍ ପ୍ରମତ୍ତଃ*
*ଶାପେ ନାସ୍ତଙ୍ଗମିତମହିମା ବର୍ଷ ଭୋଗେ୍ୟଣ ଭର୍ତ୍ତୁଃ*
*ଯକ୍ଷଶ୍ଚକ୍ରେ ଜନକତନୟାସ୍ନାନପୁଣେ୍ୟାଦକେଷୁ*
*ସ୍ନିଗ୍ଧଛାୟା ତରୁଷୁବସତିଂ ରାମଗିର୍ଯ୍ୟାଶ୍ରମେଷୁ ।'*

ଅର୍ଥାତ୍- 'ଜଣେ ଯକ୍ଷ ନିଜର ପଦାଧିକାର ହେତୁ ପ୍ରମତ୍ତ ହୋଇ ମୁନିବଙ୍କଠାରୁ ଶାପ ପାଇଲା । ସେହି ଶାପ ତା' ପକ୍ଷରେ ଗୁରୁତର ଥିଲା । ସେଥିରେ ତାକୁ ଏକବର୍ଷ ପର୍ଯ୍ୟନ୍ତ ପତ୍ନୀ ବିରହ ଦୁଃଖ ଭୋଗିବାକୁ ପଡିଲା । ଶାପ ବଳରେ ଯକ୍ଷର ମହିମା ବିଲୁପ୍ତ ହେଲା । ସେ ବାସ କଲା ରାମଗିରିର ଆଶ୍ରମ ମାନଙ୍କରେ ଯେଉଁଠାରେ ଜନକନନ୍ଦିନୀ ସୀତାଙ୍କର ସ୍ନାନ ଯୋଗୁଁ ଜଳ ପବିତ୍ର ଥିଲା ଏବଂ ଯେଉଁଠାରେ ଥିଲେ ବହୁ ସୁଶୀତଳ ଛାୟାପ୍ରଦ ବୃକ୍ଷ ।'

ରାଧାନାଥ ଏହାର ମର୍ମାନୁବାଦ କରି ଲେଖିଛନ୍ତି –

*'ଦକ୍ଷିଣ ଦେଶେ ରାମଗିରି ଶୋଭନ*
*ବିମଳଶୁଭ୍ର ଯହିଁ ନଦୀଜୀବନ*
*ଜନକକନ୍ୟାସ୍ନାନେ ପବିତ୍ର ଅତି*
*ପର୍ଣ୍ଣ ଗହଳ ଯହିଁ ତରୁବ୍ରତତୀ*
*ତହିଁ କୁବେର ଶାପେ ହୋଇ ପ୍ରେରିତ*
*ରହିଲା ଯକ୍ଷ ଦୁଃଖେ ଆତୁର ଚିତ୍ତ*
*ବହର ଅନ୍ତେ ହେବ ଶାପ ମୋଚନ*
*ବହରଅନ୍ତେ କାନ୍ତା ସଙ୍ଗେ ମିଳନ ।'*

ମୂଳ ଶ୍ଳୋକରେ 'କୁବେର' ଓ 'ଦକ୍ଷିଣ ଦେଶ' ପ୍ରଭୃତି ପଦମାନ ନଥିଲା ବେଳେ, ରାଧାନାଥ ଏହି ପଦମାନ ବ୍ୟବହାର କରିଛନ୍ତି । ଯନ୍ତ୍ରଣା ଜର୍ଜରିତ ଯକ୍ଷ ଦୀର୍ଘ ଆଠମାସ ନିର୍ବାସନ ଦଣ୍ଡ ଭୋଗିଲା ପରେ ଦେଖିଛି ଆକାଶରେ ମେଘମାଳା । ସେହି ମେଘକୁ ଦେଖି ମନରେ ତା'ର ଭାବାନ୍ତର ଆସିଛି । ମେଘର ସମ୍ମୁଖୀନ ହୋଇ ସେ କିଛି ସମୟ ସ୍ତମ୍ଭୀଭୂତ ହୋଇ ରହିଯାଇଛି । ଏ କ୍ଷେତ୍ରରେ

ରାଧାନାଥ ଗୋଟିଏ ପଂକ୍ତି ଯୁକ୍ତ କରିଦେଇଛନ୍ତି । ତାହା ହେଲା 'କେତକ ପ୍ରକାଶକ' । ଏହି ପଂକ୍ତିଟି ମୂଳ ଲେଖାରେ ନାହିଁ । କେଉଁ ମେଘକୁ ଦେଖିଲା ଯକ୍ଷ ? ଉତ୍ତର ହେଉଛି ସେହି ମେଘକୁ ଯାହା କେତକୀର ପ୍ରକାଶକ ହୋଇଥାଏ ।

କାଳିଦାସଙ୍କ ଲେଖାରେ ଯକ୍ଷ ମେଘହାତରେ ନିଜ ପ୍ରିୟା ପାଖକୁ ବାର୍ତ୍ତା ପଠାଇବାକୁ ଇଚ୍ଛା କଲା ଓ ମେଘର ନିରାଜନା କଲା ।

*'ପ୍ରତ୍ୟାସନ୍ନେ ନଭସି ଦୟିତା ଜୀବିତାଳମ୍ବନାର୍ଥୀ;*
*ଜୀମୂତେନ ସ୍ୱକୁଶଳମୟୀ ହାରୟିଷ୍ୟନ୍ ପ୍ରବୃତ୍ତିମ୍ ।'*

ଅର୍ଥାତ୍ ''ଶ୍ରାବଣ ମାସ ନିକଟ ହୋଇ ଆସୁଥିବାରୁ ଯକ୍ଷ ପ୍ରିୟାର ପ୍ରାଣ ରକ୍ଷା କରିବା ଆଶାରେ ମେଘ ହାତରେ ତା'ନିକଟକୁ ନିଜର କୁଶଳ ବାର୍ତ୍ତା ପଠାଇବାକୁ ଇଚ୍ଛାକଲା ଏବଂ ମେଘକୁ ସଜଫୁଟା ବଣମଲ୍ଲୀ ଫୁଲର ଅର୍ଘ୍ୟ ପ୍ରଦାନ କରି ପ୍ରୀତଭାବରେ ପ୍ରୀତିପୂର୍ଣ୍ଣ ବଚନରେ ସ୍ୱାଗତ ଜଣାଇଲା ।'' କବି ରାଧାନାଥ ଏଥି ସହିତ ଆଉ ପଦେ ଅଧିକା ଯୋଡ଼ି କହିଛନ୍ତି ଯେ ଯକ୍ଷ ମେଘକୁ ଅର୍ଘ୍ୟସ୍ୱରୂପରେ ଝରଣା ଜଳ ପ୍ରଦାନ କଲା । ଶ୍ରାବଣ ମାସର କଥାକୁ ନିଜ ଅନୁବାଦରେ ଛାଡ଼ି ଦେଇଛନ୍ତି କବି ରାଧାନାଥ ।

*'ଏ ଭାବେ ପ୍ରାଣକାନ୍ତା ଦୁଃଖେ ବିକଳ*
*ଅର୍ଘ୍ୟସ୍ୱରୂପେ ଦେଲା ନିର୍ଝର ଜଳ*
*ପୂଜିଣ ଜୀମୂତଙ୍କୁ କୁଟଜ ଆଣି*
*ତା' ଅନ୍ତେ ପଚାରଇ ସ୍ୱାଗତବାଣୀ ।'*

ମେଘ ଆକାଶରେ ଗତି କଲାବେଳେ ପାନ୍ଥ ବନିତାକୁଳ ନିଜ ନିଜର କେଶକୁ ଆଖି ଉପରୁ ଆଡ଼େଇ ମେଘକୁ ଚାହିଁବେ । ସେହି ଚମତ୍କାର ଦୃଶ୍ୟର ବର୍ଣ୍ଣନା କରିବାକୁ ଯାଇ କାଳିଦାସ କହିଛନ୍ତି ।

*'ତ୍ୱାମାରୂଢ଼ଂ ପବନ ପଦବୀ ମୁଦ୍‌ଗୃହୀତାଳକାନ୍ତାଃ*
*ପ୍ରେକ୍ଷିଷ୍ୟନ୍ତେ ପଥିକବନିତାଃ ପ୍ରତ୍ୟୟାଦାଶ୍ୱସନ୍ତ୍ୟଃ ।'*

ଅର୍ଥାତ୍ – ''ତୁମେ ଆକାଶ ମାର୍ଗରେ ଗତି କଲା ବେଳେ ବିରହିଣୀ ରମଣୀମାନେ ସେମାନଙ୍କ ଆଖି ଉପରୁ ଚୂନିଚୂନି କେଶ ଆଡ଼େଇ ତୁମ ଆଡକୁ ବିଶ୍ୱାସରେ ଆଶ୍ୱସ୍ତି ଲାଭ କରି ଚାହିଁବେ'' ।

ମେଘ ଆକାଶ ମାର୍ଗରେ ଗତି କଲାବେଳେ ପାନ୍ଥରମଣୀମାନେ ବାମକରରେ ନିଜ ନିଜର ବେଣୀକୁ ଧରି ମେଘ ଆଡକୁ ଚାହିଁବେ ବୋଲି ରାଧାନାଥ କହିଛନ୍ତି ।

*'ତୁମ୍ଭ ଦର୍ଶନେ ପାନ୍ଥ-ବନିତା କୁଳ*
*ହୃଦୟେ ବିକଶିବ ଆଶାମୁକୁଳ*
*ଧରିଣ ବେଣୀ ବାମକରକମଳେ*
*ଦେଖିବେ ଗତି ତୋର ଅମ୍ବର ତଳେ ।'*

ଉତ୍ତର ମେଘରେ କବି କାଳିଦାସ ଅଳକା ନଗରର ବର୍ଣ୍ଣନା ପ୍ରଦାନ କରିବା ସହିତ ସେଠାରେ ଥିବା ବଧୂମାନେ ଷଡ଼ଋତୁରେ ଫୁଟିଥିବା ଫୁଲରେ ବିମଣ୍ଡିତ ହୋଇଥିବା କଥା ଉଲ୍ଲେଖ କରିଛନ୍ତି ।

*'ହସ୍ତେ ଲୀଳା କମଳମଳକେ ବାଳକୁନ୍ଦାନୁବିଦ୍ଧଂ*
*ନୀତା ଲୋଧ୍ର ପ୍ରସବରଜସା ପାଣ୍ଡୁତା ମାନନେଶ୍ରୀଃ*
*ଚୂଡାପାଶେ ନବ କୁରବକଂ ଚାରୁକର୍ଣ୍ଣେ ଶିରୀଷଂ*
*ସୀମନ୍ତେ ଚ ତ୍ୱଦୁପଗମଜଂ ଯତ୍ର ନୀପବଧୂନାମ୍ ।।'*

ଅର୍ଥାତ୍ - *"ଅଳକାରେ ବଧୂମାନେ ହାତରେ ଧରିଥାନ୍ତି ଲୀଳାପଦ୍ମ, କେଶରେ ଘେନିଥାନ୍ତି ସଦ୍ୟଫୁଟା କୁନ୍ଦଫୁଲ, ମୁହଁରେ ବୋଳିଥାନ୍ତି ଲୋଧ୍ର ପୁଷ୍ପର ପରାଗ ଯଦ୍ଦ୍ୱାରା ସେମାନଙ୍କର ମୁହଁ ଅଧିକ ଶୁଭ୍ରବର୍ଣ୍ଣ ଦିଶିବ, କେଶ ପାଶରେ ଖୋଷିଥାନ୍ତି ନୂଆ କୁରୁବକ ଫୁଲ, କାନରେ ଖୋଷିଥାନ୍ତି ଶିରୀଷଫୁଲ ଏବଂ ସୀମନ୍ତରେ ପିନ୍ଧିଥାନ୍ତି କଦମ୍ବ ଫୁଲ ଯେଉଁ କଦମ୍ବଫୁଲ କି ତୁମ ଆଗମନରେ ବିକଶିତ ହୋଇଥାଏ ।"*

ଷଡଋତୁର ଫୁଲସବୁ ଏହିପରି –

ପଦ୍ମଫୁଲ – ଶରତ ଋତୁର
କୁନ୍ଦଫୁଲ – ହେମନ୍ତ ଋତୁର
ଲୋଧ୍ରଫୁଲ – ଶିଶିର ଋତୁର
କୁରୁବକଫୁଲ – ବସନ୍ତ ଋତୁର
ଶିରୀଷଫୁଲ – ଗ୍ରୀଷ୍ମ ଋତୁର
କଦମ୍ବଫୁଲ – ବର୍ଷା ଋତୁର ।

ରାଧାନାଥ ଏହି ପରିପ୍ରେକ୍ଷୀରେ ଉଲ୍ଲେଖ କରିଛନ୍ତି –

*'ପୁଷ୍ପଭୂଷଣ ପ୍ରିୟ ନାଗରୀ ଦଳ –*
*କରେ ଶୋଭଇ ଯହିଁ ଲୀଳାକମଳ,*
*ଅଳକେ କୁନ୍ଦକଳି ରାଜେ ମୋହନ,*
*ଲୋଧପରାଗେପାଣ୍ଡୁ ଚାରୁ ଆନନ ।*
*ରମ୍ୟଶିରୀଷେ ଶୋହେ ଶ୍ରବଣମୂଳ*
*ସୀମନ୍ତେ ଶୋହେ ନବକଦମ୍ବଫୁଲ*
*ବକୁଳ ମାଳ-ଶୋଭୀ-ଘନ-ଜଘନ*
*ମନ୍ଦାର-ଶୋଭୀ-କେଶ ଚୁମ୍ବେ ଚରଣ ।'*

କାଳିଦାସ ଛଅଗୋଟି ଫୁଲର ନାମ ତାଲିକା ଦେଲାବେଳେ କବି ରାଧାନାଥ ସାତଗୋଟି ଫୁଲର ନାମ ତାଲିକା ଦେଇଛନ୍ତି । କୁରୁବକ ଫୁଲ ବଦଳରେ ରାଧାନାଥ ବକୁଳ ଫୁଲର ନାମ ପ୍ରଦାନ କରିଛନ୍ତି । ପୁନଶ୍ଚ ମନ୍ଦାର ଫୁଲର ନାମ କାଳିଦାସଙ୍କ 'ମେଘଦୂତ'ରେ ନଥିବା ବେଳେ ରାଧାନାଥ ଯୁକ୍ତ କରିଛନ୍ତି ।

ଉତ୍ତର ମେଘରେ କାଳିଦାସ ଅଳକା ନଗରୀର ବର୍ଣ୍ଣନା ସହିତ ନଗରୀର ଯୋଦ୍ଧାମାନଙ୍କ ପ୍ରସଙ୍ଗରେ କହିଛନ୍ତି –

*'ପତ୍ରଶ୍ୟାମା ଦିନକର ହୟ ସ୍ପର୍ଦ୍ଧିନୋ ଯତ୍ର ବାହାଃ*
*ଶୈଳୋଦଗ୍ରା ସ୍ତ୍ୱମିବକରିଣୋ ବୃଷ୍ଟିମନ୍ତଃ ପ୍ରଭେଦାତ୍*
*ଯୋଧାଗ୍ରଣ୍ୟଃ ପ୍ରତିଦଶମୁଖଂ ସଂଯୁଗେ ତସ୍ଥିବାଂସଃ*
*ପ୍ରତ୍ୟାଦିଷ୍ଟାଭରଣରୁଚୟ ଶ୍ଚନ୍ଦ୍ରହାସବ୍ରଣାଙ୍କୈଃ ।'*

ଅର୍ଥାତ୍ ''ସେଠାରେ ଅଶ୍ୱମାନେ ପତ୍ରପରି ଶ୍ୟାମଳ ବର୍ଣ୍ଣ, ସେମାନେ ସୂର୍ଯ୍ୟଙ୍କ ଅଶ୍ୱମାନଙ୍କ ସହିତ ମଧ୍ୟ ସ୍ପର୍ଦ୍ଧା କରନ୍ତି । ହାତୀମାନେ ପର୍ବତ ପରି ଉଚ୍ଚ, ସେମାନେ ମଦଜଳସ୍ରାବୀ ହୋଇଥିବାରୁ ତୁମପରି ବୃଷ୍ଟିଶାଳୀ ଅଟନ୍ତି । ଯୋଦ୍ଧାମାନେ ଯୁଦ୍ଧରେ ଅଗ୍ରଣୀ, ସେମାନେ ଯୁଦ୍ଧରେ ରାବଣ ବିରୁଦ୍ଧରେ ମଧ୍ୟ ଠିଆ ହୋଇଥିଲେ । ରାବଣର ଖଣ୍ଡାକୃତ କ୍ଷତଚିହ୍ନ ଗୁଡିକୁ ସେମାନେ ଦେହରେ ଆଭରଣ ରୂପେ ଧାରଣ କରିଛନ୍ତି, ତେଣୁ ଆଉ ଆଭରଣ ପିନ୍ଧିବାର ଆଗ୍ରହ ସେମାନଙ୍କର ନାହିଁ ।'' ଏହି ଶ୍ଳୋକଟିକୁ କବି ରାଧାନାଥ ଉପେକ୍ଷା କରିଛନ୍ତି, ଅନୁବାଦ କରିନାହାନ୍ତି । ପୁନଶ୍ଚ ଅଳକାପୁରୀସ୍ଥିତ କାବ୍ୟ ନାୟିକାର ରୂପ ବର୍ଣ୍ଣନା ପ୍ରସଂଗରେ କବି କାଳିଦାସ

ଯାହା ଯେପରି ବର୍ଣ୍ଣନା କରିଛନ୍ତି କବି ରାଧାନାଥ ପ୍ରାୟ ସେପରି ବର୍ଣ୍ଣନା କରିଛନ୍ତି । ତେବେ କିଛି ଅଧିକ ବର୍ଣ୍ଣନା ରାଧାନାଥଙ୍କ ସୃଷ୍ଟିରେ ଦୃଷ୍ଟିଗୋଚର ହୁଏ । ସେହି ଅଧିକ ଅଂଶଟି ଏହିପରି –

*'ଯୁବତୀକୁଳେ ଶ୍ରେଷ୍ଠ ସେହି ରଙ୍ଗିନୀ*
*କୁସୁମକୁଳେ ଶ୍ରେଷ୍ଠ ଯେହ୍ନେ ନଳିନୀ*
*ବିଳାସ-ପଦ୍ମାକର-ହଂସୀ ନବୀନା*
*ରସାଳସୀ ସୁକେଳି-କଳା-ପ୍ରବୀଣା ।'*

ବିରହିଣୀ ଯକ୍ଷନାୟିକା ମର୍ମାହତ ହୋଇ ମଳିନବସ୍ତ୍ର ପରିଧାନକରି ସ୍ୱରଚିତ ଗୀତ ବୀଣାଧରି ଗାନକଲାବେଳେ ଝରାଅଶ୍ରୁରେ ବୀଣାତାର ଓଦା ହୋଇଯାଉଥିବ ଇତ୍ୟାଦି କଥା କାଳିଦାସ ଉଲ୍ଲେଖ କରିଛନ୍ତି । ରାଧାନାଥ ଏଥିସହିତ ଗୋଟିଏ ପାଦ ଅଧିକ ଯୋଡ଼ି ଦେଇଛନ୍ତି । ତାହା ହେଉଛି –

*'ଚୁମ୍ବି ଅବନୀ ଲମ୍ବିଥିବ ତା ବେଣୀ ।'*

ଅଭିଶାପ ମୁକ୍ତ ହୋଇ ଯକ୍ଷ ଭେଟିବ ତା'ର ନାୟିକାକୁ ଶାରଦୀୟ ଜହ୍ନରାତିରେ । ଏତିକି କହିଛନ୍ତି କବି କାଳିଦାସ –

*'ପଶ୍ଚାଦାବାଂ ବିରହଗୁଣିତଂ ତଂ ତମାତ୍ମାଭିଳାଷଂ*
*ନିର୍ବେକ୍ଷ୍ୟାବଃ ପରିଣତଶରଚ୍ଚନ୍ଦ୍ରିକାସୁ କ୍ଷପାସୁ ।।'*

ଅର୍ଥାତ୍ ''ତା'ପରେ ଆମ ମନର ସମସ୍ତ କାମନାବାସନା ଯାହାକି ଏହି ବିରହ କାଳରେ ବହୁଗୁଣିତ ହୋଇ ରହିଛି, ତାହା ସମସ୍ତ ଆମେ ଶରତ ଋତୁର ଧବଳ ଜ୍ୟୋତ୍ସ୍ନାଭରା ରାତିମାନଙ୍କରେ ସଫଳ କରିବା ।''

କବି ରାଧାନାଥ ଏତକ କହିବା ସହିତ ସେ ଜହ୍ନରାତିର ସିଗ୍ଧସୁନ୍ଦର ପରିବେଶକୁ ପ୍ରାଣସ୍ପର୍ଶୀ ଭାବରେ ବର୍ଣ୍ଣନା କରିଛନ୍ତି ।

*'ଫୁଟିବେ ତାରାବଳୀ ନୀଳ ଗଗନେ*
*ଫୁଟିବ ଫୁଲକଳି ଫୁଲକାନନେ,*
*କୌମୁଦୀ ହସୁଥିବ କୁମୁଦ ସଙ୍ଗେ*
*ପ୍ରମୋଦେ ଭାସୁଥିବ ସରସୀ ଅଙ୍ଗେ*
*ସୌଧେ, ଭୂଧରେ, ସରେ, ସ୍ୱର୍ଣ୍ଣଦୀ-ନୀରେ*
*ବିରାଜିବ ରଜତ ଜ୍ୟୋତ୍ସ୍ନା ରୁଚିରେ ।'*

ଭାବାନୁବାଦ ଏକ ଯାନ୍ତ୍ରିକ ପ୍ରକ୍ରିୟା ନୁହେଁ, ବରଂ ଏକ ସର୍ଜନାତ୍ମକ କଳା । ମର୍ମେମର୍ମେ ମୂଳଲେଖାରେ ସଞ୍ଚରିତ ସ୍ରଷ୍ଟାମାନସର ସ୍ପର୍ଶକାତରତାକୁ ଅନୁଭବ କରିବା ସଙ୍ଗେ ସଙ୍ଗେ ଅନୁବାଦକୁ ଅଧିକ ସରସ ସୁନ୍ଦର କରିବା ପାଇଁ ଆବଶ୍ୟକ ସ୍ଥଳେ ଅନୁବାଦକ ନିଜ କବିତ୍ୱର କମନୀୟ ସ୍ପର୍ଶ ଦେଇଥାନ୍ତି । ଫଳରେ ଏପରି କୃତି କାଳଜୟୀ କଳାଗୌରବର ଅଧିକାରୀ ହୋଇଥାଏ । ଏ ଦିଗରୁ ବିଚାର କଲେ ରାଧାନାଥଙ୍କ ଅନୁକୃତି 'ମେଘଦୂତ' ଏକ କାଳୋତ୍ତୀର୍ଣ୍ଣ କୃତି ।



କାଳିଦାସ ପ୍ରାଚୀନ ଭାରତୀୟ ସଂସ୍କୃତିର ଅନ୍ୟତମ ଶ୍ରେଷ୍ଠ ପ୍ରତିନିଧି, ମହତ୍ତମ ଜୀବନାଦର୍ଶର ଧାରକ ଓ ବାହକ, ଐତିହ୍ୟର ପୂର୍ଣ୍ଣତମ ପରିଣତି । ସେ ନିଛକ ସୌନ୍ଦର୍ଯ୍ୟ ପିପାସୁ କବିମାତ୍ର ନୁହନ୍ତି, ଭାରତର ଉଚ୍ଚତମ ଜୀବନତତ୍ତ୍ୱ, ଧର୍ମଦର୍ଶନ ଚିନ୍ତାଚେତନା ଓ ପ୍ରାଣର ବିଶ୍ୱାସ ପ୍ରତି ମଧ୍ୟ ସେ ସଂପୂର୍ଣ୍ଣ ସଚେତନ ।

(କାବ୍ୟ ସଂବାଦ-ଦାଶରଥି ଦାସ)

# ବିଶ୍ୱବୋଧ ଓ କବି ଗୋପବନ୍ଧୁ

*"ମହାମାନବତାର 'ବିଶ୍ୱକମଳ' ଗୋପବନ୍ଧୁଙ୍କ ହୃଦୟସରରେ ଯେପରି ସଦାପ୍ରସ୍ଫୁଟିତ ହୋଇ ରହିଥିଲା ଏବଂ ତାଙ୍କର କର୍ମସାଧନା ଯେପରି ସର୍ବତୋମୁଖୀ, ସର୍ବବ୍ୟାପକ, ତାଙ୍କର ଚିନ୍ତା, ଧ୍ୟାନ ଓ କଳ୍ପନା ସେହିପରି ବିଶ୍ୱମୁଖୀ । ସେ ନିଜକୁ ବିଶ୍ୱ ମଧରେ ଅବସ୍ଥାପିତ କରି ନିଜର ସାର୍ଥକତା କଳନା କରୁଥିଲେ । ଏହି ବିଶ୍ୱଦୃଷ୍ଟି ହିଁ ତାଙ୍କର ଜୀବନ ତଥା ସାହିତ୍ୟର ବିଶେଷତ୍ୱ ।"*

(କବି ଗୋପବନ୍ଧୁ– ଚିନ୍ତାମଣି ଦାଶ)

ବିଶ୍ୱଗ୍ରାମ ଗଠନପାଇଁ ସଯତ୍ନପ୍ରୟାସ ଆଜିର ପ୍ରାଥମିକ ଆବଶ୍ୟକତା । ଏହି ପ୍ରୟାସରେ ଧର୍ମ, ଭାଷା ଓ ଚଳଣି ଗୌଣ, ମାତ୍ର ମାନବିକତା ହେଉଛି ମୁଖ୍ୟ । ଏହାର ଅର୍ଥ ହେଉଛି ଧର୍ମ, ଭାଷା, ଚଳଣି ସବୁ ରହିବ ମାତ୍ର ତାହା ବ୍ୟକ୍ତିଗତ ସ୍ତରରେ ରହିବ । ଅନ୍ୟକୁ ସାନ ଏବଂ ନିଜକୁ ବଡ଼ ଭାବିବାରେ ଏହା ବ୍ୟବହୃତ ହେବନାହିଁ । ଅନ୍ୟକୁ ବଡ଼ ଏବଂ ନିଜକୁ ସାନ ମଧ ଭାବିଲେ ଚଳିବ ନାହିଁ । ଗୋଟିଏ ବାକ୍ୟରେ କୁହାଯାଇପାରେ ଯେ ଧର୍ମ, ଭାଷା, ଚଳଣି, ଖାଦ୍ୟବସ୍ତ୍ର, ବାସଗୃହର ବ୍ୟବହାର ପ୍ରଣାଳୀ ଭିତରେ ତୁଳନା ରହିବ ନାହିଁ, ଏସବୁକୁ ବ୍ୟକ୍ତିଗତ ସ୍ତରରେ ରଖି ନିଜକୁ ନିଜେ ଅତିକ୍ରମ କରିବାକୁ ହେବ । ନିଜର ଅହଂଠାରୁ ନିଜକୁ ମୁକ୍ତ କରିବାକୁ ହେବ । ଏହି ମୁକ୍ତିର ଅନ୍ୟନାମ ହେଉଛି ମାନବିକତା । ଏଥିରେ ଦେଶର ଭିତ୍ତିରେ ରହିବ· ଦେଶାନ୍ତରର ସ୍ଥିତି, ବ୍ୟକ୍ତିର ଭିତ୍ତିରେ ରହିବ ସମଷ୍ଟିର ଅଭିବ୍ୟକ୍ତି । ପାଦଥିବ ଆପଣାର ମାଟିରେ ମାତ୍ର ଦୃଷ୍ଟି ହୋଇଥିବ ସୁଦୂରପ୍ରସାରୀ ।

ଏହି ଚେତନାର ଜଣେ ବିଶିଷ୍ଟ ପ୍ରବକ୍ତା ଭାବରେ ଉତ୍କଳମଣି ଗୋପବନ୍ଧୁଙ୍କର ନାମ ପ୍ରାତଃ ସ୍ମରଣୀୟ । ତାଙ୍କ ଚିନ୍ତା ଓ ଚେତନାରେ ଅଭିବ୍ୟକ୍ତ ହୋଇଥିଲା ***Near to far*** ଓ ***Local to Global***ର ମାନସିକତା । କେତେକ ମତ ଦିଅନ୍ତି ଯେ ସ୍ଥାନୀୟତା ଓ ସାର୍ବଜନୀନତା ପରସ୍ପରଠାରୁ ବହୁ ଦୂରରେ ଅବସ୍ଥିତ । ଏହା ଗୋଟିଏ ଭ୍ରମ । ବାସ୍ତବରେ ସ୍ଥାନୀୟତା ସହ ସାର୍ବଜନୀନତାର କୌଣସି କଳହ ନାହିଁ । ଉଭୟ ମଧରେ ସୂକ୍ଷ୍ମ ସଂଯୋଗ

ବିଦ୍ୟମାନ । ଆଞ୍ଚଳିକ ଚିନ୍ତା ଯେ ବିଶ୍ୱଚିନ୍ତାରେ ପରିଣତ ହୋଇପାରେ- ଏକଥା ଗୋପବନ୍ଧୁ ସ୍ପଷ୍ଟଭାବରେ ହୃଦୟଙ୍ଗମ କରିଥିଲେ । ସେ କହିଥିଲେ, *''ଆମ୍ଭେମାନେ ଉତ୍କଳ ସେବାରେ ଭାରତସେବା ଓ ବିଶ୍ୱସେବା କରିବୁ, ଉତ୍କଳ ପ୍ରାଣରେ ବିଶ୍ୱପ୍ରାଣ ଅନୁଭବ କରିବୁ, ଉତ୍କଳର ହୃଦୟତନ୍ତ୍ରୀରେ ବିଶ୍ୱମାନବର ଗୀତି ଶୁଣିବୁ ।''* ଉତ୍କଳୀୟ ସଂସ୍କୃତି ଓ ଭାରତୀୟ ସଂସ୍କୃତି ପରସ୍ପରର ପରିପନ୍ଥୀ ନୁହନ୍ତି, ବରଂ ଗୋଟିଏ ମୁଦ୍ରାର ଦୁଇପାଖ ପରି ଓତଃପ୍ରୋତ ଜଡ଼ିତ - ଏହା ଥିଲା ତାଙ୍କର ମୂଖ୍ୟ ଅନୁଭବ । ତାଙ୍କ କବିତାକୁଞ୍ଜରେ ଫୁଟିଯାଇଛି ଏହି ଅନୁଭବର ଲୀଳା ଲାବଣ୍ୟ । ସେ ଉପଲବ୍ଧି କରିଛନ୍ତି ଭାରତର କୋଣେ ଅନୁକୋଣେ ନୀଳାଦ୍ରିର ଅବସ୍ଥିତି, ନୀଳାଦ୍ରିର ପ୍ରତିଟି ରେଣୁରେ ଭାରତବର୍ଷର ଅନବଦ୍ୟ ଅଭିବ୍ୟକ୍ତି ।

*'ଥିଲେ ଯହିଁ ତହିଁ ଭାରତ ବକ୍ଷରେ*
*ମଣିବି ମୁଁ ଅଛି ଆପଣା କକ୍ଷରେ*
*ମୋ ନେତ୍ରେ ଭାରତ ଶିଳା ଶାଳଗ୍ରାମ*
*ପ୍ରତିଷ୍ଠାନ ମୋର ପ୍ରିୟ ପୁରୀଧାମ ।'*

*(ବନ୍ଦୀର ଆତ୍ମକଥା)*

ଭାରତର ସଂସ୍କୃତି ପୃଥିବୀରେ ଅତି ପ୍ରାଚୀନ ଓ ପ୍ରତିଷ୍ଠିତ । ଯୁଗେଯୁଗେ ଏଠାରେ ଋଷି, ସନ୍ୟାସୀମାନଙ୍କର ଆବିର୍ଭାବ ଘଟିଛି । ସେମାନେ ଦେଇଛନ୍ତି ବିଶ୍ୱପ୍ରେମର ବାର୍ତ୍ତା, କରିଛନ୍ତି ବିଶ୍ୱବାସୀଙ୍କର ଶୁଭକାମନା । ଶ୍ରୀଅରବିନ୍ଦ କହିଛନ୍ତି –*"The hero, the Rishi, the Saint are the natural fruits of our Indian Soil, and there has been no age in which they have not born."* । ଏହି ଶାଶ୍ୱତ ଆର୍ଷବାଣୀ ଓ ଚେତନା ଭାରତୀୟ ବାତାବରଣକୁ ଏକ ସମୟରେ ଧ୍ୟାନସ୍ଥ ଓ କର୍ମପ୍ରବଣ କରିଛି । ଧ୍ୟାନ ଓ କର୍ମ ଚଞ୍ଚଳତା, ଏକ ଓ ଅଭିନ୍ନ କଥା ବୋଲି ଭାରତ ବୁଝିବା ସଙ୍ଗେସଙ୍ଗେ ସାରା ବିଶ୍ୱକୁ ବୁଝାଇ ଦେବାକୁ ସମର୍ଥ ହୋଇଛି । ସବୁଜ ବନାନୀର ଋଷିକୁଟୀର ଠାରୁ ଜନପଦର ରାଜଉଆସ ପର୍ଯ୍ୟନ୍ତ ସର୍ବତ୍ର ମାନବିକ ମୂଲ୍ୟବୋଧ ପ୍ରତିଷ୍ଠିତ ହୋଇଛି । ପୁଣି ସମୟକ୍ରମେ ତାହା ପ୍ରସାରିତ ହୋଇ ବିଶ୍ୱରେ ପ୍ରବେଶ କରୁଛି, ଯାହାକୁ ଭିତ୍ତିକରି ଭାରତ ହେବ ଆଗାମୀ ବିଶ୍ୱର ଗୁରୁବୋଲି

ସ୍ୱାମୀ ବିବେକାନନ୍ଦ, ଶ୍ରୀଅରବିନ୍ଦଙ୍କ ସମେତ ବହୁମହାପୁରୁଷ ଉଦ୍‌ଘୋଷଣା କରିଯାଇଛନ୍ତି । ଉତ୍କଳମଣି ଗୋପବନ୍ଧୁ ନିଜ ରଚନାରେ ଏହି ଚେତନାକୁ ଅନନ୍ୟ ଗୁରୁତ୍ୱ ପ୍ରଦାନ କରିଛନ୍ତି ।

*'ଭାରତ ପ୍ରଭାବେ ହେଉ ସାର୍ଥ ଋଷିବାଣୀ*
*ମଧୁମୟ ଭାବେ ମତ୍ତ ହେଉ ବିଶ୍ୱପ୍ରାଣୀ ।*
*ସର୍ବସିନ୍ଧୁ ସ୍ରୋତେ କ୍ଷରୁ ମଧୁମୟ ନୀର*
*ବହୁ ମଧୁମୟ ଗନ୍ଧ ଶୀତଳ ସମୀର ।'*

*(ପିତୃପକ୍ଷତର୍ପଣ)*

ଧର୍ମ ନୁହେଁ ଆଧ୍ୟାତ୍ମିକତାର ନିରାଜନା ନିମନ୍ତେ କବି ଗୋପବନ୍ଧୁ ପ୍ରୟାସୀ ଥିଲେ । ଦୂର ଦେବାଳୟକୁ ଯିବାର ପ୍ରୟୋଜନ ଅପେକ୍ଷା ନିଜର ଅନ୍ତରରେ ବିରାଜିତ ଦିବ୍ୟଚେତନାକୁ ଆବିଷ୍କାର କରିବାର ଆବଶ୍ୟକତା ଯେ ବହୁଗୁଣରେ ଅଧିକ, ଏକଥା ସେ କହୁଥିଲେ । ତାଙ୍କ ମତରେ ସମଗ୍ର ଜୀବନ ଏଇ ଅନୁସନ୍ଧାନ, ଅଭିନନ୍ଦନ ଓ ଉପଲବ୍ଧି ନିମନ୍ତେ ଏକ ଶିବରାତ୍ରି ହେବା ଉଚିତ । ସେ ଜୀବନର ପ୍ରତିମୁହୂର୍ତ୍ତରେ ଅନୁଭବ କରିଥିଲେ ଯେ ଆଧ୍ୟାତ୍ମିକତା ଓ ମାନବିକତା ପରସ୍ପର ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ଗୋଟିକରୁ ଅନ୍ୟଟିକୁ ଭିନ୍ନ କରାଯାଇପାରିବ ନାହିଁ । କାଳେକାଳେ ମାନବିକତାର ପ୍ରାସଙ୍ଗିକତା ରହିଛି । କାରଣ ଏହା ଏକ ମୂଲ୍ୟ ନୁହେଁ, ଏକ ମୂଲ୍ୟବୋଧ । ମୂଲ୍ୟ ବଦଳି ଯାଇପାରେ, ମାତ୍ର ମୂଲ୍ୟବୋଧ ବଦଳି ପାରେନାହିଁ । ଆଜି ସମଗ୍ର ବିଶ୍ୱରେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ପ୍ରସାର ଘଟିଛି । ତାହା ପ୍ରଭାବରେ କୃଷିର ଉନ୍ନତି, ଶିଳ୍ପ ପ୍ରଗତି ଓ ବାଣିଜ୍ୟର ଅଭିବୃଦ୍ଧି ସମ୍ଭବ ହୋଇଛି । ବିଶ୍ୱମାନବ ହାତକୁ ଯେତିକି ସମୃଦ୍ଧି ଆସିଛି ତଦନୁସାରେ ଯେତିକି ଆନନ୍ଦ ବିଶ୍ୱମାନବକୁ ମିଳିବା କଥା ସେତିକି ମିଳି ନାହିଁ । ତାହାର କାରଣ ହେଉଛି ମାନବିକତାର ଅଭାବ । ଏପରି କୁହାଯାଇପାରେ ଯେ ଅଶ୍ୱ ଅଛି, ତା'ର ଗତି ମଧ୍ୟ ଅଛି, ମାତ୍ର ଲଗାମଟି ନଥିବାରୁ ପ୍ରଗତି ନାହିଁ । ଏଥିରୁ ସ୍ପଷ୍ଟ ଅନୁମେୟ ଯେ ଗତିଶୀଳ ଅଶ୍ୱ ଯେତିକି ଦରକାର, ଅଶ୍ୱର ଲଗାମ୍ ମଧ୍ୟ ସେତିକି ଦରକାର । ଏହି ଲଗାମଟି ମାନବିକତା ବ୍ୟତୀତ ଆଉ କିଛିନୁହେଁ । ସେହି ମାନବିକତାର ଜୟଗାନ କରିବା ସଙ୍ଗେସଙ୍ଗେ ପ୍ରତ୍ୟେକ ଉତ୍କଳୀୟ ଏହି ମହନୀୟ ମହାମନ୍ତ୍ରରେ ଅଭିମନ୍ତ୍ରିତ ହେବା ଆବଶ୍ୟକ ବୋଲି କବି ଇଚ୍ଛାପୋଷଣ କରିଛନ୍ତି ।

କବିଙ୍କ ଭାଷାରେ -

*'ଜାତୀୟମମତା ବିଶ୍ୱଜନପ୍ରୀତି ।*
*ଉତ୍କଳବାସୀର ହେଉ ଏହା ନୀତି ।'*
*(ବନ୍ଦୀର ଆତ୍ମକଥା)*

ଦୟା, କ୍ଷମା, ତ୍ୟାଗ ଓ ତିତିକ୍ଷା ପ୍ରଭୃତି ଦିବ୍ୟଗୁଣାବଳୀ ମାନବିକତାର ଅନ୍ତର୍ଭୁକ୍ତ । ତ୍ୟାଗ ଭିତରେ ଅହଂର ତ୍ୟାଗ ଏକାନ୍ତ ଜରୁରୀ । ଅହଂ ତ୍ୟାଗକଲେ ବ୍ୟକ୍ତିର ମନ ବିଶ୍ୱମନ ସଙ୍ଗେ ଏକାକାର ହେବ, ବିଶ୍ୱପ୍ରେମର କୁସୁମ ସୁବାସ ବ୍ୟକ୍ତିର ଜୀବନକୁଞ୍ଜକୁ ସୁବାସିତ କରିବ। ସେତେବେଳେ କୌଣସି ସୀମାରେଖାରେ ବ୍ୟକ୍ତିଜୀବନ ବନ୍ଧା ପଡ଼ିବ ନାହିଁ । ତାହା ବିଶ୍ୱପ୍ରକୃତିର ଏକ ବଳିଷ୍ଠ ବିଭବରେ ପରିଣତ ହୋଇ ଆତ୍ମପ୍ରସାରିତ ହେବ । ବିଶ୍ୱ ଦିଗ୍‌ବଳୟକୁ ଛୁଇଁଛୁଇଁ ସେତେବେଳେ ଉଇଁ ଆସିବ ନୂତନ ଚେତନାର ସୂର୍ଯ୍ୟ । ସେଇ ସୂର୍ଯ୍ୟକିରଣରେ ଦିଗଦିଗନ୍ତ ଝଲସି ଉଠିବ । ଦେଶ ଥିବ, ଜାତି ହୁଏତ ଥିବ, ମାତ୍ର ନଥିବ ସଂକୀର୍ଣ୍ଣତାର ପୂତିଗନ୍ଧମୟ ବାତାବରଣ ।

ଏକଥା ସ୍ୱୀକାର୍ଯ୍ୟ ଯେ ପଣ୍ଡିତ ଗୋପବନ୍ଧୁ ଉତ୍କଳ ପାଇଁ ଯେପରି ଆନ୍ତରିକତା ପ୍ରକଟ କରିଛନ୍ତି ଭାରତ ପାଇଁ ସେପରି ଆତ୍ମୀୟତା ପ୍ରକାଶ କରିଛନ୍ତି । ଉତ୍କଳ ପାଦପରେ ରସମୟ ଫଳ ଆସୁ, ଉତ୍କଳ ସରିତରେ ପବିତ୍ର ନିର୍ମଳ ଜଳ ଆସୁ ବୋଲି ସେ କାମନା କରିଛନ୍ତି ।

*'ଉତ୍କଳ-ତନୟେ ଦିଅ ନବ ବଳ*
*ଉତ୍କଳ-ପାଦପେ ରସମୟ ଫଳ*
*ଉତ୍କଳ-ସରିତେ ପବିତ୍ର ଜୀବନ*
*ଉତ୍କଳ-କାନନେ ସ୍ୱର୍ଗୀୟ ସୁମନ ।'*
*(ବନ୍ଦୀର ଆତ୍ମକଥା)*

ଭାରତମାତାଙ୍କୁ ବିଦେଶୀ ଶାସନର ଅତ୍ୟାଚାରରୁ ମୁକ୍ତ କରିବା ନିମନ୍ତେ ସେ ଆପ୍ରାଣ ଉଦ୍ୟମ କରିଥିଲେ । ତହିଁରେ ନଥିଲା ପଦ ପଦବୀ ବା ଯଶ ପ୍ରଶଂସାର ଲାଳସା,କେବଳ ଥିଲା ଆତ୍ମସନ୍ତୋଷର କୈବଲ୍ୟକଣିକା ।

ସେଥିପାଇଁ ସେ ଅସହଯୋଗ ଆନ୍ଦୋଳନରେ ଯୋଗ ଦାନ କରି କାରାବରଣ କରିଥିଲେ ଏବଂ କାରାଗାରକୁ ସ୍ୱାଧୀନତା ସଂଗ୍ରାମୀଙ୍କ ନିମନ୍ତେ ପ୍ରଭାସତୀର୍ଥ ବୋଲି ବିଚାର କରିଥିଲେ । କବିଙ୍କର ଭାରତଭାବନା ଅତ୍ୟନ୍ତ ହୃଦ୍ୟ ଓ ଅନବଦ୍ୟ । ଭାରତ ହେଉ ଶାନ୍ତି, ମୈତ୍ରୀ ଓ ବିଶ୍ୱପ୍ରାଣତାର ମୂର୍ତ୍ତିମନ୍ତ ପ୍ରତୀକ । ଭାରତରେ ମଧୁମୟ-ଗନ୍ଧସମୀର ପ୍ରବାହିତ ହେଉ, ଭାରତର ଦିବାରାତ୍ରୀ ମଧୁସିକ୍ତ ହେଉ, ନବ ଚେତନାର ଚନ୍ଦ୍ର ଓ ସୂର୍ଯ୍ୟ ଭାରତ ଆକାଶରେ ଉଦିତ ହୁଅନ୍ତୁ – ଏହି ଆଶା କବି ପୋଷଣ କରିଛନ୍ତି ।

*'ପଡୁ ଏ ଭାରତ-ପ୍ରାଣେ ସ୍ୱର୍ଗୀୟ କିରଣ*
*ନନ୍ଦନକାନନୁ ବହୁ ସ୍ନିଗ୍ଧ ସମୀରଣ ।'*

*(ପିତୃପକ୍ଷତର୍ପଣ)*

ଭାରତ ବଞ୍ଚିଲେ ପୃଥିବୀ ବଞ୍ଚିବ । ଶ୍ରୀଅରବିନ୍ଦଙ୍କ ମତରେ, ''ଭାରତ ଯଦି ସଂକଳ୍ପ କରେ, ତେବେ ସମଗ୍ର ବିଶ୍ୱ ଆଜି ଯେଉଁ ସମସ୍ୟାରେ ବିବ୍ରତ ଓ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଛି, ତାହାର ଦେଇପାରେ ଯଥାର୍ଥ ମୀମାଂସା ଓ ଯଥାଯଥ ସମାଧାନ ।'' ଏହି ଚିନ୍ତା ଓ ଚେତନାର ସୁକୁମାର ପରିପ୍ରକାଶ ଉତ୍କଳମଣିଙ୍କ ପଦ୍ୟ ସୃଷ୍ଟିରେ ବହୁସ୍ଥଳରେ ଦେଖିବାକୁ ମିଳେ । ବିଶ୍ୱପ୍ରାଣର ସ୍ପନ୍ଦନ ଭାରତରେ ଅନୁଭୂତ ହୁଏ, ବିଶ୍ୱର ସୁସ୍ଥତା ନିର୍ଭର କରେ ଭାରତର ସୁସ୍ଥତା ଉପରେ । କବିଙ୍କ ଭାଷାରେ –

*'ଦେବ ପ୍ରତିଷ୍ଠିତ ମହର୍ଷି ସମ୍ମତ*
*ଜାଣିବ ଭାରତ, ଦେଖିବ ଜଗତ*
*ବିରାଜିବ ବିଶ୍ୱେ ଏକତା, ସମତା*
*ଶାନ୍ତି ଉଚ୍ଚାରିବେ ସ୍ୱରଗେ ଦେବତା ।'*

*(ବନ୍ଦୀର ଆତ୍ମକଥା)*

ଭାରତର କଲ୍ୟାଣରେ ବିଶ୍ୱର କଲ୍ୟାଣ, ଭାରତର ସର୍ବାଙ୍ଗୀଣ ବିକାଶରେ ବିଶ୍ୱର ମହତ୍ତମ ବିକାଶ, କାରଣ ଭାରତ ହେଉଛି ପୃଥିବୀର ଆତ୍ମା । ଏ କଥାର ମହତ୍ତ୍ୱ ଗୋପବନ୍ଧୁ ହୃଦୟଙ୍ଗମ କରିଥିଲେ । ପୂର୍ଣ୍ଣିମା ତିଥିରେ ଜହ୍ନରାତିରୁ ଜହ୍ନକୁ ବାଦ୍‌ଦେଲେ ରାତି ଯେପରି ବିକଳାଙ୍ଗ ହୋଇଯିବ, ବିଶ୍ୱସଂସ୍କୃତିରୁ ଭାରତୀୟ ସଂସ୍କୃତିକୁ ବାଦଦେଲେ ବିଶ୍ୱସଂସ୍କୃତି ସେପରି ବିକଳାଙ୍ଗ ହୋଇଯିବ । ଭାରତୀୟ ସଂସ୍କୃତି ହେଉଛି ମାନବବାଦର ସଂସ୍କୃତି, ପୂଜ୍ୟପୂଜାର ସଂସ୍କୃତି, ଆତ୍ମପ୍ରଶିକ୍ଷଣର ସଂସ୍କୃତି । ଭାରତର ସ୍ୱାଧୀନତା ଆନ୍ଦୋଳନ କେବଳ

ଏକ ରାଜନୀତିକ ଆନ୍ଦୋଳନ ନୁହେଁ, ଏହା ଏକ ଆଧ୍ୟାତ୍ମିକ ଆନ୍ଦୋଳନ ଅର୍ଥାତ୍ ଆସୁରିକ ପ୍ରଭାବରୁ ଓ ଅବିଦ୍ୟାର ପ୍ରଭାବରୁ ମୁକ୍ତିର ଆନ୍ଦୋଳନ । ଭାରତର ସ୍ୱାଧୀନତାରେ ବିଶ୍ୱ ଦରବାରରେ ମାନବିକତାର ପୁନଃପ୍ରତିଷ୍ଠା ସମ୍ଭବ । ବିଶ୍ୱଜୀବନର ବିକାଶ ନିମନ୍ତେ ଭାରତର ସ୍ୱାଧୀନତା ଓ ସର୍ବାଙ୍ଗୀନ ବିକାଶ ଏକାନ୍ତ ଆବଶ୍ୟକ- ଏ କଥାର ଗୁରୁତ୍ୱକୁ କବି ସ୍ପଷ୍ଟ ଭାବରେ ଉପଲବ୍ଧି କରିଛନ୍ତି । କବିଙ୍କ କଥାରେ –

*'ସ୍ୱରାଜ୍ୟ ସାଧନେ ରହୁ ମୋର ଧ୍ୟାନ*
*ଭାରତେ ସ୍ୱରାଜ୍ୟ ଜଗତ କଲ୍ୟାଣ*
*ଜଗତ ସରସେ ଭାରତ କମଳ*
*ତା' ମଧ୍ୟେ କେଶର ପୁଣ୍ୟନୀଳାଚଳ ।'*

*(ବନ୍ଦୀର ଆତ୍ମକଥା)*

Globality ସହିତ Locality ଗୋଟିଏ ସୂତ୍ରରେ ବନ୍ଧା ହୋଇଛି ଏଠାରେ । ଏପରି କୁହାଯାଇପାରେ ଯେ Globalityର ସାରନିର୍ଯ୍ୟାସ ଓ ସାର୍ଥକତା Localityରେ ନିହିତ । ଏପରି ଚିନ୍ତା ଓ ଚେତନାର ଉଦ୍ଭବ ତଥା ବିକାଶ ନିମନ୍ତେ ପ୍ରୟୋଗବାଦୀ ବୈଦାନ୍ତିକ ଅନୁଚିନ୍ତା ଏବଂ ପ୍ରଥମ ବିଶ୍ୱଯୁଦ୍ଧର ଯଥାର୍ଥ ପ୍ରଭାବ ଅନେକାଂଶରେ ଦାୟୀ । ବିଶ୍ୱଏକତା ଥିଲା ଉତ୍କଳମଣି ଗୋପବନ୍ଧୁଙ୍କର ମହନୀୟ ଲକ୍ଷ୍ୟ । ଏଥିପାଇଁ ସେ ବ୍ୟକ୍ତିଗତ ଭାବରେ ପ୍ରୟାସ ଓ ପ୍ରଚେଷ୍ଟା କରିବା ସଙ୍ଗେସଙ୍ଗେ ଅନ୍ୟମାନଙ୍କୁ ଏ ଦିଗରେ ଉତ୍ସାହିତ କରିଛନ୍ତି ତଥା ସାହିତ୍ୟ ମାଧ୍ୟମରେ ଉଦ୍‌ବୋଧନ ପ୍ରଦାନ କରିଛନ୍ତି ।'ପିତୃପକ୍ଷ ତର୍ପଣ' କବିତାରେ ତାଙ୍କର ବ୍ୟକ୍ତିତ୍ୱ ହୋଇଛି ଦୂର-ଦିଗନ୍ତ-ବିସ୍ତାରୀ । କାରାକକ୍ଷରେ ଆବଦ୍ଧ ଆନ୍ଦୋଳିତ କବିମାନସର ସ୍ୱର୍ଣ୍ଣକାତର ଆଲେଖ୍ୟ ଏଥିରେ ଅଙ୍କିତ । ନିଜର ପିତୃପୁରୁଷଙ୍କର ସନ୍ତୋଷ ବିଧାନ ନିମନ୍ତେ ବାଚନିକ ତର୍ପଣ ମାଧ୍ୟମରେ ଶ୍ରଦ୍ଧା ଅର୍ପଣ କରିବା ସଙ୍ଗେସଙ୍ଗେ ବିଶ୍ୱପ୍ରେମୀ ଗୋପବନ୍ଧୁ ସମଗ୍ର ବିଶ୍ୱର ଚରାଚରକୁ ସମ୍ମାନ ପ୍ରଦର୍ଶନ କରିଛନ୍ତି । ବସ୍ତୁତଃ ବିଶ୍ୱ ପରିବାର ଗଠନର ବାସନା ଏପରି କ୍ରିୟାତ୍ମକତାର ଭିତ୍ତିଭୂମି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

*'ନିଖିଳ ବ୍ରହ୍ମାଣ୍ଡବାସୀ ସର୍ବ ଚରାଚର*
*ଦେବତା ଅସୁର ନାଗ ରକ୍ଷ ସିଦ୍ଧନର*
*x x x x x*
*ଘେନ ମୋର ଜଳାଞ୍ଜଳି ଘେନ ନମସ୍କାର*
*ଦିବ୍ୟ ଅବଧାନେ ସର୍ବେ କର ହେ ବିଚାର ।' (ପିତୃପକ୍ଷ ତର୍ପଣ)*

କବିଚିତ୍ତ ବିଶ୍ୱ କଲ୍ୟାଣ କାମନାରେ ପବିତ୍ର ଓ ମଧୁମୟ ହୋଇଛି । ସମଗ୍ର ବିଶ୍ୱ ହେଉ ସମୃଦ୍ଧିର ଗନ୍ତାଘର, ଆନନ୍ଦର ମଧୁତୀର୍ଥ ଏବଂ ଏହାର କୋଣେ ଅନୁକୋଣେ ସଞ୍ଚରିତ ହେଉ ଅମର ସଙ୍ଗୀତର ଭୁବନମୋହିନୀ ସ୍ୱରଝଙ୍କାର । ସ୍ୱର୍ଗରୁ ଝରିଆସୁ ଦିବ୍ୟଚେତନାର ସୁଧାପ୍ରବାହ, ବିଶ୍ୱ ହେଉ ଦିବ୍ୟ ପରିବେଶର ଭବ୍ୟବିହାର-ଏ କଥାର ପ୍ରଦୀପ୍ତଉଲ୍ଲାସ କବିଙ୍କ ଲେଖନୀରେ ମୂର୍ତ୍ତିମନ୍ତ ହୋଇଛି ।

*'ହେଉ ମଧୁମୟ ଉଷା, ପ୍ରଦୋଷରଜନୀ*
*ନଭୋଦେଶେ ମଧୁମୟ ରବି ଦିନମଣି*
*ମଧୁମୟ ଗତେ ହେଉ ବିଶ୍ୱ ନିନାଦିତ*
*ଉଠୁ ବିଶ୍ୱପ୍ରାଣେ ମଧୁ ଅମୃତ ସଂଗୀତ ।'*

*(ପିତୃପକ୍ଷତର୍ପଣ)*

'କାଠଯୋଡ଼ିରେ ସାୟଂକାଳ' କବିତାରେ ସାୟଂକାଳର ଶୋଭା ବିଭବ ଉପସ୍ଥାପିତ । ଆକାଶର ରଙ୍ଗ ସମ୍ଭାରେ କବି ପ୍ରାଣ ପ୍ରଲୁବ୍ଧ ।ଏସବୁକୁ ଦେଖୁଦେଖୁ ତାଙ୍କ ମନ ହଜିଯାଇଛି ଭାବନାର କେଉଁ ଏକ ଦୂରଦିଗନ୍ତରେ । ନିଜକୁ ସେ ଖୋଜିଖୋଜି ଆବିଷ୍କାର କରିଛନ୍ତି ବିଶ୍ୱ ପରିବାରର ଜଣେ ସଦସ୍ୟ ଭାବରେ । ସେ ପୁଣି ବିଶ୍ୱ ଭାବନାରେ ଭାବିତ ହୋଇ ନିଜେ ପରିଣତ ହୋଇଛନ୍ତି ଏଇ ବିରାଟ ବିଶ୍ୱରେ । ସେ ବିଶ୍ୱ ମଧ୍ୟରେ ଓ ବିଶ୍ୱ ତାଙ୍କ ମଧ୍ୟରେ – ଏହା ହୋଇଛି ତାଙ୍କର ମହତ୍ତମ ଉପଲବ୍ଧି ।

*'ସର୍ବ ଅନୁଭୂତି ସର୍ବଭୂତେ ତା'ର*
*ତା' ଦୃଷ୍ଟିରେ ବିଶ୍ୱ ଏକ ପରିବାର*
*ସେହି ନିଜେ ବିଶ୍ୱ, ବିଶ୍ୱ ମଧ୍ୟେ ସେହି*
*ଅନ୍ୟ ହୋଇ ତା'ର ଆଉ କେହି ନାହିଁ ।'*

*(କାଠଯୋଡ଼ି ତୀରେ ସାୟଂକାଳ-୧)*

ଏଥିରେ ବେଦାନ୍ତ ଦର୍ଶନର ପ୍ରଭାବକୁ ଅସ୍ୱୀକାର କରିହେବ ନାହିଁ । ଆଧୁନିକ ଓଡ଼ିଆ ସାହିତ୍ୟରେ ଏପରି 'Global thought' ପ୍ରଥମେ ଆଣିଥିବାରୁ ଗୋପବନ୍ଧୁ ପ୍ରାତଃସ୍ମରଣୀୟ ।

ଏକ ସୂତ୍ରରେ ଅଞ୍ଚଳ, ଦେଶ ଓ ବିଶ୍ୱକୁ ବାନ୍ଧିବାର ପ୍ରୟାସର ଅନ୍ୟ ନାମ ବିଶ୍ୱଗ୍ରାମ ଗଠନର ବିମୁଗ୍ଧ ଅନୁଚିନ୍ତା । କବି ଗୋପବନ୍ଧୁଙ୍କର ଉତ୍କଳୀୟ

ଜାତୀୟତା, ଭାରତୀୟ ଜାତୀୟତା ଓ ବିଶ୍ୱପ୍ରାଣତା ଏକ ହିଁ ସୂତ୍ରରେ ଗୁନ୍ଥା । ସେ ଥିଲେ ଏକାଧାରରେ ଉତ୍କଳର, ଭାରତର ତଥା ବିଶ୍ୱର ଜଣେ ନାଗରିକ । ଏପରି ଭାବଧାରା ସେ ସମୟରେ କାହିଁକି ଆଜି ମଧ୍ୟ ଦୁର୍ଲ୍ଲଭ । ବିଶ୍ୱ ପରିବାର ଗଠନ ନିମନ୍ତେ ଥିବା ଅନେକ ସମସ୍ୟାର ଏହା ହିଁ ଏକ ସରଳ ଓ ବାସ୍ତବ ସମାଧାନ । ଏହି ସମାଧାନ କିଏ ଜଣେ ଦେବତା ସତେ ଅବା ଗୋପବନ୍ଧୁଙ୍କ ମାଧ୍ୟମରେ ଆସି ଦେଇଗଲେ । ଗୋପବନ୍ଧୁ ବୁଝି ବୁଝାଇ ଦେଇଗଲେ ଯେ ସଂକୀର୍ଣ୍ଣତା ହିଁ ମୃତ୍ୟୁ, ପ୍ରସାରଣଶୀଳତା ହିଁ ଜୀବନ ।

ସମଗ୍ର ଜୀବନର ମୁଖ୍ୟାଂଶକୁ ଅନ୍ୟର ସେବାରେ ନିଯୁକ୍ତ କରି ଉତ୍କଳମଣି ଗୋପବନ୍ଧୁ ଅଶେଷ ଆତ୍ମସନ୍ତୋଷ ପାଇଛନ୍ତି । ଧୂପ ପରି ଜଳିଜଳି ସେ ସୁବାସ ବିତରଣ କରିଛନ୍ତି, ଦୀପ ପରି ଜଳିଜଳି ଅନ୍ୟକୁ ଆଲୋକ ଦାନ କରିଛନ୍ତି । ସାହିତ୍ୟ ସର୍ଜନା ପାଇଁ ସେ ଅଧିକ ସମୟ ପାଇନାହାନ୍ତି । ଉଭୟ ଗଦ୍ୟ ସାହିତ୍ୟ ଓ ପଦ୍ୟ ସାହିତ୍ୟରେ ଲେଖନୀ ଚାଳନା କରିଛନ୍ତି । ତାଙ୍କ ଗଦ୍ୟ ସାହିତ୍ୟ ଉଭୟ ଗୁଣାତ୍ମକ ଓ ପରିମାଣାତ୍ମକ ଦୃଷ୍ଟିରୁ ଋଦ୍ଧିମନ୍ତ । ମାତ୍ର ତାଙ୍କର ପଦ୍ୟ ସାହିତ୍ୟ ଗୁଣାତ୍ମକ ଦୃଷ୍ଟିରୁ ସମୃଦ୍ଧ ହେଲେ ହେଁ ପରିମାଣାତ୍ମକ ଦୃଷ୍ଟିରୁ ଅଧିକ ନୁହେଁ । ସରଳ ଭାଷା, ସାବଲୀଳ ଛନ୍ଦ, ଲଳିତ ମାନସିକତା, ଗଭୀର ହୃଦୟବତ୍ତା ଓ ଅନୁପମ ଶୈଳୀର ସମନ୍ୱୟରେ ତାଙ୍କ କବିତାର ଆବେଦନ ହୋଇଛି ସ୍ୱତନ୍ତ୍ର ଓ ସୁଠାମ । ଥରେ ପଢ଼ିଲେ ତାକୁ ଆଉଥରେ ପଢ଼ିବାକୁ ଇଚ୍ଛା ହୁଏ, ବହୁ ଚିତ୍ର ନୟନ ପଥରେ ବାରମ୍ବାର ନାଚିଉଠେ । ଜୀବନୀ ଶକ୍ତିରେ ଭରପୂର ପ୍ରତ୍ୟେକ କବିତାର ପ୍ରତ୍ୟେକ ପଂକ୍ତି ଉତ୍ତମ ଅନୁଶୀଳନ ଓ ବିଶ୍ଳେଷଣର ଅପେକ୍ଷା ରଖେ । ମନେ ହୁଏ ପ୍ରତ୍ୟେକ କବିତା ସତେ ଯେପରି ଅନ୍ଧକାରର ବୁକୁ ଚିରି ଆସୁଥିବା ଏକଏକ ଆଲୋକ ରେଖା ।

କବି ଗୋପବନ୍ଧୁଙ୍କର ପଦ୍ୟ ସୃଷ୍ଟିର ସ୍ୱଳ୍ପତା ନିମନ୍ତେ ଗୋଟିଏ ଘଟଣା କେତେକାଂଶରେ ଦାୟୀ ବୋଲି କୁହାଯାଇପାରେ । ଘଟଣାଟି ହେଲା, ଗୋପବନ୍ଧୁ କଟକରେ ଏଫ୍.ଏ ପଢୁଥିବାବେଳେ 'କଳ୍ପଲତିକା' ନାମରେ ୧୮ ସର୍ଗ ବିଶିଷ୍ଟ ଏକ ମହାକାବ୍ୟ ଲେଖିଥିଲେ । ଏହି ଲେଖାକୁ ଦେଖି କବି ଗୋପବନ୍ଧୁଙ୍କୁ କବିବର ରାଧାନାଥ ରାୟ ପ୍ରଶଂସା କରି କହିଥିଲେ, ''ତୁମେ ସୁକବି ହୋଇ ଚିରଜୀବୀ ହେବ, କାରଣ ତୁମ୍ଭ କବିତା ଲେଖା ମୌଳିକ ଓ ହୃଦୟ ନିଃସୃତ ।'' ଅତ୍ୟନ୍ତ ଦୁଃଖର କଥା ଯେ ଉକ୍ତ ମହାକାବ୍ୟର

ପାଣ୍ଡୁଲିପିଟିକୁ ଖରାଛୁଟିରେ ପୁରୀ ଯିବା ବେଳେ ଜଟଣୀ ଷ୍ଟେସନରେ ଗୋପବନ୍ଧୁ ଛାଡ଼ିଗଲେ । ପାଣ୍ଡୁଲିପିଟି ହଜିଯିବା ଘଟଣା କବି ଚିତ୍ତକୁ ଏତେ ଆଲୋଡ଼ିତ ଓ ଯନ୍ତ୍ରଣା ଜର୍ଜରିତ କଲା ଯେ ସେହି ଦିନଠାରୁ ବେଶ୍ କିଛି ବର୍ଷ ପର୍ଯ୍ୟନ୍ତ ସେ ଆଉ କବିତା ଲେଖି ପାରିଲେ ନାହିଁ ।" କାରାବାସରେ ଥିଲା ବେଳେ ପୁନର୍ବାର ପଦ୍ୟ ସାହିତ୍ୟ ସର୍ଜନାରେ ଆତ୍ମନିୟୋଗ କଲେ ।

୧୮୭୭ ମସିହା ଅକ୍ଟୋବର ୯ ତାରିଖ ଦିନ ଜନ୍ମଗ୍ରହଣ କରି ଗୋପବନ୍ଧୁ ୧୯୨୮ ମସିହା ଜୁନ୍ ୧୭ ତାରିଖ ନେତ୍ରୋତ୍ସବ ଦିନ ମୃତ୍ୟୁ ବରଣ କରିଥିଲେ । ତାଙ୍କ ମୃତ୍ୟୁରେ ମର୍ମାହତ ହୋଇ କେତେକ ମନୀଷୀ ଯେଉଁ ମନ୍ତବ୍ୟ ପ୍ରଦାନ କରିଥିଲେ ତାହା ପ୍ରଣିଧାନଯୋଗ୍ୟ ।

ମହାତ୍ମାଗାନ୍ଧୀଙ୍କ ମତରେ, "ପଣ୍ଡିତ ଗୋପବନ୍ଧୁଙ୍କ ମୃତ୍ୟୁରେ ଦେଶ ଅଧିକତର ଦରିଦ୍ର ହେଲା । ସେ ଆମମାନଙ୍କ ମଧ୍ୟରେ ଜୀବଦ୍ଦଶାରେ ନଥିଲେ ମଧ୍ୟ ତାଙ୍କର ଆତ୍ମା ଆମମାନଙ୍କର ମଧ୍ୟରେ ଅଛି । ସେହି ପୁଣ୍ୟାତ୍ମା ଓଡ଼ିଶାର କର୍ମୀମାନଙ୍କର ପଥ ପ୍ରଦର୍ଶକ ହେଉ । ଏହି ସ୍ୱର୍ଗୀୟ ସ୍ୱଦେଶ-ପ୍ରେମିକଙ୍କର ଆତ୍ମୀୟସ୍ୱଜନ ଓ ଶିଷ୍ୟବର୍ଗଙ୍କୁ ମୋର ଶୋକ ଜଣାଉଅଛି ।"

ଲାଲା ଲଜପତରାୟଙ୍କ ମତରେ, "ପଣ୍ଡିତ ଗୋପବନ୍ଧୁ ଦାସଙ୍କ ମୃତ୍ୟୁରେ କେବଳ ଓଡ଼ିଶାର ନୁହେଁ ସମଗ୍ର ଭାରତର ସାଧାରଣ ଜୀବନରେ ଗୋଟିଏ ସ୍ଥାନ ଶୂନ୍ୟ ହୋଇଗଲା । ସେ ଶୂନ୍ୟସ୍ଥାନ ପୂରଣ ହେବା ଅସମ୍ଭବ । ଗୋପବନ୍ଧୁଙ୍କ ପରି ବେଶୀ ସରଳ ଓ ଦେଶ କାର୍ଯ୍ୟରେ ବେଶୀ ନିଷ୍ଠାବାନ ସାଧାରଣ କର୍ମୀ ଭାରତ ପାଇପାରିବ ନାହିଁ ।"

ସୁଭାଷଚନ୍ଦ୍ର ବୋଷଙ୍କ ମତରେ, "ଅସହଯୋଗ ପୂର୍ବେ ଓ ପରେ ମୁଁ ଅନେକଥର ପଣ୍ଡିତଜୀଙ୍କ ସଙ୍ଗେ ସାକ୍ଷାତ୍ କରିଥିଲି ଏବଂ ତାଙ୍କ ପ୍ରତି ମୋର ଖୁବ୍ ଭକ୍ତି ଥିଲା । ଓଡ଼ିଶାରେ ମୁଁ ଜନ୍ମ ଓ ଲାଳିତ ପାଳିତ ହୋଇଥିବା ଯୋଗୁଁ ଗୋପବନ୍ଧୁ ବାବୁଙ୍କ ମୃତ୍ୟୁରେ ଓଡ଼ିଆ ଜଣେ ତାଙ୍କର ଅଭାବ ଯେପରି ତୀବ୍ର ଭାବରେ ଅନୁଭବ କରୁଥିବ, ମୁଁ ମଧ୍ୟ ସେହିପରି ଅନୁଭବ କରୁଅଛି । ମୋର ଏକାନ୍ତ ଅନୁରୋଧ, ଓଡ଼ିଶାର ଯୁବକବୃନ୍ଦ ଏହି ଦୁର୍ଦ୍ଦିନରେ କାର୍ଯ୍ୟକ୍ଷେତ୍ରକୁ ବାହାରି ପଡ଼ି ଗୋପବନ୍ଧୁଙ୍କ ପତାକା ଧରି ରଖିବେ ।"

ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ମତରେ, "ଆମ୍ଭମାନଙ୍କର ଜୀବନ ଅଲଗା ହେଲେ କ'ଣ ହେବ, ଆମ୍ଭମାନଙ୍କର ମତଦ୍ୱୈଧ ଥିଲେ

କ'ଣ ହେବ, ଗୋପବନ୍ଧୁଙ୍କର ଜୀବନ ମହତ୍ । ଏହା ଉତ୍କଳର ଜାତୀୟ ସମ୍ପଦ । ମୋର ଆଶା, ସେ ଯେଉଁ କାର୍ଯ୍ୟ ବାକି ରଖିଛନ୍ତି, ତାହାଙ୍କର ବନ୍ଧୁ ତାହା ଚଳାଇବେ । ପରଲୋକଗତ ନେତାଙ୍କର କାର୍ଯ୍ୟ ଚଳାଇବା ହିଁ ତାଙ୍କ ପକ୍ଷେ ଶ୍ରେଷ୍ଠ ସମ୍ମାନ ।''

ଆଜି ବିଶାଳ ବିଶ୍ୱକୁ ଗୋଟିଏ ସୂତ୍ରରେ ବାନ୍ଧିବାର ପ୍ରୟାସ ଓ ଉଦ୍ୟମ ବହୁଳ ଭାବରେ କରାଯାଉଛି । ବିଜ୍ଞାନ, ବିଶ୍ୱଅର୍ଥନୀତି ଏ ଦିଗରେ ଅଧିକରୁ ଅଧିକ କ୍ରିୟାଶୀଳ । ତେବେ ଏଥିପାଇଁ ସର୍ବୋତ୍ତମ ଉପାଦାନ ଓ ଉପକରଣ ହେଉଛି ମାନବିକତା । ଦୂରଦିଗନ୍ତ ବିସ୍ତାରୀ ମାନସିକତାର ଭିତ୍ତିରେ ହିଁ ବିଶ୍ୱନାଗରିକତ୍ୱର ପ୍ରାଣ ପ୍ରତିଷ୍ଠା । ବ୍ୟକ୍ତିପ୍ରାଣର ଅସୀମ ପ୍ରସାରଣରେ ବିଶ୍ୱପ୍ରାଣର ଅଭିଷେକ କେବଳ ସମ୍ଭବ । ଏହି ପ୍ରେକ୍ଷାପଟରେ ଗୋପବନ୍ଧୁଙ୍କ ଅନୁଭବ ଏହିପରି-

*'ମୋ' ପ୍ରାଣ ପ୍ରେମଧାରେ ଭାସିବ ଧରା*
*ହେବ ଏ ବିଶ୍ୱ ମୋର ପ୍ରେମ ପସରା ।'*

*(ବିଶ୍ୱର ମିଳନ ଚିତ୍ର)*



---

• ଶ୍ରୀ ଭାବଗ୍ରାହୀ ପତିଙ୍କ ଦ୍ୱାରା ଲିଖିତ 'ଦେଶପ୍ରାଣ ଗୋପବନ୍ଧୁ' ଶୀର୍ଷକ ପୁସ୍ତକର ତୃତୀୟ ମୁଦ୍ରଣ ୧୯୪୭ ମସିହାରେ ଚୌ: ଶ୍ରୀ ଲୋକନାଥ ନନ୍ଦଙ୍କ ଦ୍ୱାରା ସାରସ୍ୱତ ଭଣ୍ଡାର, ବାଲୁବଜାର, ମାଧମରେ ପ୍ରକାଶିତ ହୋଇଥିଲା । ଏହି ପୁସ୍ତକର ଆଠ ପୃଷ୍ଠାରେ ଉକ୍ତ ପାଣ୍ଡୁଲିପି ହଜିବା ଘଟଣାର ଉଲ୍ଲେଖ ରହିଛି ।

# ପଦ୍ମପାଖୁଡ଼ାର କବି ପଦ୍ମଚରଣ

*"ଫକୀରମୋହନ, ମଧୁସୂଦନ, ନନ୍ଦକିଶୋର ପ୍ରଭୃତିଙ୍କ ଦ୍ୱାରା ଆଧୁନିକ ଯୁଗରେ ଓଡ଼ିଆ ଗୀତିକବିତାର ଯେଉଁ ରମଣୀୟ ଉଦ୍ୟାନ ରଚିତ ହୋଇଥିଲା, ତହିଁରେ କବି ପଦ୍ମଚରଣ ଚିର ଅମ୍ଳାନ ପଦ୍ମପାଖୁଡ଼ା, ଗୋଲାପଗୁଚ୍ଛ, ଆଶାମଞ୍ଜରୀ ବିଚ୍ଛୁରିତ କରି ଯାଇଅଛନ୍ତି । ଏଣୁ ପୂର୍ବୋକ୍ତ ଓଡ଼ିଆ ଗୀତିକବିତାର ପୁରୋଧା ତ୍ରୟଙ୍କ ପରେ ପଦ୍ମଚରଣଙ୍କ ନାମ ହିଁ ସର୍ବାଗ୍ରେ ଉଲ୍ଲେଖଯୋଗ୍ୟ ।"*

– ଡଃ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)

ଗୀତିକବିତା, ସାହିତ୍ୟର ଏକ ବିଶିଷ୍ଟ ବିଭାଗ । ସ୍ରଷ୍ଟା ଜୀବନର ମୁଗ୍ଧ ଅନୁଭବ ଏଥିରେ ସାଙ୍ଗୀତିକତା ମାଧ୍ୟମରେ ଅଭିବ୍ୟକ୍ତ ହୋଇଥାଏ । ନୀରସ ମନରେ ସରସତା ଭରିଦେବାକୁ, କ୍ଳାନ୍ତ ପାଦରେ ଶକ୍ତି ସଞ୍ଚାର କରିବାକୁ ଏହାର ସାମର୍ଥ୍ୟ ଅବିସମ୍ବାଦିତ । ଅଳ୍ପଶବ୍ଦରେ ବହୁ ଭାବର ଉପସ୍ଥାପନା ଗୀତିକବିତାର ଅନ୍ୟତମ ବୈଶିଷ୍ଟ୍ୟ । ବ୍ୟକ୍ତିଗତ ଅନୁଭୂତିର ବିଭୂତିରେ ଋଦ୍ଧିମନ୍ତ ହେଲେ ହେଁ ଆତ୍ମାତିକ୍ରମଣ ଫଳରେ ତାହା ବହୁବ୍ୟକ୍ତିଙ୍କର ଅନୁଭୂତିର ପ୍ରତିନିଧିତ୍ୱ କରିପାରେ । ଏ ପ୍ରତିନିଧିତ୍ୱ ଯେତେ ବଳିଷ୍ଠ ହୁଏ, ଗୀତିକବିତା ସେତେ ଉଚ୍ଚକୋଟୀର ହୁଏ ।

କବି ପଦ୍ମଚରଣଙ୍କ ନାମ ଆଧୁନିକ ଓଡ଼ିଆ ଗୀତିକବିତା ରାଜ୍ୟରେ ଏକ ସଶ୍ରଦ୍ଧ ଉଚ୍ଚାରଣ । ଜନ୍ମ ତାଙ୍କର ହୋଇଥିଲା ୧୮୮୫ ମସିହାରେ କଟଣୀ ନିକଟସ୍ଥ ପାଞ୍ଚଗାଁ ଗ୍ରାମରେ । ପିତାଙ୍କ ନାମ ଗୋପୀନାଥ ପଟ୍ଟନାୟକ ଓ ମାତାଙ୍କ ନାମ ଅନ୍ନପୂର୍ଣ୍ଣା ଦେବୀ । ପୁରୀ ଜିଲ୍ଲାସ୍କୁଲରୁ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପଦ୍ମଚରଣ ଉଚ୍ଚଶିକ୍ଷା ନିମନ୍ତେ ରେଭେନ୍‌ସା କଲେଜରେ ନାମ ଲେଖାଇଲେ । ବି.ଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବପାରେ ଏମ୍.ଏ ପଢ଼ିବା ନିମନ୍ତେ ସେ କଲିକତା ଯାଇଥିଲେ । କୌଣସି କାରଣରୁ ଏମ୍.ଏ ପଢ଼ା ଅସମାପ୍ତ ରଖି ସେଠାରେ ସେ ଆଇନ ଶିକ୍ଷାରେ ଆତ୍ମନିୟୋଗ କଲେ । ଓଡ଼ିଶାକୁ ଫେରି ୧୯୧୬ ମସିହାରେ ପୁରୀଠାରେ ଓକିଲାତି ଆରମ୍ଭ କଲେ । ୧୯୫୬ ମସିହାରେ ସେ ଇହଲୀଳା ସମ୍ବରଣ କରିଥିଲେ ।

ଆଇନଜୀବୀ ଭାବରେ ପଦ୍ମଚରଣ ଯେତିକି ପରିଚିତ ଥିଲେ ତା'ଠାରୁ ଅଧିକ ପରିଚିତ ଥିଲେ କବି ଭାବରେ । ମାଟିଦେହ ମାଟିରେ ମିଶିଗଲେ ମଧ୍ୟ ଯଶୋଦେହରେ ସେ ଅମରତ୍ୱର ଅଧିକାରୀ । କବି ପଦ୍ମଚରଣଙ୍କର ଗୀତିକବିତା ପୁସ୍ତକଗୁଡ଼ିକ ୧୯୨୮ ରୁ ୧୯୪୫ ମସିହା ଭିତରେ ପ୍ରାୟତଃ ପ୍ରକାଶିତ ହୋଇଥିଲା । ଅବଶ୍ୟ ୧୯୨୮ ପୂର୍ବରୁ ବିଭିନ୍ନ ପତ୍ରପତ୍ରିକାରେ କବିଙ୍କର କେତେକ କବିତା ପ୍ରକାଶ ପାଇଥିଲା । ତାଙ୍କ କାବ୍ୟମାନସର ବଳିଷ୍ଠ ପରିପ୍ରକାଶ ଘଟିଛି ମୁଖ୍ୟତଃ ତିନିଗୋଟି ଗୀତିକବିତା ସଂକଳନରେ । ସେଗୁଡ଼ିକ ହେଉଛି ପଦ୍ମପାଖୁଡ଼ା, ଗୋଲାପଗୁଚ୍ଛ, ସୂର୍ଯ୍ୟମୁଖୀ ।

'ପଦ୍ମପାଖୁଡ଼ା' କବିଙ୍କର ପ୍ରଥମ ଗୀତିକବିତା ସଂକଳନ । ଏହା ୧୯୨୮ ମସିହାରେ ପ୍ରଥମେ ପ୍ରକାଶିତ ହୋଇଥିଲା ଏହି ସଂକଳନରେ ସନ୍ନିବେଶିତ ପ୍ରତ୍ୟେକ କବିତା ପୂର୍ବରୁ ତତ୍କାଳୀନ ପ୍ରତିଷ୍ଠିତ ସାହିତ୍ୟ ପତ୍ରିକା 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହୋଇଥିଲା । ବିଦ୍ୟାଳୟ ଓ ମହାବିଦ୍ୟାଳୟର ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ହୋଇ ପୁସ୍ତକଟି ହୋଇଥିଲା ବିଶେଷ ଭାବରେ ଲୋକପ୍ରିୟ । ୧୯୩୬ ମସିହାରେ ପଦ୍ମପାଖୁଡ଼ାର ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହୋଇଥିଲା ଯାହାର ପ୍ରକାଶକ ଥିଲେ କଟକ ପବ୍ଲିଶିଙ୍ଗ ହାଉସ । ଭୂମିକାରେ କବି ଲେଖିଥିଲେ, "୮ ବର୍ଷ ପରେ 'ପଦ୍ମ ପାଖୁଡ଼ା'ର ୨ୟ ସଂସ୍କରଣ ବାହାର କରିବାର ଆବଶ୍ୟକ ହେଲା । ଏଥିମଧ୍ୟରେ ବିଭିନ୍ନ ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷମାନେ ଏହାକୁ ସ୍କୁଲ ଓ କଲେଜର ପାଠ୍ୟପୁସ୍ତକ ରୂପେ ନିର୍ବାଚନ କରି ଦେଶର ଯୁବକମାନଙ୍କ ହସ୍ତରେ ଏହାକୁ ବହୁଳ ପରିମାଣରେ ଦେବାର ସୁଯୋଗ ଦେଇଥିବାରୁ ଗ୍ରନ୍ଥକାର ସେମାନଙ୍କ ନିକଟରେ କୃତଜ୍ଞ ।" ଆଲୋଚ୍ୟ କବିତାଗୁଚ୍ଛରେ ୩୨ ଗୋଟି କବିତା ସନ୍ନିବେଶିତ । ସେଗୁଡ଼ିକ ଏହିପରି – 'ହେ ବିଶ୍ୱ', 'ଚିର ସୁନ୍ଦରୀ', 'ନାଉରୀ ଗୀତ', 'ଧଉଳି ପାହାଡ଼', 'ମୋ ଅଭିମାନ', 'ଅଭାଗିନୀ', 'କିଏ ତୁମ୍ଭେ ?', 'ବିଜୟିନୀ', 'ରୂପସୀ', 'ନାଚନାଚ ଗୌରାଙ୍ଗ', 'ତ୍ରିବେଣୀ ତଟେ', 'ଷୋଡ଼ଶୀ', 'ବ୍ୟର୍ଥ ପ୍ରୟାସ', 'ରାଜପୁତ ଚାରଣ ଗୀତ', 'ରାଜାଜ୍ଞା','କାର୍ତ୍ତିକ ଦୀପ', 'କେଉଁ ଦେଶେଅଛ ?','ବିରହେ', 'ପ୍ରବାସୀ ସୈନିକର ଶେଷଚିନ୍ତା', 'ଖୋରଧା ପ୍ରଥମ ଦର୍ଶନେ', 'ନାମକରଣ', 'ନବଜୀବନେ', 'ଆଲେଖ୍ୟ', 'ବିଷମ ପରୀକ୍ଷା', 'ନାଉରୀ ଗୀତ', 'ଯୁଗ୍ମଚିତ୍ର', 'ପୃଥ୍ୱୀରାଜଙ୍କ ପତ୍ର', 'ପାଷାଣୀ',

'କବିର କୃତଜ୍ଞତା', 'ମନେରଖ', 'କବିତାର ପୁରସ୍କାର', 'ମୋ ମରଣଟା ହେଉ ଆଛା ଭଲ' । ଏତଦ୍‌ବ୍ୟତୀତ ଏଥିମଧ୍ୟରୁ କେତୋଟି କବିତାର ଅନ୍ତଟିପ୍ପଣୀ ପୁସ୍ତକର ଶେଷାଂଶରେ ସଂଯୋଜିତ ।

ପଦ୍ମପାଖୁଡ଼ା ଆଧୁନିକ ଓଡ଼ିଆ ଗୀତିକବିତା ରାଜ୍ୟର ଏକ ସୁବର୍ଣ୍ଣ-କୀର୍ତ୍ତିସ୍ତମ୍ଭ । ଏହାର ବିଶେଷତ୍ୱକୁ ଉପଲବ୍ଧି କରି ବିଶିଷ୍ଟ ସମାଲୋଚକ ଗିରିଜାଶଙ୍କର ରାୟ ମତ ଦେଇଛନ୍ତି – "ଆପଣଙ୍କ 'ପଦ୍ମ ପାଖୁଡ଼ା' ମୁଁ ସଯତ୍ନେ ସଂପୂର୍ଣ୍ଣ ରୂପେ ପଢ଼ିଅଛି । ବହିଖଣ୍ଡିକ ଭାଷା ଓ ଭାବ ଉଭୟ ଦିଗରୁ ଅତି ଚମତ୍କାର ହୋଇଅଛି । ବାସ୍ତବରେ ଓଡ଼ିଆ ଭାଷାରେ ଗୀତିକବିତାର ଯେପରି ଅଭାବ ସେଥିରେ ଏ ବହିଖଣ୍ଡିକ ଓଡ଼ିଆ ସାହିତ୍ୟରେ ଗୋଟିଏ ଅମୂଲ୍ୟ ରତ୍ନ ହୋଇରହିବ ।"

ପଦ୍ମଚରଣଙ୍କୁ ଭକ୍ତିପୂତ ପ୍ରଣାମ ଜଣାଇ ବିଦ୍ୟୁତ୍‌ପ୍ରଭା ଗୋଟିଏ କବିତା ରଚନା କରିଛନ୍ତି । ଏହି କବିତାରେ ପଦ୍ମଚରଣଙ୍କୁ 'ପଦ୍ମପାଖୁଡ଼ା'ର କବି ବୋଲି ସେ ସମ୍ବୋଧନ କରିଛନ୍ତି । ଏହି ସମ୍ବୋଧନ ହିଁ 'ପଦ୍ମପାଖୁଡ଼ା'ର ଲୋକପ୍ରିୟତାକୁ ପ୍ରମାଣ କରୁଛି ।

*'ପଦ୍ମପାଖୁଡ଼ା'ର କବି ହେ ପଦ୍ମଚରଣ !*
*ସାର୍ଥକ ଯାଇଛ କରି ଜୀବନର ପଣ*
*ଅଭାବକୁ କରି ଚିରପରମ ବାନ୍ଧବ ।*
*ଅମର ଯାଇଛ କରି ଅବଦାନ ତବ ।'*

ବିଭିନ୍ନ ଆଙ୍ଗିକତାର ସଫଳ ପ୍ରୟୋଗ ଉକ୍ତ ସଂକଳନରେ ଲକ୍ଷ୍ୟଣୀୟ । Sonnet formର ବ୍ୟବହାର ଆଲୋଚ୍ୟ ସଂକଳନର 'ଚିର ସୁନ୍ଦରୀ', 'ମୋ ଅଭିମାନ', 'ବିଜୟିନୀ', 'ରୂପସୀ', 'ଷୋଡଶୀ', 'ବ୍ୟର୍ଥପ୍ରୟାସ', 'ନାମକରଣ', 'ଯୁଗ୍ମଚିତ୍ର' ଓ 'ପାଷାଣୀ' ପ୍ରଭୃତି କବିତାରେ ଦେଖିବାକୁ ମିଳେ । ଏଥିମଧ୍ୟରୁ 'ଚିରସୁନ୍ଦରୀ', 'ନାମକରଣ', 'ଯୁଗ୍ମଚିତ୍ର' ଏବଂ 'ପାଷାଣୀ' କବିତାଗୁଡ଼ିକ ପ୍ରତ୍ୟେକ ଦୁଇଭାଗରେ ବିଭକ୍ତ । ପ୍ରତ୍ୟେକ ଭାଗ ଚତୁର୍ଦ୍ଦଶପଦରେ ରଚିତ । ଏଥିରୁ 'ନାମକରଣ' ହେଉଛି ଏକ ଅନୂଦିତ କବିତା । 'ଧଉଳି ପାହାଡ଼' ଓଡ଼ଧର୍ମୀ କବିତା ହୋଇଥିଲାବେଳେ 'ଅଭାଗିନୀ' ଶୀର୍ଷକ କବିତାରେ ସବୁଜ ଛନ୍ଦର ସୁପ୍ରଚଳନ ଲକ୍ଷ୍ୟ କରିହୁଏ । 'ବିରହେ', ଏବଂ 'ନାଉରୀ ଗୀତ' କବିକୃତ ଏକ ଏକ ସଫଳ ଅନୂଦିତ କବିତା । 'ପ୍ରବାସୀ ସୈନିକର ଶେଷଚିନ୍ତା' ଏକ ଛାୟାରଚିତ ମର୍ମସ୍ପର୍ଶୀ କବିତା ।

ଆତ୍ମିକ ଦୃଷ୍ଟିରୁ ବିଚାର କଲେ ପଦ୍ମପାଖୁଡ଼ାର କବିତାଗୁଡ଼ିକୁ ମୁଖ୍ୟତଃ ପାଞ୍ଚ ଭାଗରେ ବିଭକ୍ତ କରାଯାଇପାରେ । ସେଗୁଡ଼ିକ ଏହିପରି – (୧) ରହସ୍ୟବାଦୀ ରୋମାଣ୍ଟିକ କବିତା, (୨) ଦାମ୍ପତ୍ୟ ପ୍ରେମଭିତ୍ତିକ କବିତା, (୩) ଜାତୀୟତାବାଦୀ କବିତା, (୪) ଅଧ୍ୟାତ୍ମ ଭାବର କବିତା (୫) ଅନ୍ୟାନ୍ୟ କବିତା ।

## ରହସ୍ୟବାଦୀ ରୋମାଣ୍ଟିକ କବିତା -

ରହସ୍ୟବାଦ ଓ ଆଧିଭୌତିକତା ଏକା କଥା ନୁହେଁ । ଗୋଟିଏ ରଚନା ରହସ୍ୟବାଦୀ ହୋଇପାରେ ଅଥଚ ଆଧିଭୌତିକ ନହୋଇପାରେ । ପୁଣି ଆଉଗୋଟିଏ ରଚନା ଆଧିଭୌତିକ ହୋଇପାରେ ଅଥଚ ରହସ୍ୟବାଦୀ ନହୋଇପାରେ । ରହସ୍ୟବାଦ ବହୁମୁଖୀ ହେଲାବେଳେ ଆଧିଭୌତିକତା ଏକମୁଖୀ ସ୍ୱରର ସନ୍ଧାନ ଓ ସଙ୍କେତ ଦିଏ । ଆଧିଭୌତିକତା ଭୂମିର ଅତୀତ କଥା କହୁଥିଲାବେଳେ ଭୂମି ବ୍ୟତୀତ ରହସ୍ୟବାଦର ପରିକଳ୍ପନା ଅସମ୍ଭବ ।

ଲାଟିନ Mystica ଶବ୍ଦରୁ Mysticism ଶବ୍ଦର ସୃଷ୍ଟି । Encyclopedia Britanica ଗ୍ରନ୍ଥ ଅନୁସାରେ Mystics ର ଅର୍ଥହେଉଛି - "The immediate experience of oneness with ultimate reality".

ରୋମାଣ୍ଟିସିଜିମ୍‌ର କେତେଗୁଡ଼ିଏ ଉପାଦନ ଭିତରୁ ଗୋଟିଏ ଉପାଦାନ ହେଉଛି କଳ୍ପନା ପ୍ରାବଲ୍ୟ ଏବଂ ଆଉ ଗୋଟିଏ ହେଉଛି ପ୍ରକୃତି ପ୍ରତି ଆତ୍ମୀୟତା । କଳ୍ପନା ପ୍ରାବଲ୍ୟ ଭିତରେ ଯୁକ୍ତି ଅପେକ୍ଷା ଭାବାବେଗ ଅଧିକ ଥାଏ । କଳ୍ପନା ଶକ୍ତିକୁ ବ୍ୟକ୍ତିସତ୍ତାର ଏକ ଅବିଭକ୍ତ ଅଂଶ ବୋଲି ଏଥିରେ ବିଚାର କରାଯିବା ସଂଗେସଂଗେ ଅନ୍ତଃଦୃଷ୍ଟିର ଅନ୍ୟନାମ ବୋଲି ମଧ୍ୟ ଗ୍ରହଣ କରାଯାଏ । ପୁନଶ୍ଚ ପ୍ରକୃତି ପ୍ରତି ଆତ୍ମୀୟତାରେ ଥାଏ ପ୍ରକୃତି ସହ ସମମର୍ମିତା । ତେବେ ରହସ୍ୟବାଦୀ ରୋମାଣ୍ଟିକ୍ ରଚନାରେ ନିର୍ଦ୍ଦିଷ୍ଟ ନହେଲେ ହେଁ ଅନିର୍ଦ୍ଦିଷ୍ଟ ନୁହେଁ, ସାକାର ନହେଲେ ହେଁ ନିରାକାର ନୁହେଁ ଏପରି ଏକ ସତ୍ତା ପ୍ରତି ପ୍ରୀତିମୁଗ୍ଧ ଆମୁଖତା ଉପସ୍ଥାପିତ ହୋଇଥାଏ । ଯାହାଙ୍କ କଥା ଏଥିରେ କୁହାଯାଏ, ତାଙ୍କର ସ୍ଥିତି ଥାଏ ଅଧା ଛାଇ ଓ ଅଧା ଆଲୁଅରେ । ବେଳେ ତାଙ୍କୁ ବୁଝିହୁଏ, ବେଳେ ପୁଣି ବୁଝିହୁଏନା । ସେ କିଏ ? ସେ କ'ଣ ବିଶାଳବିଶ୍ୱରେ ପରିବ୍ୟାପ୍ତ ମୋହିନୀମାୟା ? ସେ କ'ଣ କ୍ଳାନ୍ତପଥିକର ଅଭିଳଷିତ ତରୁଛାୟା ? ସେ କ'ଣ ଲଳିତ କବିଚିତ୍ତର ସୁନ୍ଦର ଦୀପ୍ତିରେଖା ? ସେ କ'ଣ ମନ୍ତ୍ରମୁଗ୍ଧ ମାନସସତ୍ତାର ଅବିକମ୍ପ ଦୀପଶିଖା ?

ନିର୍ଦ୍ଦିଷ୍ଟ ପଟ୍ଟଭୂମିରେ ବାନ୍ଧିହୁଏ ନାହିଁ କବିର କଳ୍ପନା। ଅଶେଷ ଶବ୍ଦଚିତ୍ର ଏ ପରିପ୍ରେକ୍ଷୀରେ ତା' ଦୃଷ୍ଟିକୁ ଆକୃଷ୍ଟ କରେ। ତେବେ ସେ ଯାହାହେଉ ଏହା ସର୍ବବାଦୀ ସମ୍ମତ ଯେ ଭାବବିମୁଗ୍ଧତା ନୁହେଁ ବରଂ ଭାବତଲ୍ଲୀନତା ହିଁ ଏପରି କବିତାର ମର୍ମବାଣୀ । ଏପରି ଆବେଶରେ କବି ଚିତ୍ତରେ ଫୁଟିଯାଏ ଷଡ଼ଋତୁର ସୁବାସ-କୁସୁମ, ମଧୁମହକରେ ମହକି ଉଠେ ସୂକ୍ଷ୍ମ ମନ, ସୂକ୍ଷ୍ମପ୍ରାଣ ତଥା ସୂକ୍ଷ୍ମ ଶରୀରର କୋଣଅନୁକୋଣ । ସୂକ୍ଷ୍ମରୁ ସ୍ଥୂଳଭୂମିକୁ ଅବତରଣ କରି ତାହା ସ୍ଥୂଳପ୍ରାଣରେ ଅନୁପମ ପୁଲକ ଏବଂ ସ୍ଥୂଳ ଦେହରେ କଦମ୍ବ ରୋମାଞ୍ଚ ଭରିଦିଏ। ଦୂରଅତୀତ ଓ ମୂର୍ତ୍ତବର୍ତ୍ତମାନ ସେତେବେଳେ ଗୋଟିଏ ବୀଣା ତାରରେ ଝଙ୍କୃତ ହୋଇଉଠନ୍ତି । ବହିଃପ୍ରକୃତିର ମୋହନ ଆବେଶରେ କବିର ଚିତ୍ତବୃତ୍ତି ଅଭିଭୂତ ହୋଇ ଅସ୍ମିତା ହରାଇ ବସେ। ତାଙ୍କ ଆସିବା ବାଟକୁ ଚାହିଁ ବସିବାରେ ବିରକ୍ତି ନଥାଏ, ବରଂ ଥାଏ ଅନୁରକ୍ତିର ସୁବାସିତ ସରସତା। ବେଳେବେଳେ ତାଙ୍କ ରୂପବିଭା ଗୋଧୂଳି ଗଗନର ତାରା ଭିତରେ ଉକୁଟି ଉଠେ, ବେଳେବେଳେ ଅଳିର ଗୁଞ୍ଜନରେ ତାଙ୍କ ସ୍ୱର ଶୁଣାଯାଏ। ଆତ୍ମହରାହୋଇ କବି ଥରକୁ ଥର ଖୋଜୁଥାଏ ତାଙ୍କର ଠିକଣା। ପଦ୍ମଚରଣ ଏପରି ଠିକଣା ଖୋଜିବାରେ ଆନନ୍ଦମଗ୍ନ। କବିଙ୍କ ଭାଷାରେ:-

*'କେଉଁ ଦେଶେ ଅଛ ପରାଣର ବନ୍ଧୁ*
*କେଉଁ କୁଞ୍ଜେ ଅଛ ବଢ଼ି ?*
*ରହିଛ କି ତୁମ୍ଭେ ବସନ୍ତ କୁସୁମ*
*ଅବା ମଧୁମାସ କଢ଼ି ?*

x x x x x

*ଆସୁଥାଇ ବାସ କୁସୁମ ପ୍ରସରି*
*ଶୁଭୁଥାଇ ଅଳିସ୍ୱନ,*
*ଦେଖିଲେ ସେ ଶୋଭା ତୁମ୍ଭେ କାହିଁଅଛ*
*ମୋତେ ପଚାରେ ମୋ ମନ ।'*

*(କେଉଁ ଦେଶେ ଅଛ ?)*

'ତୁମ୍ଭେ' ଶବ୍ଦର ବାରମ୍ବାର ପ୍ରୟୋଗ ଏହି କବିତାରେ ଥିଲେ ହେଁ ଏହାଦ୍ୱାରା କବିତା ଭାରାକ୍ରାନ୍ତ ନହୋଇ ବରଂ ହୋଇଛି ଅଳଙ୍କୃତ ।

ଶ୍ରୀଅରବିନ୍ଦଙ୍କ ଭାଷାରେ - "Mysitic poetry does not mean any thing exactly or apparently, it means things suggestively and reconditely- things that are not known and classified by the intellect".(**Letters on Poetry, Literature and Art**)

ଏଥିରେ କବି ଚେତନାରେ ମାଟି ଓ ଆକାଶ ଗୋଟିଏ ମୁଦ୍ରାର ଦୁଇପାଖ ଭଳି ପରସ୍ପର ସହ ଜଡ଼ିତ ହୋଇଛି । ସଂକୀର୍ଣ୍ଣତାର ବଳୟକୁ ଭେଦକରି କବିଦୃଷ୍ଟି ପ୍ରସାରିତ ହୋଇଯାଇଛି ଦୂରତମ ଦୂରତାକୁ ଓ ଗଭୀରତମ ଗଭୀରତାକୁ । କବି ପଦ୍ମଚରଣଙ୍କର ଅନ୍ୟତମ କବିତା 'କିଏ ତୁମ୍ଭେ ?'ରେ ଏତାଦୃଶ ଭାବଧାରା ଉପସ୍ଥାପିତ । କବିତାର ନାୟକ କେତେବେଳେ ସାକାର ତ କେତେବେଳେ ନିରାକାର । କେତେବେଳେ କାୟା ତ କେତେବେଳେ ଛାୟା ।

*'କିଏ ତୁମ୍ଭେ ବସି ଚନ୍ଦ୍ର ମଣ୍ଡଳରେ*
*ତୁନିତୁନି କହ କଥା,*
*ସାତପରସ୍ତର ବାୟୁରାଶି ଭେଦି*
*ପ୍ରାଣେ ଆଣେ ନବ ବ୍ୟଥା ?*

*x x x x x*

*ଯାହା ମୁଁ ଦେଖୁଛି ତାହା କାହା କାୟା*
*ଅବା କାୟାରୂପୀ ଛାୟା,*
*ବୁଝିଲି ମୁଁ ଏବେ ଚାରିଦିଗେ ମୋର*
*ତୁମ୍ଭରି ମୋହିନୀ ମାୟା !' (କିଏ ତୁମ୍ଭେ !)*

ଅଭିବ୍ୟକ୍ତିରେ ସୁକୁମାରତା ଓ ଶ୍ରୁତିମଧୁରତା ଗୀତିକବିତାର ଏକ ଏକ ବିଶିଷ୍ଟ ବିଭବ । କବିର ଚିତ୍ତବୃତ୍ତି ନିର୍ବାଚିତ ଶବ୍ଦ ମାଧ୍ୟମରେ ପ୍ରକଟିତ ହୁଏ । ନିର୍ବାଚିତ ଶବ୍ଦର ଅର୍ଥ ହେଲା ପ୍ରଥମତଃ ଭାବାନୁସାରୀ ଭାଷାର ଚୟନ । ଏଥିପାଇଁ ଏକାନ୍ତ ଆବଶ୍ୟକ ଅଶେଷ ଦକ୍ଷତା ।

## ଦାମ୍ପତ୍ୟ ପ୍ରେମଭିତ୍ତିକ କବିତା -

'ପ୍ରବାସୀ ସୈନିକର ଶେଷଚିନ୍ତା' କବିପଦ୍ମଚରଣଙ୍କର ଏକ ଛାୟାରଚିତ କବିତା । ୧୯୧୫ ମସିହା ଅଗଷ୍ଟ ୬ ତାରିଖ 'Statesman' ରେ ଗୋଟିଏ News ପ୍ରକାଶିତ ହୋଇଥିଲା । News ଟି କବିଙ୍କ ମନରେ

ଗଭୀର ଭାବାନ୍ତର ସୃଷ୍ଟିକରିଥିଲା ଯାହାର ଭିତ୍ତିରେ ଆଲୋଚ୍ୟ କବିତାଟି ରଚିତ । ଏହା ଚିଠି ରୂପରେ ଲେଖାଯାଇଥିବା News ଟିଏ । ଗୁଳିବିଦ୍ଧ ହୋଇ ଆସନ୍ନମୃତ୍ୟ ଅପେକ୍ଷାରେ ଥିବା ସୈନିକର ଆତ୍ମଚିନ୍ତା ଏଥିରେ ଉପସ୍ଥାପିତ । ଯୁଦ୍ଧ ଭୂମିରେ ସେହି ଅବସ୍ଥାରେ ଚିଠିଲେଖିବା ସୈନିକଙ୍କ ପକ୍ଷରେ ସମ୍ପୂର୍ଣ୍ଣ ଅସମ୍ଭବ । ସେଠାରେ କର୍ତ୍ତବ୍ୟରତ ଡାକ୍ତରଙ୍କ ସହଚାରୀଙ୍କୁ ସେ କହିଥିବା ଜୀବନର ଶେଷ କଥା କେତେ ପଦକୁ ନେଇ News ଟି ସଂଗଠିତ । ସହକାରୀଙ୍କୁ ସେ ଅନୁରୋଧ କରି କହିଥିଲେ -

"If you would be so kind, write a letter for me to my wife to tell her I am dead. "

ସୈନିକଙ୍କର ବାର୍ତ୍ତା ଥିଲା ଏହିପରି -

"My beloved wife Lukerya petrowna,- I have to tell you that my last hour is come. God has not permitted that we should see one another again. Take care of Vasutka and Dunka. If you marry again, see that your new husband does not beat them. Sell the mare to Rane Ryzhoof, but not less than 70 roubles. That is its price today. Have the house whitewashed and accept three roubles from Peter Bezrucholf for the cats. Old uncle Vlass will whitewash the house for 20 kopeks.

I have been wounded in the back and the bullet has gone clean through me and come out through the breast. It was the will of the God. I think Lukerya, that it would be better to sell the calf and buy a colt of Gavirloff. Horses will continue to go up in price. Forgive me all, for the love of Christ".

ପ୍ରକାଶ ଯୋଗ୍ୟ ଯେ ଉପରୋକ୍ତ ତାରିଖର 'Statesman' ପାଇବା ଦୁରୂହ ବ୍ୟାପାର । ମୋର ଅନୁରୋଧ ରକ୍ଷା କରି ଜାତୀୟ ଗ୍ରନ୍ଥାଗାର (National Library) ରୁ ସେହିଦିନର 'Statesman' ଖୋଜି ତହିଁରୁ ଏହି News ଟି ସଂଗ୍ରହ କରି ମୋ ପାଖକୁ ପଠାଇଥିବାରୁ ମୁଁ ଏହି ଅବକାଶରେ ସେହି ପାଠାଗାରର ଉପଗ୍ରନ୍ଥାଗାରିକ ଶ୍ରୀଯୁକ୍ତ ସାଫଲ୍ୟ କୁମାର ନନ୍ଦୀ ମହୋଦୟଙ୍କୁ ଓ ଅଶେଷ କୃତଜ୍ଞତା ଜଣାଉଛି ।

ପଦ୍ମଚରଣଙ୍କ ଲେଖନୀରେ ଆଲୋଚ୍ୟ କବିତାରେ କୁହାଯାଇଛି ଯେ :- ସୈନିକଟିଏ ଯାଇଛି ଯୁଦ୍ଧ କ୍ଷେତ୍ରକୁ, ଘରେ ତାର ପତ୍ନୀ ଓ ଦୁଇଟି ଶିଶୁ ସନ୍ତାନ । ଯୁଦ୍ଧ ଭୂମିରେ ସୈନିକଟି ଗୁଳିବିଦ୍ଧ ହୋଇ ଆସନ୍ନ ମୃତ୍ୟୁର ଅପେକ୍ଷାରେ ଥିଲାବେଳେ ତା'ର ପ୍ରାଣପ୍ରିୟା ପତ୍ନୀ ପାଖକୁ ଚିଠିଟିଏ ଲେଖିଛି । ଲହୁ ଓ ଲୁହରେ ଭିଜା ଏଇ ଚିଠିର କବିତାଟି ଏତେ ମାର୍ମିକ ହୋଇଛି ଯେ ଜଣେ ସହୃଦୟ ପାଠକ ତାକୁ ପଢ଼ିଲେ ଭାବବିଭୋର ନହୋଇ ରହିପାରିବ ନାହିଁ । ଯନ୍ତ୍ରଣାରେ ଜର୍ଜରିତ ସୈନିକର ଶରୀର, ମୃତ୍ୟୁ ଆସନ୍ନ, ତୁହାକୁତୁହା ମନେପଡ଼ିଛି ପତ୍ନୀ ଓ ପିଲାମାନଙ୍କ କଥା । ଆଖିଆଗରେ ଭାସିଯାଇଛି ଗାଁ ଓ ଘରର ଚିତ୍ର ଛାୟାଛବି ପରି । କାମନା ଓ କଳ୍ପନାର ବାଲିଘର କାଳର ସୁନାମିରେ ଭାଙ୍ଗିପଡ଼ିଛି, ଧ୍ୱସ୍ତ ବିଧ୍ୱସ୍ତ ହୋଇଛି ଆଶା ଓ ଆକାଂକ୍ଷାର ସୁରମ୍ୟ ଉଦ୍ୟାନ । ମୂଳଲେଖାଠାରୁ ଅନୁବାଦଟି ବହୁଗୁଣରେ ହୃଦ୍ୟ ଓ ଅନୁଭବ୍ୟ ହୋଇଛି । କାରଣ ସୈନିକଙ୍କର ଅନୁଭବ ସହିତ ମିଶିଯାଇଛି ପଦ୍ମଚରଣଙ୍କ ଅନୁଭବ । ସୈନିକଟିର ଘରକୁ ଫେରିବାର ଆଶା କେବଳ ଆଶାରେ ହିଁ ରହିଯାଇଛି । ଏହି ଅବଶୋଷ ଜନିତ କେତେକ ପଂକ୍ତିର ସଂରଚନା ପଦ୍ମଚରଣ ଏହିପରି କରିଛନ୍ତି –

*'ସେ ସଉଭାଗ୍ୟ ଏ ଜୀବନେ ନ ଲେଖିଲା ବିଧି,*
*କେତେଦୂରେ ରହିଲୁ ତୁ ମୋ ଲାବଣ୍ୟନିଧି ।*
*କେତେଦୂରେ ରହିଲେ ମୋ ନୟନ ପିତୁଳି,*
*କେତେଦୂରେ ରହିଲା ସେ ମୋ ଆନନ୍ଦପୁରୀ ।'*

ଅନୁବାଦରେ ଥିବା 'ଲାବଣ୍ୟନିଧି' ଶବ୍ଦର ଆବେଦନ ଅସୀମ । ଏହି ଶବ୍ଦର ବିକଳ୍ପରେ ଆଉ ଯେ କୌଣସି ଶବ୍ଦ ବସାଇଲେ ସେହି ଶବ୍ଦ ଦ୍ୱାରା ସମୁଚିତ ଭାବସଂଚରଣ ଘଟିବ ନାହିଁ, ଦାମ୍ପତ୍ୟପ୍ରେମର ଦିଗନ୍ତବିସ୍ତାରୀ ଦୀପ୍ତି ଫୁଟିବ ନାହିଁ । ସୈନିକର ମୃତ୍ୟୁକାଳୀନ ଯନ୍ତ୍ରଣା ମୁହୂର୍ତ୍ତକପାଇଁ ତୁଚ୍ଛ ହୋଇଯାଇଛି ଯେତେବେଳେ ଜଳଜଳ ହୋଇ ଦିଶିଯାଇଛି ସରଳ ଶିଶୁଦୁଇଟିଙ୍କର ନିରୀହ ଚାହାଣି, ଅଜଣା ଦିଗରୁ ଭାସି ଆସିଛି ତାଙ୍କର ଦରୋଟି ବଚନ, ମନେପଡ଼ିଛି ବହୁ ସ୍ମୃତିସଞ୍ଚିତ ଘରର ପରିବେଶ । ଦିଶିଯାଇଛି ଚିଠି ପହଞ୍ଚିଲାପରେ ପତ୍ନୀର ସେ ଶୋକାକୁଳ ହୃଦୟବିଦାରକ ଦୁଃସହ ପାଦତଳୁ ମାଟିଖସିଯାଉଥିବା ବେଳର ମର୍ମନ୍ତୁଦ ଅସହାୟତା ।

ଅନୁବାଦରେ ପଦ୍ମଚରଣଙ୍କ ଭାଷା ଏହିପରି –

*'ଫିଟିଯିବ ତୋ କବରୀ ତୁଟିଯିବ ହାର*
*ଶୁଖିଯିବ ସେ ଅଧର ଜବା-ମନୋହର*
*ସେ ତପ୍ତକାଞ୍ଚନ ଅଙ୍ଗୁ ସ୍ୱେଦଧାରା ବହି*
*ଅଶ୍ରୁସ୍ରୋତ ସଙ୍ଗେମିଶି ତିନ୍ତାଇବ ମହୀ ।।'*

କବିତାର ଶେଷ ଅଂଶରେ ଯେଉଁ ଦାର୍ଶନିକ ଅନୁଚିନ୍ତା ଉପସ୍ଥାପିତ ହୋଇଛି ତାହା ସାର୍ବଜନୀନ ଓ ସର୍ବକାଳୀନ ସତ୍ୟଉପରେ ଆଧାରିତ । ପ୍ରେମ ହିଁ ମୃତ୍ୟୁକୁ ଜୟ କରିପାରେ ଏବଂ ଚିରନ୍ତନ ମୂଲ୍ୟବୋଧରେ ବିମଣ୍ଡିତ ହୋଇ ଜନ୍ମ-ଜନ୍ମାନ୍ତର ଜାଜ୍ୱଲ୍ୟମାନ ହୋଇ ରହିପାରେ । ଦେହର ପ୍ରେମଠାରୁ ବିଦେହର ପ୍ରେମ ଶତଗୁଣରେ ଜ୍ୟୋତିର୍ମୟ । ମୃତ୍ୟୁ ସମସ୍ତଙ୍କୁ ଜୟକରେ ମାତ୍ର ପ୍ରେମକୁ ଜୟକରିପାରେ ନାହିଁ । ପ୍ରେମ ନିକଟରୁ ଥରକୁଥର ହାରି ଶେଷରେ ନିଜର ଅସ୍ତିତ୍ୱ ହରାଇବସେ । ପ୍ରେମରାଜ୍ୟରେ ମରଣର ପ୍ରବେଶାଧିକାର ନାହିଁ – ଏକଥା ପଦ୍ମଚରଣଙ୍କ ଲେଖନୀରେ ଅଭିବ୍ୟକ୍ତ ହୋଇଛି –

*'ପ୍ରେମରାଜ୍ୟେ ମରଣର ନାହିଁ ଅଧିକାର*
*ଏହି ଆଶା ପୋଷି ସଖି, ତେଜିଲି ସଂସାର ।।'*

ଉକ୍ତ କବିତାଟିରେ ପଦ୍ମଚରଣଙ୍କର କବିତ୍ୱର ବର୍ଣ୍ଣିଳବିସ୍ତୃତିରେ ମୁଗ୍ଧ ହୋଇ ବିଶିଷ୍ଟ ପ୍ରାବନ୍ଧିକ ଶ୍ରୀ ଶଶିଭୂଷଣ ରାୟ କବିଙ୍କ ନିକଟକୁ ଲେଖିଥିଲେ- ''ଆପଣଙ୍କର ପ୍ରବାସୀ ସୈନିକର ଶେଷଚିନ୍ତା' କବିତାଟି ପାଠକରି ହୃଦୟ ଅନିର୍ବଚନୀୟ ଆନନ୍ଦରେ ପରିପୂରିତ ହେଲା । କି ମଧୁର, କେତେ ମଧୁର, ମର୍ମସ୍ପର୍ଶୀ, କେତେ ମର୍ମସ୍ପର୍ଶୀ ।''

କେବଳ ଛାୟାନୁବାଦ ଓ ମର୍ମାନୁବାଦ ପର୍ଯ୍ୟାୟର କବିତା ନୁହେଁ, କବିକୃତ ଅନ୍ୟାନ୍ୟ ମୌଳିକ କବିତାମାନଙ୍କରେ ମଧ୍ୟ ଅସୀମ ସ୍ପର୍ଶକାତରତା ପରିବେଷ୍ଟିତ । ଜୀବନର କବି ପଦ୍ମଚରଣ ଯୌବନର ପୂଜାପାଇଁ ସକାଳ-ଶିଶିର-ଭିଜା ସଜଫୁଲରେ ପୂଜାଡାଲା ସଜାଇଛନ୍ତି ।'ପଦ୍ମ ପାଖୁଡ଼ା'ର ଅର୍ଦ୍ଧାଧିକ କବିତାରେ ପ୍ରେମର ମନମୋହିନୀ ସ୍ପର୍ଶ ଅନୁଭବ୍ୟ । ଏ ପ୍ରେମ ଉଦ୍‌ଭ୍ରାନ୍ତ ପ୍ରେମ ନୁହେଁ, ବରଂ ସଂଯତ, ଶାଳୀନ, ଦାମ୍ପତ୍ୟପ୍ରେମ ଯହିଁରେ ମାଳିନ୍ୟ ନାହିଁ ବରଂ ରହିଛି ଅସାମାନ୍ୟ ଶାଳୀନତାର ଉଜ୍ଜ୍ୱଳ ମୁଦ୍ରାଙ୍କ ।

ସୁଶୀଶୋଭନ ଚନ୍ଦନବନର ମନ୍ଦପବନ ସତେଯେପରି କବିତାଗୁଡ଼ିକରେ ହୋଇଛି ବାଙ୍‌ମୟ । କେଉଁଠି ନାୟକ ମୁଖରେ ପ୍ରାଣପ୍ରିୟାର ତନୁସୁଷମାର ପ୍ରଶସ୍ତି ବର୍ଣ୍ଣିତ ତ ଆଉ କେଉଁଠି ଅଭିମାନ ଓ ଆଡ଼ରୁଷାର ଝୁଣ୍ଟିଆ ଝଙ୍କାର ପ୍ରତିଧ୍ୱନିତ । ପୁଣି କେଉଁଠାରେ ପ୍ରକୃତିର ଚାରୁଚିତ୍ର ଭିତରେ ନାୟିକାର ସ୍ନିଗ୍ଧମଧୁର ରୂପବିଭା କବିଚିତ୍ତକୁ ପ୍ରଲୁବ୍ଧ କରିଛି । 'ନାମକରଣ' କବିତାରେ କବିପ୍ରାଣର ମୋହନ ଆବେଶ ପାଖୁଡ଼ାପାଖୁଡ଼ା ମେଲି ଫୁଟିପଡ଼ିଛି । ପ୍ରିୟତମାର ରୂପ ଓ ଗୁଣରେ କବିତାର ନାୟକ ଏତେ ଆତ୍ମହରା ଯେ ସେ କେଉଁ ନାମରେ ତାକୁ ଡାକିବ ବୁଝିପାରୁ ନାହିଁ ।

*'ଡାକିବି ଗୋଲାପ, ଅବା ସରଗର ଇନ୍ଦୁ*
*ଅବା ତପ୍ତ ହୃଦୟର, ଶୀତସୁଧା ବିନ୍ଦୁ*
*ଅବା ଶୁକ୍ରତାରା, କିବା କମଳ କଳିକା*
*ଅଥବା ମୋ ଦୀନ କଣ୍ଠ-ମାଣିକ୍ୟ-ମାଳିକା*
*ଡାକିବି ବା ସୀତା ସତୀ, ଦ୍ରୁପଦ ଦୁଲଣୀ*
*ଅବା ଶାନ୍ତା ଶକୁନ୍ତଳା ଚମ୍ପକ ବରଣୀ ।'*

*(ନାମକରଣ)*

'ନବଜୀବନେ' କବିତା ଏକ ସଫଳ ସୃଷ୍ଟି । ଏଠାରେ ଦାମ୍ପତ୍ୟ ପ୍ରେମର ଆକାଶ କେତେବେଳେ ଅଭିମାନର ମେଘରେ ଭରପୂର ତ ଆଉ କେତେବେଳେ ଆନନ୍ଦର ଜୋଛନାରେ ଝଲମଲ । ରୁଷାରୁଷି ଏଥିରେ ଅଳ୍ପ କଥାର ଉପକଥା ମାତ୍ର । କୋପଦୃଷ୍ଟି ନିଦାଘର ବୃଷ୍ଟିପରି କ୍ଷଣସ୍ଥାୟୀ । କବିଙ୍କ ଭାଷାରେ –

*'ଘଡ଼ିକେ ଖରା ଘଡ଼ିକେ ତରା*
*ଘଡ଼ିକେ ଧାରାବୃଷ୍ଟି,*
*ଘଡ଼ିକେ ସ୍ନେହ ଘଡ଼ିକେ କୋହ*
*ଘଡ଼ିକେ କୋପଦୃଷ୍ଟି ।*
*ଘଡ଼ିକେ ଦୁହେଁ ଆତ୍ମହରା,*
*ଘଡ଼ିକେ ରୁଷାରୁଷି*
*ଘଡ଼ିକେ କେତେ ଘେନାଘେନି*
*ମଧୁର ହସାହସି ।'*

*(ନବ ଜୀବନ)*

ନାରୀତ୍ୱକୁ କବି ପଦ୍ମଚରଣ ଉଚ୍ଚାସନ ଦେଇଛନ୍ତି ଏବଂ ତା'ର ମହିମା ଗାନରେ ହୋଇଛନ୍ତି ଶତମୁଖ । ପରିବାରରେ ନାରୀ କ୍ଷଣାସୁଧା ସିଞ୍ଚି ଦେଇପାରେ, ବିଞ୍ଚି ଦେଇପାରେ ଆନନ୍ଦର ମଣିମୁକ୍ତାରାଶି । ନାରୀ ବିନା ପରିବାର ଅରଣ୍ୟ ସଦୃଶ ବୋଲି ଶାସ୍ତ୍ରରେ କୁହାଯାଇଛି ।

*'ନାସ୍ତି ଭାର୍ଯ୍ୟାସମୋବନ୍ଧୁଃ ନାସ୍ତି ଭାର୍ଯ୍ୟାସମାଗତିଃ ।*
*ନାସ୍ତି ଭାର୍ଯ୍ୟା ସମାଲୋକେ ସହାୟା ଧର୍ମସଂଗ୍ରହେ ।।'*
*(ଶାନ୍ତିପର୍ବ-ମହାଭାରତ)*

ନାରୀର ଭୂମିକା ସର୍ବତ୍ର ମହନୀୟ ଓ ମାନନୀୟ । ଏହାର ସ୍ୱୀକୃତି ସମାଜରେ ଏକାନ୍ତ ଆବଶ୍ୟକ । ନାରୀ ଯଥାର୍ଥରେ ସଚେତନ ଓ ଶିକ୍ଷିତ ହେଲେ ସମାଜରେ ବହୁ ସକାରାତ୍ମକ ପରିବର୍ତ୍ତନ ଆସିପାରେ । ନାରୀର ଧୈର୍ଯ୍ୟ, ସହିଷ୍ଣୁତା ସର୍ବୋପରି ମାଆ ମନଟି ସାରା ସଂସାରରେ ଦୁର୍ଲ୍ଲଭ । ଏସବୁ ଦିବ୍ୟ ଗୁଣ, ପୃଥିବୀକୁ ସ୍ୱର୍ଗୀୟ ମାଧୁର୍ଯ୍ୟରେ ବିମଣ୍ଡିତ କରିପାରେ । ଶ୍ରୀମଦ୍‌ଭଗବଦ୍ ଗୀତାରେ ଶ୍ରୀକୃଷ୍ଣ କହିଛନ୍ତି ଯେ ସେ ହେଉଛନ୍ତି ନାରୀ ନିକଟରେ ଥିବା କେତେକ ଦିବ୍ୟଗୁଣର ଅଧୀଶ୍ୱର ।

*ମୃତ୍ୟୁ ସର୍ବହରଶ୍ଚାହ ମୁଦ୍‌ଭବଶ୍ଚ ଭବିଷ୍ୟତମ୍ ।*
*କିର୍ତ୍ତୀଃ ଶ୍ରୀର୍ବାକ୍‌ଚ ନାରୀଣାଂ ସ୍ମୃତି,ର୍ମେଧା, ଧୃତିଃ, କ୍ଷମା ।। (୧୦/୩୪)*

କବି ପଦ୍ମଚରଣ ନାରୀତ୍ୱର ମହତ୍ତ୍ୱ ସମ୍ପର୍କରେ କହିଛନ୍ତି-

*ମୂର୍ତ୍ତିମତୀ ସହିଷ୍ଣୁତା ସରଗ ପ୍ରତିମା*
*ତୋ ଘେନି ସଂସାର ଧନ୍ୟ, ଧନ୍ୟ ତୋ ମହିମା " ।*
*(ଯୁଗ୍ମଚିତ୍ର)*

ପଦ୍ମଚରଣଙ୍କ ପ୍ରେମ କବିତା ସଂପର୍କରେ ଆଲୋଚକ ଶୁଭେନ୍ଦୁ ମୁଣ୍ଡଙ୍କ ମତାମତ ଏହିପରି – "ପଦ୍ମଚରଣଙ୍କ ପ୍ରେମ କବିତାରେ ସ୍ନିଗ୍ଧ ସୁନ୍ଦର ନିର୍ମଳ ଆଦର୍ଶ ଭିତ୍ତିକ ଦାମ୍ପତ୍ୟ ପ୍ରେମର ଚନ୍ଦନଗନ୍ଧ ପାଠକକୁ ପୁଲକିତ କରିଥାଏ । ଭାରତୀୟ ଜୀବନଦର୍ଶନ ଭିତ୍ତିଉପରେ ପ୍ରତିଷ୍ଠିତ ମଧୁର ଦାମ୍ପତ୍ୟ ପ୍ରେମର ସ୍ୱଚ୍ଛନ୍ଦ କାବ୍ୟିକ ପରିପ୍ରକାଶ ଏହି ଧରଣର କବିତାଗୁଡ଼ିକର ବିଶେଷତ୍ୱ ।"

## ଜାତୀୟତାବାଦୀ କବିତା -

ଜାତୀୟତାବାଦୀ ଚେତନାର ପ୍ରକଟନ ଯଥାର୍ଥରେ ସଂଗଠିତ ହୋଇଛି 'ପଦ୍ମପାଖୁଡ଼ା'ର ତିନିଗୋଟି କବିତାରେ । ସେଗୁଡ଼ିକ ହେଉଛି 'ଧଉଳି ପାହାଡ଼', 'ତ୍ରିବେଣୀତଟେ', ଓ 'ଖୋରଧା ପ୍ରଥମଦର୍ଶନେ' । ଏ ଜାତୀୟତାବୋଧ ଉତ୍କଳୀୟ ଜାତୀୟତାବୋଧ ଓ ଭାରତୀୟ ଜାତୀୟତାବୋଧର ରମ୍ୟ ସମନ୍ୱୟରେ ସଂଗଠିତ । ଉତ୍କଳସମ୍ମିଳନୀର କ୍ରିୟାଶୀଳତା, ପ୍ରଥମ ବିଶ୍ୱଯୁଦ୍ଧର ପ୍ରଭାବ ଓ ପ୍ରତିକ୍ରିୟା, ଭାରତର ସ୍ୱାଧୀନତା ଆନ୍ଦୋଳନ କବିଙ୍କୁ ବହୁପ୍ରକାରେ ପ୍ରଭାବିତ କରିଥିଲା । ୧୯୦୫ ଓ ୧୯୦୬ ମସିହାର ବଙ୍ଗଭଙ୍ଗ ଆନ୍ଦୋଳନ କବି ଚିତ୍ତକୁ ମଧ ଆନ୍ଦୋଳିତ କରିଥିଲା । ଜାତୀୟତାବାଦୀ ଚିନ୍ତାଧାରା ନିମନ୍ତେ ଏହିସବୁ ଆନ୍ଦୋଳନ ସହିତ ସ୍ୱାମୀ ବିବେକାନନ୍ଦଙ୍କର ବାଣୀର ପ୍ରଭାବ ଏବଂ ସତ୍ୟବାଦୀ ଯୁଗର ଆଦର୍ଶ ଓ ଅନୁପ୍ରେରଣା ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ତରୁଣମାନଙ୍କୁ ଉଦ୍‌ବୋଧନ ଦେଇ ସେମାନଙ୍କ ମଧରେ ଜାତୀୟତାବୋଧର ସଞ୍ଚାର କରିବା ନିମନ୍ତେ କବି ଯେଉଁ ଆନ୍ତରିକତା ପ୍ରକଟ କରିଛନ୍ତି, ତାହା ପ୍ରଣିଧାନଯୋଗ୍ୟ ।

'ଧଉଳି ପାହାଡ଼' କବିତାଟି ସମ୍ବୋଧନ ଶୈଳୀରେ ରଚିତ । କବିତାର ପ୍ରଥମ ଅଂଶଟିରେ କାରୁଣ୍ୟ ତଥା ଅସହାୟତାର ସ୍ୱର ମିଳୁଥିଲାବେଳେ ପରେପରେ ଅତୀତର ଗୁରୁଗୌରବ ବର୍ଣ୍ଣିତ । କବିଙ୍କ ଧାରଣା ଏହି ଯେ ଧ୍ୟାନମଗ୍ନ ଋଷିକଳ୍ପ ଧଉଳି ପାହାଡ଼ ଧାର୍ମିକତା ଓ ନୈତିକତାର ସୁମଧୁର ପବିତ୍ରସ୍ପର୍ଶ ମାଧ୍ୟମରେ ଅଶୋକଙ୍କୁ ଚଣ୍ଡାଶୋକରୁ ଧର୍ମାଶୋକରେ ପରିଣତ କରିଥିଲା ।

*'ଧଉଳି ପାହାଡ଼ ଧଉଳି ପାହାଡ଼*
*କି କଥା କହିଲ ରାଜାଙ୍କ କାନେ*
*କି ଗାଥା ଗାଇଲ ଘଡ଼ିକେ ରାଜନ*
*ବୁଡ଼ିଲେ ଅପୂର୍ବ ସମାଧି ଧ୍ୟାନେ ।'*

*(ଧଉଳି ପାହାଡ଼)*

କବିତାର ଶେଷରେ ଅତୀତଉତ୍କଳର ଗୌରବଦୀପ୍ତ ପରିବେଶ ପୁନର୍ବାର ଆସିବ କି ନାହିଁ ବୋଲି ଦରଦୀ କବିଚିତ୍ତ ପ୍ରଶ୍ନ କରିଛି । ଧଉଳି ପାହାଡ଼ ଏଥିରେ ପାହାଡ଼ ମାତ୍ର ହୋଇ ରହିନାହିଁ, ହୋଇଯାଇଛି ଏକ ସ୍ପର୍ଶକାତର ସଚେତନ ସତ୍ତା ।

'ତ୍ରିବେଣୀ ତଟେ' କବିତାର ମର୍ମବାଣୀ ପ୍ରତ୍ୟେକ ପାଠକପ୍ରାଣରେ ଜାତୀୟତାବାଦର ଗୁଞ୍ଜନ ସୃଷ୍ଟିକରେ। [illegible] ୧୯୧୨ ମସିହା କାର୍ତ୍ତିକ ପୂର୍ଣ୍ଣିମାରେ ଏହା ରଚିତ । ଉକ୍ତ କବିତାଟି ତିନି ଭାଗରେ ବିଭକ୍ତ । ପ୍ରଥମ ଭାଗଟି ତ୍ରିବେଣୀର ସୌନ୍ଦର୍ଯ୍ୟ ବର୍ଣ୍ଣନା ଉପରେ ଆଧାରିତ । ଦ୍ୱିତୀୟ ଭାଗରେ ଅତୀତର ଗୌରବଗାଥା ଉପସ୍ଥାପିତ ଏବଂ ତୃତୀୟ ଭାଗରେ ଆଶାବାଦର ସୁବାସ ବିଚ୍ଛୁରିତ । ଅତୀତ ମୃତ ହେଲେ ହେଁ ତହିଁରୁ ଶିକ୍ଷାଲାଭ ଏକାନ୍ତ ଜରୁରୀ ଯାହା ଏକାଧାରରେ ବ୍ୟକ୍ତି ଓ ଜାତିପାଇଁ ଏକ ଅପରିହାର୍ଯ୍ୟ ଆବଶ୍ୟକତା । ଅତୀତ ଉପରେ ଗୁରୁତ୍ୱ ନଦେଲେ ସମୃଦ୍ଧ ଭବିଷ୍ୟତ ଗଠନ ପ୍ରାୟତଃ ସମ୍ଭବ ନୁହେଁ । ସ୍ୱାମୀ ବିବେକାନନ୍ଦଙ୍କ ମତରେ, "ଲୋକମାନେ ମୋତେ କହିଛନ୍ତି ପୂର୍ବଗୌରବ ସ୍ମରଣ କଲେ ମନର ଅବନତି ହୁଏ, ଏଥିରେ କୌଣସି ଫଳ ଲାଭ ହୁଏନାହିଁ। ତେଣୁ ଆମକୁ ଭବିଷ୍ୟତ ପ୍ରତି ଦୃଷ୍ଟି ରଖି କାର୍ଯ୍ୟ କରିବାକୁ ହେବ । ସତ୍ୟକଥା, ଏହାମଧ୍ୟ ବୁଝିବାକୁ ହେବ ଯେ ଅତୀତର ଗର୍ଭରୁ ହିଁ ଭବିଷ୍ୟତର ଜନ୍ମ ।"

ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କ ଗୋହିରାଟିକିରୀଠାରେ ଯୁଦ୍ଧ ଓ ଆତ୍ମବଳିର ଚିତ୍ର ଏଥିରେ ପ୍ରଦତ୍ତ । ମୁକୁନ୍ଦଦେବଙ୍କ ରାଜଧର୍ମ, ବୀରତ୍ୱ ତଥା ଧୀରତ୍ୱ ସଂପର୍କରେ ସ୍ମୃତିଚାରଣ କରିବା ମାଧ୍ୟମରେ ଏହାପ୍ରତି ଅଶେଷ ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରିଛନ୍ତି କବି ପଦ୍ମଚରଣ ।

*'ସରିଛି ସେସବୁ ଆଜି, ଲାଗୁଛି ସ୍ୱପନ ସମ*
*ଅଛି ଦେଶ, ନାହିଁ ତହିଁ ମୁକୁନ୍ଦର ପରାକ୍ରମ ।'*

*(ତ୍ରିବେଣୀ ତଟେ)*

'ତ୍ରିବେଣୀ ତଟେ' କବିତାରେ ଅତୀତରୁ ବର୍ତ୍ତମାନ ବାଟଦେଇ ଭବିଷ୍ୟତ ଆଡ଼କୁ ଏକ ପ୍ରବହମାନତା ଅନୁଭୂତ ହୁଏ, ଯାହା ପାଠକର ଚିତ୍ତକୁ ଆକୃଷ୍ଟ କରେ । ଅନ୍ୟ ଭାଷାରେ କୁହାଯାଇପାରେ ଯେ, ତ୍ରିବେଣୀ ତଟେ କବିତାଟି ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ଭିତରେ ଏକ ରମ୍ୟ ସୁବର୍ଣ୍ଣ ସେତୁ । ଏହି କବିତା ପଠନ କଲାବେଳେ ସ୍ମୃତି ପଥାରୂଢ଼ ହୁଏ କବି ନୀଳକଣ୍ଠଙ୍କ 'କୋଣାର୍କେ'ର ଶୈଳୀଗତ ସୁଷମା । 'କୋଣାର୍କେ'ରେ ଅଛି ଅତୀତକୁ ବର୍ତ୍ତମାନ ସହ ଯୋଡ଼ି ଦେବାର ଆଗ୍ରହ ଓ ଆନ୍ତରିକତା ଯାହା

'ତ୍ରିବେଣୀ ତଟେ'ରେ ଆଉ ଟିକିଏ ଅଗ୍ରଗତି କରିଛି । ଅତୀତର ସ୍ମୃତିଚାରଣ ପୂର୍ବକ କବି ଗାଇ ଉଠିଛନ୍ତି –

*'ମୁକୁନ୍ଦର ସିଂହାସନ ଗଲାଣିତ କାହିଁ ଚାଲି*
*ବିଶ୍ୱ ମଧ୍ୟେନିଃସ୍ୱ ହୋଇ ରହିଛି ଦେଶଟା ଖାଲି ।*
*ସିଂହର ସଦନେ ଆଜି ରହିଲେ ଶୃଗାଳ ଦଳ*
*କେତେ ଦିନେ ହେଲେ ଆହା କେଡ଼େ କ୍ଲୀବ ହୀନବଳ ।'*

*(ତ୍ରିବେଣୀ ତଟେ)*

ଅତୀତକୁ ସାକ୍ଷୀରଖି ବର୍ତ୍ତମାନକୁ ଗଢ଼ିଯିବା ପାଇଁ କବି ଯେଉଁ ଆହ୍ୱାନ ଦେଇଛନ୍ତି, ତାହାର ପଟାନ୍ତର ନାହିଁ ।

*'ଅତୀତକୁ ସାକ୍ଷୀରଖି ଗଢ଼ିଯାଅ ବର୍ତ୍ତମାନ*
*ଅନଙ୍ଗ ଯଯାତି ଦେଶ ନୁହେଁ ନୀଚ ନୁହେଁ ସାନ ।'*

*(ତ୍ରିବେଣୀ ତଟେ)*

ପୁନଶ୍ଚ, କବି ଆଶା କରିଛନ୍ତି ଏ ଦେଶର ସଭ୍ୟତା ସଂସ୍କୃତିରେ ମୂଲ୍ୟବୋଧର ଉଚ୍ଚତମ ଉଚ୍ଚତା ଆସିବ, ହସିବ ଦିଗଦିଗନ୍ତ, ନବଚେତନାର ସ୍ପର୍ଶରେ ମଧୁମୟ ହେବ ପରିବେଶ । ଆକାଶ, ବତାସ ନଦୀ, ଗିରିବନ ସର୍ବତ୍ର ଦିବ୍ୟସୁଷମା ଉଦ୍‌ଭାସିତ ହେବ ।

*'ହସିବ କୁଟୀର ସୌଧ, ହସିବ ନଗର ପଲ୍ଲୀ*
*ହସିବେ ଆକାଶେ ପକ୍ଷୀ, ତଳେ ତରୁ ତୃଣବଲ୍ଲୀ*
*ଘରେ ଘରେ ବୀରଶିଶୁ ଖେଳିବେ ଆନନ୍ଦେ ଖେଳ*
*ଆଶା ପ୍ରୀତି ଆନନ୍ଦର ଲାଗିଯିବ ମଧୁମେଳ ।'*

*(ତ୍ରିବେଣୀ ତଟେ)*

'ଖୋରଧା ପ୍ରଥମ ଦର୍ଶନେ' କବିତାରେ ଜାତୀୟତାବାଦର ଅଲିଭା ଆଲେଖ୍ୟ ଅଙ୍କିତ । ଖୋରଧା ହେଉଛି ବୀରଭୂମି । ଏହାର ପ୍ରତ୍ୟେକ ରେଣୁ କଣା ବୀରତ୍ୱର ମୂକସାକ୍ଷୀ । ହୋଇ ଏବେ ମଧ ରହିଛି । ଦେଶପ୍ରାଣତାର ଦୀପ୍ତିରେ ଏହାର ଧୂଳିମାଟି ହୋଇଛି ବହୁ ଅନୁପ୍ରେରଣାର ଉତ୍ସ ।

କବିଙ୍କ ଭାଷାରେ :-

*'ଯହିଁ ଟେକି ଦେଲେ ଟେକାଖଣ୍ଡେ ଏଥି*
*ମିଳିଯିବ ବୀର ଅସ୍ଥି ମେଦଗ୍ରନ୍ଥି*
*ପ୍ରତି ରେଣୁ ସଙ୍ଗେ ବୀରର ଶୋଣିତ*
*କାଳେକାଳେ ଏଥି ରହିଛି ଲେପିତ ।'*

*(ଖୋରଧା ପ୍ରଥମ ଦର୍ଶନେ)*

ଇଂରେଜମାନଙ୍କ ବିରୁଦ୍ଧରେ ପ୍ରଥମ ସଂଗ୍ରାମ ଓଡ଼ିଶାରେ ଖୋର୍ଦ୍ଧାରେ ଆରମ୍ଭ ହୋଇଥିଲା । ତାହା ଥିଲା ୧୮୧୭ ମସିହାର ପାଇକ ବିଦ୍ରୋହ । ଓଡ଼ିଆ ପାଇକର ରଣହୁଙ୍କାର ଓ ଅସ୍ତ୍ରଝଙ୍କାରରେ ଦିଗଦିଗନ୍ତ ପ୍ରକମ୍ପିତ ହେଉଥିଲା ।

*'ପାହାଡ଼ର ମୋଡ଼େ ଲୁଚି ମାରିଶର*
*ବିପକ୍ଷଙ୍କୁ କରୁଥିଲେ ଜରଜର*
*ନଳୀନାଦେ ଥିଲେ ମେଦିନୀ କଂପାଇ*
*ଶତ୍ରୁର ଅନ୍ତରେ ତ୍ରାସ ଉପୁଜାଇ ।'*

*(ଖୋରଧା ପ୍ରଥମ ଦର୍ଶନେ)*

ଓଡ଼ିଆ ଜାତିର ପୂର୍ବ ଗୌରବକୁ କବି ଅବତାରଣା କରିଛନ୍ତି କାଞ୍ଚି ଅଭିଯାନର ସ୍ମରଣ ମଧ୍ୟରେ । ଏହି ଦିଗ୍‌ବିଜୟର ସାକ୍ଷୀ ରୂପେ ଏବେ ମଧ୍ୟ ଶ୍ରୀମନ୍ଦିରରେ କାଞ୍ଚି ଗଣନାଥ ବିରାଜମାନ । କବିତାର ରୂପ ରଚନା, ଶବ୍ଦ ଯୋଜନା ଓ ଭାବ ଗୁମ୍ଫନରେ ବହୁଳାଂଶରେ ମୌଳିକତା ଥିଲେ ହେଁ ଏଥିପାଇଁ ଅନୁପ୍ରେରଣା ନିମନ୍ତେ ସତ୍ୟବାଦୀ ସାହିତ୍ୟର ଅବଦାନକୁ ଅସ୍ୱୀକାର କରିହେବନାହିଁ । ସତ୍ୟବାଦୀ ସାହିତ୍ୟରେ ଥିବା ଉଗ୍ରଜାତୀୟତାବାଦର ଶାଣିତ ସ୍ୱର ପଦ୍ମଚରଣଙ୍କର ଦେଶପ୍ରୀତିମୂଳକ କବିତାରେ କେତେକାଂଶରେ ପ୍ରତିଫଳିତ ।

ଏତଦ୍‌ବ୍ୟତୀତ ଭାରତୀୟ ଜାତୀୟତାରେ ଉଦ୍‌ବୁଦ୍ଧ ହୋଇ କବି କେତେଗୋଟି କବିତା ରଚନା କରିଛନ୍ତି । ସେତେବେଳେ ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ପ୍ରବାହରେ ସାଧାରଣ ଜନମାନସ ପ୍ରଭାବିତ ହୋଇଥିଲା । ଦେଶ ପ୍ରତି ସଚେତନତା ପ୍ରକଟ କରିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ଦେଶପ୍ରେମରେ ଉଦ୍‌ବୁଦ୍ଧ କରିବାର ଲକ୍ଷ୍ୟ ନେଇ ସତ୍ୟବାଦୀ

ସାହିତ୍ୟ ସାଧକମାନଙ୍କ ପରି ପଦ୍ମଚରଣ ଲେଖନୀ ଚାଳନା କରିଥିଲେ । 'ପଦ୍ମପାଖୁଡ଼ା' ସଂକଳନରେ ସନ୍ନିବେଶିତ କବିତା 'ରାଜାଜ୍ଞା' ଏହି ପର୍ଯ୍ୟାୟର ଅନ୍ତର୍ଭୁକ୍ତ । ବିଶ୍ୱଯୁଦ୍ଧର ପରିପ୍ରେକ୍ଷୀରେ ରଚିତ ଏହି କବିତାରେ ସ୍ୱାଧୀନତା ଆନ୍ଦୋଳନର ଚିତ୍ର ତଥା ଭାରତୀୟ ସଂସ୍କୃତିର ମହତ୍ତ୍ୱ ଉପସ୍ଥାପିତ । ଭାରତମାତାଙ୍କ ମହିମା ଏଥିରେ ପ୍ରକାଶିତ ।

*'ଭାରତର ଜ୍ଞାନାଲୋକ*
*ନାଶେ ବିଶ୍ୱ-ପାପ-ଶୋକ*
*ଭାରତର ଧ୍ୟାନଜ୍ଞାନ ବିଶ୍ୱହିତ ଲାଗି*
*ଆଜି ସେ ଭାରତ ନୋହୁ ତିଳେ ପାପଭାଗୀ ।'*

*(ରାଜାଜ୍ଞା)*

ଭାରତ ହେଉଛି ଆଲୋକର ଦେଶ । 'ଭା' ଅର୍ଥ ଦୀପ୍ତି ଏବଂ 'ରତ' ଅର୍ଥ ଯୁକ୍ତ । ଅର୍ଥାତ୍ ଭାରତ ହେଉଛି ଦୀପ୍ତି ଯୁକ୍ତ ଭୂଖଣ୍ଡ । ବିଶ୍ୱର ଆତ୍ମା ସଦୃଶ ଏହା ବିଦ୍ୟମାନ । ସୁଦୂର ଅତୀତରୁ ଅଦ୍ୟାବଧି ଭାରତ ସାଧନାରତ । ଏ ସାଧନା ତା'ର ନିଜ ପାଇଁ କେବଳ ନୁହେଁ, ସମଗ୍ର ବିଶ୍ୱ ପାଇଁ ଅଭିପ୍ରେତ । ସ୍ୱାମୀ ବିବେକାନନ୍ଦ ଭାରତୀୟ ମହତ୍ତ୍ୱ ଓ ମୂଲ୍ୟବୋଧ ସଂପର୍କରେ ଦେଶବାସୀଙ୍କୁ ଯେଉଁ ଉଦ୍‌ବୋଧନ ଦେଇଥିଲେ ତାହା ଏଇ ଅବକାଶରେ ସ୍ମରଣୀୟ । ତାଙ୍କ ମତରେ – ''ବିଶ୍ୱର ଇତିହାସକୁ ପର୍ଯ୍ୟାଲୋଚନା କର – ଯେଉଁଠି କୌଣସି ମହାନ୍ ଆଦର୍ଶର ସନ୍ଧାନ ମିଳିବ, ଦେଖିବ ତା'ର ଜନ୍ମ ଭାରତ ବର୍ଷରେ । ସ୍ମରଣାତୀତ କାଳରୁ ଭାରତ ମାନବ ସମାଜ ପାଖରେ ମୂଲ୍ୟବୋଧ ସମୂହର ଖଣିସ୍ୱରୂପ ହୋଇ ରହିଛି ।'' ମହାଯୋଗୀ ଶ୍ରୀଅରବିନ୍ଦ ଭାରତକୁ ମାଟିଗୋଡ଼ି ପଥରରେ ଗଢା ଏକ ଜଡ଼ପିଣ୍ଡ ଭାବରେ ଦେଖି ନଥିଲେ, ଦେଖିଥିଲେ ଚିନ୍ମୟୀ ଜନନୀ ରୂପରେ । ତାଙ୍କର ମତ ଏହି ଯେ ''ଭାରତ ବଞ୍ଚିଲେ ପୃଥିବୀ ବଞ୍ଚିବ । ଭାରତ ହେଉଛି ସମଗ୍ର ପୃଥିବୀର ଆତ୍ମାସ୍ୱରୂପ । ପୃଥିବୀକୁ ରକ୍ଷା କରିବାକୁ ହେଲେ ଭାରତକୁ ରକ୍ଷା କରିବାକୁ ହେବ । [illegible]

କବି ପଦ୍ମଚରଣ ଅତୀତ ଗୌରବକୁ ସ୍ମରଣ କରି ଅପୂର୍ବ ଦର୍ପରେ ନିଜକୁ ବିମଣ୍ଡିତ କରିବା ପାଇଁ ପାଠକକୁ ଆହ୍ୱାନ ଦେଇଛନ୍ତି ।

*'ପ୍ରତାପ ସଂଗ୍ରାମ ନାମ ମୁଖେ ନିଅବାରେ*
*ଦୁର୍ଗାବତୀ ଲକ୍ଷ୍ମୀବାଈ ସ୍ମର ଭକ୍ତିଭରେ*
*ଚିତୌରି ହଳଦିଘାଟ*
*ସ୍ମରଣେ ଗୌରବ ବାଟ*
*ଦିଶିବ, ଘୁଞ୍ଚିବ ସବୁ ମାୟାର ବନ୍ଧନ*
*ଉଭାସିବ ନେତ୍ରେ ଆର୍ଯ୍ୟକୀର୍ତ୍ତି ସିଂହାସନ ।'*

*(ରାଜାଜ୍ଞା)*

ଅନ୍ୟ ଏକ କବିତା 'ପୃଥ୍ୱୀରାଜଙ୍କ ପତ୍ର'ରେ ଭାରତ ଭାବନା ଉପସ୍ଥାପିତ । ଅମିତ୍ରାକ୍ଷର ଛନ୍ଦରେ ରଚିତ ଏଇ କବିତାଟି ସୁଖପାଠ୍ୟ ଓ ପୂର୍ବଗୌରବ-ସ୍ନାତ । ରାଣାପ୍ରତାପଙ୍କର ବୀରତ୍ୱ ଏବଂ ହଳଦୀଘାଟର ସମର ପ୍ରସଙ୍ଗ ଏଥିରେ ପ୍ରଦତ୍ତ ।

*'ତବ ପୁଣ୍ୟସ୍ମୃତିପୂତ ଘାଟର କାହାଣୀ*
*କାଳେକାଳେ ନଚାଇବ କବିର କଳ୍ପନା*
*ସମର ବିଳାସୀ ବୀର ଧମନୀ ଶୋଣିତ*
*ଦେଶଭକ୍ତ ଶ୍ରାନ୍ତପ୍ରାଣେ ଦେବ ଅଗ୍ନିକଣା ।'*

*(ପୃଥ୍ୱୀରାଜଙ୍କ ପତ୍ର)*

ଦେଶଦ୍ରୋହୀ ଜୟଚନ୍ଦ୍ରଙ୍କୁ ଧିକ୍କାର କରିଛନ୍ତି କବି, ଦେଶଦ୍ରୋହର ପୁନରାବୃତ୍ତି ଭବିଷ୍ୟତରେ ନହେଉ ବୋଲି ଆଶାପୋଷଣ କରିଛନ୍ତି ।

*'ଗଲେ ପୃଥ୍ୱୀରାଜ ଗଲା ଦ୍ରୋହୀଜୟଚନ୍ଦ୍ର*
*ନୀଳସାଗରରେ ଭାସି ବୁଦ୍‌ବୁଦ ସମାନ*
*ଥାନେଶ୍ୱରେ ପୋତାହେଲା କଳଙ୍କର ସ୍ତମ୍ଭ*
*ଦେଶଦ୍ରୋହୀ ଭ୍ରାତୃହନ୍ତା ବିଜୟ ନିଶାଣ !'*

*(ପୃଥ୍ୱୀରାଜଙ୍କ ପତ୍ର)*

ଦେଶପ୍ରତି କବିଙ୍କର ଥିଲା ସୀମାହୀନ ଆନ୍ତରିକତା । ପରାଧୀନତାରୁ ମୁକ୍ତି ନିମନ୍ତେ ସଂଗଠିତ ସ୍ୱାଧୀନତା ଆନ୍ଦୋଳନ ତାଙ୍କ ପ୍ରାଣରେ ଗଭୀର

ରେଖାପାତ କରିଥିଲା । ଭାରତର ଉଜ୍ଜ୍ୱଳ ଭବିଷ୍ୟତ ସେ କାମନା କରିବା ସଙ୍ଗେ ସଙ୍ଗେ ଭାରତ ମାଧ୍ୟମରେ ବିଶ୍ୱର ବିକାଶ ନିମନ୍ତେ ମଧ୍ୟ ଅଭୀପ୍ସା କରିଥିଲେ ।

## ଅଧ୍ୟାତ୍ମଭାବର କବିତା -

ଭକ୍ତକବି ମଧୁସୂଦନ ରାଓଙ୍କ ପରି କବି ପଦ୍ମଚରଣ ଚରାଚର ବିଭୁସତ୍ତାର ଉପସ୍ଥିତି ସମ୍ପର୍କରେ ସଚେତନତା ପ୍ରକଟ କରିଛନ୍ତି । ସଚ୍ଚିଦାନନ୍ଦଙ୍କ ପ୍ରଭାବରେ ପଦ୍ମଚରଣଙ୍କ ହୃଦୟ ବିସ୍ତାରିତ ହୋଇଛି । ଅଦ୍ୱୈତବାଦର ନିରାଜନା କରିଥିବା ଏହି କବିଙ୍କ ମାନସିକତାରେ ଆନନ୍ଦବୋଧ ଉଚ୍ଚାସନ ଲାଭ କରିଛି । ଆନନ୍ଦବୋଧରୁ ଆସେ କୃତଜ୍ଞତାର ଭାବ ଯାହା ମାଧ୍ୟମରେ ଆତ୍ମାତିକ୍ରମଣର ପଥ ସୁଗମ ହୁଏ । ଉପନିଷଦର ଆନନ୍ଦତତ୍ତ୍ୱ ତାଙ୍କ ରଚନାରେ କେତେକ ସ୍ଥାନରେ ଉପସ୍ଥାପିତ । ତୈତ୍ତିରୀୟ ଉପନିଷଦରେ ଉଲ୍ଲେଖ ଅଛି - **''ଆନାନ୍ଦାତ୍ ହି ଏବ ଖଲୁ ଇମାନି ଭୂତାନି ଜାୟନ୍ତେ, ଆନନ୍ଦେନ ଜାତାନି ଜୀବନ୍ତି, ଆନନ୍ଦଂ ପ୍ରୟନ୍ତି ଅଭିସଂବିଶନ୍ତି ।''** ଅର୍ଥାତ୍ ''ଆନନ୍ଦରୁ ହିଁ ଏହି ଭୂତ ସକଳ ଜାତ ହୋଇଛନ୍ତି, ଆନନ୍ଦଦ୍ୱାରା ହିଁ ତିଷ୍ଠି ରହିଛନ୍ତି ଓ ବଢୁଛନ୍ତି ଏବଂ ଶେଷରେ ଆନନ୍ଦ ଭିତରକୁ ହିଁ ଫେରିଯାଉଛନ୍ତି'' । ଆନନ୍ଦବାଦୀ ଭାବରେ କବିଙ୍କର ଆତ୍ମପ୍ରକଟନ ଉଲ୍ଲେଖଯୋଗ୍ୟ । ଆନନ୍ଦର ଜୟ ଗାନ କରି କବି କହିଛନ୍ତି -

*'ବକ୍ଷେ କର ମାରି　　କକ୍ଷେ କକ୍ଷେ ବୁଲି*
*ଉଠାଇବି ଉଚ୍ଚତାନ*
*ହେ ବିଭୁ ! ତୁମରି　　ଆନନ୍ଦରାଜ୍ୟରେ*
*ଗାଇବି ଆନନ୍ଦ ଗାନ' ।*

*(ହେ ବିଶ୍ୱ)*

ସମର୍ପଣ ଭାବର ସ୍ୱର୍ଣ୍ଣିମ ଆଲେଖ୍ୟ ଏହି କବିତାରେ ଅଙ୍କିତ ହେବା ସଂଗେ ସଂଗେ ତ୍ୟାଗ ତପସ୍ୟାର ମହତ୍ତ୍ୱ ମଧ୍ୟ ବର୍ଣ୍ଣିତ ହୋଇଛି । ବିଶ୍ୱପ୍ରକୃତିର କୁଞ୍ଜେ କୁଞ୍ଜେ କବିଚିତ୍ତ ପରିକ୍ରମା କରିଛି । ପଶୁପକ୍ଷୀ, ବୃକ୍ଷଲତା ଓ ଫୁଲ ଫଳ ଭିତରେ ତାଙ୍କୁ ଆବିଷ୍କାର କରିବାର ମାନସିକତା ଏଥିରେ ପ୍ରମୂର୍ତ୍ତ ହୋଇଛି । ସ୍ଥାବର ଜଙ୍ଗମ ସବୁଠାରେ ଅନୁଭବ କରିବାର ଇଛା କବିଙ୍କୁ କରିଛି ଆତ୍ମହରା ।

କବିତାରେ ମୂର୍ତ୍ତିପୂଜାର ପ୍ରଶସ୍ତି ନାହିଁ, ଅଦୃଶ୍ୟ ଭଗବାନଙ୍କର ନିର୍ମଳ ଅନୁଭବର ଅବତାରଣା କରାଯାଇଛି । କବିଙ୍କର ବ୍ୟକ୍ତିସତ୍ତା ରୂପାନ୍ତରିତ ହୋଇ ସତେ ଯେପରି ବିଶ୍ୱସତ୍ତାରେ ପରିଣତ ହେବାକୁ ପ୍ରୟାସ କରିଛି । ଧାର୍ମିକତା ନୁହେଁ, ଆଧ୍ୟାତ୍ମିକତାର ବର୍ଣ୍ଣବିଭା ଆଲୋଚ୍ୟ କବିତାରେ ପ୍ରମୂର୍ତ୍ତ ହୋଇଛି ।

## ଅନ୍ୟାନ୍ୟ କବିତା -

ଏତଦ୍‌ବ୍ୟତୀତ ଆଉ କେତେଗୋଟି କବିତା ରହିଛି ଯହିଁରେ କବିହୃଦୟର ସୁଗଭୀର ଚିନ୍ତା ଓ ଚେତନା ପ୍ରକଟିତ । 'ମନେରଖ', 'କବିର କୃତଜ୍ଞତା', 'କବିତାର ପୁରସ୍କାର', 'ମୋ ମରଣଟା ହେଉ ଆଛାଭଳ' ତହିଁର ଅନ୍ତର୍ଭୁକ୍ତ । ବନ୍ଧୁଙ୍କ ପ୍ରତି ସୀମାହୀନ ଆନ୍ତରିକତା 'ମନେରଖ' କବିତାରେ ରହିଛି । ମୃତ୍ୟୁପରେ ସେହି ନୀରବ ଭୀତିପ୍ରଦ ରାଜ୍ୟରେ ଭାସିଲାବେଳେ ପ୍ରିୟବନ୍ଧୁଙ୍କର ଆନ୍ତରିକତା ଅନ୍ଧାରରେ ଆଲୋକ ପରି ପ୍ରତୀୟମାନ ହେବ ବୋଲି କବି ଆଶା କରିଛନ୍ତି ।

*'ମନେରଖ ମୋତେ ଏତିକ ମାଗୁଣି*
*ଯାଉ ପଛେ ସବୁ ସୁଖ*
*ଯାଉ ପଛେ ଦୂରେ ମଧୁର ଆଳାପ*
*ତବ ବିମୋହନ ରୂପ ।' (ମନେରଖ)*

'କବିର କୃତଜ୍ଞତା' କବିତାରେ ନିଜ ଗ୍ରାମ୍ୟ ପରିବେଶର ରୂପବିଭା ଚିତ୍ରିତ । ସ୍ମୃତିର ଗବାକ୍ଷ ଫାଙ୍କରେ ଯାହା କବିଙ୍କୁ ଦୃଶ୍ୟମାନ ହୋଇଛି, ତାହା ଏଥିରେ ଶବ୍ଦାୟିତ ହୋଇଛି । ତାଙ୍କପାଇଁ ଶୈଶବର ବାଲିଖେଳ ଓ ଯୌବନର ଫୁଲମାଳ ଅପାଶୋରା ହୋଇରହିଛି ।

*'ତାହାରି ଇଙ୍ଗିତେ ଫୁଟିଲା ପଦ୍ମ*
*ଡାକିଲା କୋକିଳ ଡାଳେ*
*ନବଜାଗରଣ ମନ୍ତ୍ର ଶୁଭିଲା*
*ଆଷାଢ଼ ଜଳଦ ମାଳେ ।'*
*(କବିର କୃତଜ୍ଞତା)*

ଏହି କବିତାରେ ଭାବପ୍ରବଣତାର ମୁଗ୍ଧ ମଳୟ ପ୍ରବାହିତ, ଆତ୍ମୀୟତାର ମଧୁମଞ୍ଜୁଳ ସ୍ପର୍ଶ ସୁରକ୍ଷିତ । କବି ହୃଦୟର ସୂକ୍ଷ୍ମ ଅନୁଭବ ସତେଅବା ଶବ୍ଦର ପାହାଚରେ ଓହ୍ଲାଇ ଆସିଛି ପାଠକ ନିକଟକୁ ।

ଅନ୍ୟତମ କବିତା 'କବିତାର ପୁରସ୍କାର'ରେ କବିଙ୍କର କବିତା ନିମିତ୍ତ ପ୍ରତିବଦ୍ଧତା ଲିପିବଦ୍ଧ । କୈଶୋର- ଆମୁଖତା ଏବଂ କିଶୋର କିଶୋରୀଙ୍କର ମର୍ମର ବାର୍ତ୍ତା ଏଥିରେ ପ୍ରତିଧ୍ୱନିତ ।

*'କିଶୋର କିଶୋରୀକୁଳ ତୁମେ ମୋ କବିତାମୂଳ*
*ବୁଝ, ଅଛି ତୁମର ହୃଦୟ,*
*କବିର କାମନା ସ୍ୱପ୍ନ ନିଅ ବକ୍ଷେ କରି ଯତ୍ନ*
*ଦିଅ ତାକୁ ଅଭୟ ଆଶ୍ରୟ ।'*

*(କବିତାର ପୁରସ୍କାର)*

'ମୋ ମରଣ ହେଉ ଆଚ୍ଛା ଭଲ' କବିତାରେ ମୃତ୍ୟୁ ପ୍ରତି ଏକ ସ୍ଥିତପ୍ରଜ୍ଞ ଦୃଷ୍ଟିଭଙ୍ଗୀ ପ୍ରତିଭାତ ହୋଇଛି । ମୃତ୍ୟୁ ପ୍ରତି ଭୟନାହିଁ କବିଙ୍କର, ବରଂ ବୀର ଭାବରେ ମୃତ୍ୟୁବରଣ କରିବାକୁ ସେ ଚାହାନ୍ତି । ଦୀର୍ଘଦିନ ଶଯ୍ୟାଶାୟୀ ହୋଇ ଯନ୍ତ୍ରଣାରେ ଜର୍ଜରିତ ଥାଇ ମୃତ୍ୟୁ ମୁଖରେ ପଡ଼ିବାକୁ କବି ନ ଚାହିଁ ଚାହିଁଛନ୍ତି ଏକ ସହଜ ସରଳ ମୃତ୍ୟୁ ।

*'ଜନ୍ମସଙ୍ଗେ ମରଣଟା ରହିଅଛି ଛନ୍ଦା*
*ମୃତ୍ୟୁଦ୍ୱାରେ ଜୀବନଟା ଚିରକାଳବନ୍ଧା*
*ସେଥିପାଇଁ ମରଣକୁ ନାହିଁ କେବେ ଭୟ*
*ବୀର ପରି ମଲେ ମୋର ହେବ ମୃତ୍ୟୁଞ୍ଜୟ ।'*

*(ମୋ ମରଣଟା ହେଉ ଆଛା ଭଲ)*

ବିଭିନ୍ନ ଦିଗରୁ ବିଚାର କଲେ ଜଣାଯାଏ ଯେ ପଦ୍ମଚରଣଙ୍କ କବିତ୍ୱ ଭିନ୍ନଭିନ୍ନ ମୂଲ୍ୟବାନ ଭାବବିଭବର ଏକ ମହାମିଳନ କ୍ଷେତ୍ର 'ପଦ୍ମପାଖୁଡ଼ା' ସେହି କ୍ଷେତ୍ରର ଏକ ବିଶାଳ ଅଭିଳିପି ଯହିଁରେ ବ୍ୟକ୍ତିଗତ ସାମାଜିକ, ରାଷ୍ଟ୍ରୀୟ ଆଧ୍ୟାତ୍ମିକ ଜୀବନର ମହତ୍ତ୍ୱ ଲିପିବଦ୍ଧ । ଦାମ୍ପତ୍ୟ ପ୍ରେମର ମାଧୁର୍ଯ୍ୟ, ରହସ୍ୟବାଦୀ ରୋମାଣ୍ଟିକ ଅନୁଚିନ୍ତା, ଜାତୀୟତାବାଦୀ ଭାବନା ଏବଂ ବ୍ୟକ୍ତିଗତ ସୂକ୍ଷ୍ମ ଜୀବନାନୁଭବର ମାଦକତା ଏଥିରେ ଉପଜୀବ୍ୟ । କବି ଓ ସମାଲୋଚକ ଶୁଭେନ୍ଦୁମୁଣ୍ଡ କହନ୍ତି – "ବାସ୍ତବର ଭିତ୍ତି ଉପରେ ପଦ୍ମଚରଣ ସ୍ୱପ୍ନସ୍ଥ । ସମାଜ, ଜାତି, ପରିବାର ଏବଂ ମଣିଷ ସମସ୍ତେ ତାଙ୍କ ପାଇଁ ଆବଶ୍ୟକୀୟ ଓ ମୂଲ୍ୟବାନ ।"

ପ୍ରତିଭା, ପାଣ୍ଡିତ୍ୟ ଓ ଅଭ୍ୟାସର ସମନ୍ୱୟରେ କବିତ୍ୱର ବର୍ଣ୍ଣବିଭା ଝଲସି ଉଠେ । ପାଣ୍ଡିତ୍ୟକୁ ବହୁଶାସ୍ତ୍ରଦର୍ଶିତା ବୋଲି ମଧ କୁହାଯାଏ । ପ୍ରତିଭା ଜନ୍ମଗତ, ପ୍ରକୃତିଦତ୍ତ । ବହୁଶାସ୍ତ୍ରଦର୍ଶିତା ଏହି ପ୍ରତିଭାର ସାର୍ଥକ ରୂପାୟଣ ନିମନ୍ତେ ଏକାନ୍ତ ଆବଶ୍ୟକ । ଅଭ୍ୟାସ ଦିଏ ପ୍ରତିଭାର ବିକାଶ ନିମନ୍ତେ ଯଥାର୍ଥ ସାମର୍ଥ୍ୟ । ଶ୍ରୀଅରବିନ୍ଦ ଏଇ ପରିପ୍ରେକ୍ଷୀରେ କହନ୍ତି, "Genius usually means an inborn power which develops itself.Talent and capacity are not Genius, they can be acquired."- ( *Letters on poetry, literature and Art)* ଇଂରାଜୀ ସାହିତ୍ୟରେ ପଦ୍ମଚରଣଙ୍କର ପ୍ରବେଶ ଥିଲା । ଏତଦ୍‌ବ୍ୟତୀତ ତାଙ୍କ ପୂର୍ବରୁ ରଚିତ ଆଧୁନିକ ଓଡ଼ିଆ ସାହିତ୍ୟକୁ ଗଭୀର ଭାବରେ ଅଧ୍ୟୟନ କରିଥିବାରୁ ସେ ଏହାଦ୍ୱାରା କେତେକାଂଶରେ ପ୍ରଭାବିତ ହୋଇଥିଲେ । ବିଶେଷତଃ ସେ ରାଧାନାଥୀ-ସାହିତ୍ୟ, ସତ୍ୟବାଦୀ ସାହିତ୍ୟ ଏବଂ ସବୁଜ ସାହିତ୍ୟ ଦ୍ୱାରା ପ୍ରଭାବିତ । ଏହି ପରିପ୍ରେକ୍ଷୀରେ ଡଃ ନିତ୍ୟାନନ୍ଦ ଶତପଥୀଙ୍କର ମତ ପ୍ରଣିଧାନଯୋଗ୍ୟ । ସେ କହନ୍ତି— ***"ତାଙ୍କ କବିତାର ରଙ୍ଗ ଓ ରେଖା, ସବୁଜର ସୌଖୀନ ବିଳାସ ଓ ରୋମାଣ୍ଟିକ ଅଭିବ୍ୟକ୍ତି ପୁଣି ସତ୍ୟବାଦୀର ଉଗ୍ରଜାତୀୟ ଭାବଚେତନା ପାଠକକୁ ଅଭିଭୂତ କରେ ।"*** - *(ସବୁଜରୁ ସାଂପ୍ରତିକ)*

ଆଲୋଚ୍ୟ 'ପଦ୍ମପାଖୁଡ଼ା' ପୁସ୍ତକକୁ ପାଠକଲେ ତହିଁରେ ବ୍ୟାସକବି ଫକୀରମୋହନ, କବି ରାଧାନାଥ ଓ କବି ଗୋପବନ୍ଧୁଙ୍କ ସାହିତ୍ୟର ପ୍ରଭାବ ଲକ୍ଷ୍ୟ କରିହୁଏ । ରାଧାନାଥଙ୍କ ପରି ଅଳ୍ପ ଶବ୍ଦରେ ବହୁକଥା କହିବାର ସାମର୍ଥ୍ୟ ପଦ୍ମଚରଣଙ୍କ ଠାରେ ଲକ୍ଷ୍ୟଣୀୟ । ଅଳ୍ପଶବ୍ଦରେ ବହୁକଥା କହିବାର ମାନସିକତା ହିଁ ଆଧୁନିକତା । ଏଥିରେ ପ୍ରତ୍ୟେକ ଶବ୍ଦଭିତରେ ସୀମାହୀନ ସାମର୍ଥ୍ୟ ସଂଚରିତ ହୋଇ ରହିଥିବାରୁ କୌଣସି ଗୋଟିଏ ଶବ୍ଦକୁ ଏଥିରୁ ବାଦ୍‌ଦେଇ ହୁଏନାହିଁ । ରାଧାନାଥଙ୍କ ପ୍ରଭାବ ସମ୍ବନ୍ଧରେ ଗୋଟିଏ ଦୁଇଟି ଉଦାହରଣ ପ୍ରଦାନ କରାଯାଇପାରେ । ସାୟାହ୍ନ ବର୍ଣ୍ଣନା ଅବକାଶରେ ଉଭୟଙ୍କ ଭିତରେ ଭାବସାମ୍ୟ ସୁସ୍ପଷ୍ଟ । କବିବର ରାଧାନାଥଙ୍କ ଭାଷାରେ -

***'ତାରାଟିଏ ଫୁଟି ଗୋଧୂଳି କୁନ୍ତଳେ***
***ଦେଖୁଅଛି ମୁଖ କାଠଯୋଡ଼ିଜଳେ ।'***

***(ନନ୍ଦିକେଶ୍ୱରୀ)***

ସାୟାହ୍ନ ବର୍ଣ୍ଣନା ଅବକାଶରେ ପଦ୍ମଚରଣ କହିଛନ୍ତି –

*'ଗୋଧୂଳି-ଗଗନେ ତାରାଟିଏ ବସି*
*ନଦୀ-ବକ୍ଷ-ଦରପଣେ*
*ନିଜମୁଖ ଶୋଭା ନିଜେ ଦେଖିହସେ*
*କିବାଭାବି ମନେ ମନେ ।'*

*(କେଉଁ ଦେଶେ ଅଛ ?)*

'ଶିବାଜୀଙ୍କର ଉତ୍ସାହ ବାକ୍ୟ'ରେ କବି ରାଧାନାଥ ଭାରତବର୍ଷର ମହତ୍ତ୍ୱ ଦର୍ଶାଇବା ସହିତ ଯବନ ଆକ୍ରମଣ ଜନିତ ଦୁରବସ୍ଥାର ଚିତ୍ର ଅଙ୍କନ କରିଛନ୍ତି । ହିନ୍ଦୁମାନଙ୍କର ଏକତା ଅଭାବରୁ ଏ ଦେଶ ପରପଦାନତ ହେଲା, ଆର୍ଯ୍ୟଧର୍ମରେ ଆସିଗଲା ରାହୁର ଛାୟା, ଜନମାନସରେ ବିଷର୍ଣ୍ଣ ଭାବର ଘନ ଆସ୍ତରଣ ସୃଷ୍ଟି ହେଲା ।

*'ସେହିଦିନୁ ଆର୍ଯ୍ୟ- ଗୌରବ-ତପନ*
*ଦାସ୍ୟତମଃ ସିନ୍ଧୁ ନୀରେ ବୁଡ଼ିଲେ,*
*ସେହିଦିନୁ ଆର୍ଯ୍ୟେ ଲଭିଲେ ବନ୍ଧନ*
*ଅନ୍ଧହୋଇ ଆର୍ଯ୍ୟଧର୍ମ ହୁଡ଼ିଲେ ।'*

*(ଶିବାଜୀଙ୍କର ଉତ୍ସାହ ବାକ୍ୟ)*

କବି ପଦ୍ମଚରଣ କଳିଙ୍ଗର ଦୁର୍ଗତିରେ ମର୍ମାହତ । ରାଧାନାଥଙ୍କ ରଚିତ ପଦ ସହିତ ଭାବସାମ୍ୟ ରଖି କବି ପଦ୍ମଚରଣ କହିଛନ୍ତି ।

*'ଏହିପରି ସିନା କଳିଙ୍ଗ ତପନ*
*ବୁଡ଼ିଗଲେ ଦିନେ ଦଇଆ ତୀରେ*
*ଏହିପରି ସିନା କଳିଙ୍ଗ ବୀରତ୍ୱ*
*ଭାସିଗଲା କାଳ-ସାଗର-ନୀରେ ।'*

*(ଧଉଳି ପାହାଡ଼)*

ଧଉଳି ପାହାଡ଼ କବିତା ରଚନା କ୍ଷେତ୍ରରେ କବି ପଦ୍ମଚରଣ ନାଟ୍ୟକାର ଦ୍ୱିଜେନ୍ଦ୍ର ଲାଲରାୟଙ୍କ ମେବାର ପତନ ନାଟକରେ ଥିବା ମେବାର ପାହାଡ଼କୁ ନେଇ ବିରଚିତ ଗୀତ ଦ୍ୱାରା କେତେକାଂଶରେ ପ୍ରଭାବିତ ହେବା ପରି ଜଣାଯାଏ । ସୂଚନା ଯୋଗ୍ୟ ଯେ ଉକ୍ତ ନାଟକଟିର ପ୍ରଥମ ପ୍ରକାଶ କାଳ ୧୯୦୮ ମସିହା ଓ 'ଧଉଳି ପାହାଡ଼' କବିତାର ପ୍ରଥମ ପ୍ରକାଶ କାଳ ୧୯୨୦ ମସିହା ।

ମେବାରର ପାହାଡ଼କୁ ସମ୍ବୋଧନ ପୂର୍ବକ ଦ୍ୱିଜେନ୍ଦ୍ର ଲାଲ କହିଛନ୍ତି-

*'ମେବାର ପାହାଡ଼ ମେବାର ପାହାଡ଼*
*ଯୁଝେଛିଲ ଯଥା ପ୍ରତାପ ବୀର*
*ବିରାଟ ଦୈନ୍ୟଦୁଃଖ ତାହାର*
*ଶୃଙ୍ଗେର ସମ ଅଟଳ ସ୍ଥିର'*

ଏଥିରେ 'ମେବାର ପାହାଡ଼' 'ମେବାର ପାହାଡ଼' ବୋଲି କୁହାଯାଇଥିବା ବେଳେ କବି ପଦ୍ମଚରଣଙ୍କ 'ଧଉଳି ପାହାଡ଼' କବିତାରେ 'ଧଉଳିପାହାଡ଼ ଧଉଳିପାହାଡ଼' ବୋଲି ଉଲ୍ଲେଖ କରାଯାଇଛି । ବିହଙ୍ଗଗୀତିର ପ୍ରସଙ୍ଗର ଅବତାରଣା ଉଭୟ ଗୀତରେ କରାଯାଇଛି । ମେବାର ପାହାଡ଼ କବିତାରେ କୁହାଯାଇଛି :

'ଯାହାର କୁଞ୍ଜେ ବିହଗ ଗାଇଛେ
ଗୁଞ୍ଜରି ସ୍ତବ ଯାହର ଶ୍ରୀର
ଯାହାର କାନନେ ବହିୟା ଯାଇଛେ
ସୁରଭି ସ୍ନିଗ୍ଧ ପୀନ ଧୀର ।।'

ଏହି ପରିପ୍ରେକ୍ଷାରେ 'ଧଉଳି ପାହାଡ଼' କବିତାରେ କୁହାଯାଇଛି :

ଚାହିଁ ବସିଥାଏ ଧଉଳି ପାହାଡ଼
ତବ ଶିରେ ଶୁଣେ ବିହଙ୍ଗ ଗୀତି ।
କାନେ ବାଜିଯାଏ କେତେ ଯୁଗ-ବାଣୀ
ବହିଯାଏ ପ୍ରାଣେ ଅନନ୍ତ ପ୍ରୀତି ।।

ଅନ୍ତଃସ୍ୱର ଦୃଷ୍ଟିରୁ ବିଚାର କଲେ ଉଭୟ ମଧ୍ୟରେ କେତେକ ଭାବସାମ୍ୟ ପରିଲକ୍ଷିତ ହୁଏ । ତେବେ 'ଧଉଳି ପାହାଡ଼' କବିତାରେ କବିଙ୍କର ଅନୁଭବ ଅଧିକ ତୀକ୍ଷ୍ଣ । ଏଇ ପରିପ୍ରେକ୍ଷୀରେ ସମାଲୋଚକ ଡଃ ଶରତ୍ ଚନ୍ଦ୍ର ପ୍ରଧାନ କହନ୍ତି :- *''ମେବାର ପାହାଡ଼'ରେ ସ୍ୱପ୍ନବିଭୋର ଅତୀତ ବନ୍ଦନା ରହିଛି, କିନ୍ତୁ ଧଉଳି ପାହାଡ଼ର କାବ୍ୟ ଚେତନା କବିଙ୍କର ଅନୁଭୂତି ଦ୍ୱାରା ବର୍ଣ୍ଣୋଜ୍ଜ୍ୱଳ ହୋଇପାରିଛି । ଏଥିରେ ଅତୀତ ଉତ୍କଳର ଦିଗ୍‌ବଳୟ ସହ ଭବିଷ୍ୟତ ଜୀବନର ସୂଚନା ଦିଆଯାଇଛି''-*

*(କାବ୍ୟଧାରା ଓ କବି ମାନସ)*

ଫକୀରମୋହନଙ୍କର କବିତ୍ୱ ନିଜସ୍ୱ ବ୍ୟକ୍ତିଗତ ଜୀବନର ଅନୁଭୂତି ଭିତ୍ତିରେ ମୁଖ୍ୟତଃ ସଂଗଠିତ । ଦୁଃଖରେ ଯେତେବେଳେ ହୃଦୟ ତାଙ୍କର ବିଦୀର୍ଣ୍ଣ,

ସେତେବେଳେ ସେ ତାଙ୍କ ଅଧିକାଂଶ କବିତା ରଚନା କରିଛନ୍ତି । ତନ୍ମଧ୍ୟରୁ 'ଉପହାର' ଅନ୍ୟତମ । ଏହାର ପ୍ରାରମ୍ଭରେ ଫକୀରମୋହନ ଲେଖିଛନ୍ତି—

*'ମୋ କୁଟୀରରାଣୀ କୃଷ୍ଣକୁମାରୀ ସୁନ୍ଦରୀ*
*ଜୀବନବଲ୍ଲଭା ପ୍ରାଣପ୍ରିୟା ସହଚରୀ ।'*

ପଦ୍ମଚରଣ 'ପ୍ରବାସୀ ସୈନିକର ଶେଷ ଚିନ୍ତା' (ଅନୁପ୍ରେରିତ) କବିତାରେ ଲେଖିଛନ୍ତି-

*'ମୋ କୁଟୀର-ସତୀ-ଲକ୍ଷ୍ମୀ ଗୋଲାପ ସୁନ୍ଦରୀ*
*ଜୀବନବଲ୍ଲଭା ପ୍ରାଣପ୍ରିୟା ସହଚରୀ ।'*

ଉଭୟ ପଦର ଶେଷପାଦରେ ପୂର୍ଣ୍ଣସାମ୍ୟ ରହିଛି । ପ୍ରଥମ ପାଦଟିରେ ଆଂଶିକ ସାମ୍ୟ ଓ ଆଂଶିକ ବୈଷମ୍ୟ ପରିଦୃଷ୍ଟ ହୁଏ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଫକୀରମୋହନଙ୍କର ପତ୍ନୀଙ୍କର ନାମ ହେଉଛି କୃଷ୍ଣକୁମାରୀ ଏବଂ ପଦ୍ମଚରଣଙ୍କ ପତ୍ନୀଙ୍କ ନାମ ହେଉଛି ଗୋଲାପ ଦେଈ ।

ପୂର୍ବଗୌରବ ସ୍ମରଣ ସମ୍ବନ୍ଧରେ କବି ଗୋପବନ୍ଧୁଙ୍କର ସହିତ କବି ପଦ୍ମଚରଣଙ୍କର କେତେକ ଭାବସାମ୍ୟ ଲକ୍ଷ୍ୟଣୀୟ । କବି ଗୋପବନ୍ଧୁ କହିଛନ୍ତି-

*'ଅଛି ସେହି ଗିରି ଅଛି ସେ ବିପିନ*
*ଅଛି ତୋର ଶିଳା ସୁଦୃଢ ପୁଳିନ*
*କିନ୍ତୁ କାହିଁ ଆହା ଏବେ ସେ ବୀରତା*
*ଓଡ଼ିଆ ଜାତିର ପୂର୍ବ ଜାତୀୟତା ।'*

*(ରେଳ ଉପରେ ଚିଲିକାଦର୍ଶନ)*

ଅନୁରୂପ ଭାବରେ କବି ପଦ୍ମଚରଣ ଉଲ୍ଲେଖ କରିଛନ୍ତି-

*'ଅଛ ତ ହେ ଶୈଳ, ସିନ୍ଧୁ, ଅଛ ସିନ୍ଧୁ-ଗରଜନ*
*ଅଛ ସିନ୍ଧୁ-ବେଳାଭୂମି ଅଛ ନଭେ ତାରାଗଣ*
*ନଗରେ ପ୍ରାନ୍ତରେ ଅଛ କେତେ ତୁଙ୍ଗ ଦେବାଳୟ*
*ରହିଛ କାନନ-ଶ୍ରେଣୀ ରହିଛ ମଧୁ ମଳୟ*

x x x x

*ସମସ୍ତେ ତ ରହିଅଛ କହ ଦେଖି କହ ଥରେ*
*କେତେ କାଳ ସେ ମହିମା ରହିଥିବ ଗୁପତରେ ।'*

*(ତ୍ରିବେଣୀ ତଟେ)*

ଉତ୍କଳମଣି ଗୋପବନ୍ଧୁ ସ୍ୱରଚିତ 'ଖଣ୍ଡଗିରି ଶିଖରେ' କବିତାରେ ଖଣ୍ଡଗିରିକୁ ଅତୀତ ଉତ୍କଳର ଗୌରବଦୀପ୍ତ ଅଧ୍ୟାୟ ଆଧୁନିକ ଉତ୍କଳବାସୀଙ୍କୁ ଶୁଣାଇବା ନିମନ୍ତେ ଅନୁରୋଧ କରିଛନ୍ତି । କବିଙ୍କ ମତରେ ଅତୀତ ଗୌରବର ଉପସ୍ଥାପନା ଅଯଥାର୍ଥ ନୁହେଁ । ଏହାର ବହୁଳ ପ୍ରଭାବ ତଥା ଆବଶ୍ୟକତା ରହିଛି । ଅତୀତରୁ ଶିକ୍ଷାଲାଭ କଲେ ବ୍ୟକ୍ତି ବା ଜାତି ଭବିଷ୍ୟତର ସଂଗଠନ ଉପଯୁକ୍ତ ଧାରାରେ କରିପାରେ । ଉତ୍କଳମଣି ଖଣ୍ଡଗିରିକୁ ଅନୁରୋଧ ପୂର୍ବକ କହିଛନ୍ତି –

*'କହି ତାଙ୍କ କଥା ତାଙ୍କ ରାଜ୍ୟ ସମାଚାର*
*ନିର୍ଜୀବ ଉତ୍କଳେ ପ୍ରାଣ କର ହେ ସଞ୍ଚାର ।'*

*(ଖଣ୍ଡଗିରି ଶିଖରେ)*

କବି ପଦ୍ମଚରଣ ସ୍ୱ.ରଚିତ କବିତା 'ଖୋରଧା ପ୍ରଥମ ଦର୍ଶନେ'ରେ ମରି ମଧ୍ୟ ଅମର ହୋଇଥିବା ପାଇକମାନଙ୍କୁ ଅତୀତର ଗୌରବଗାଥା ଦେଶବାସୀଙ୍କୁ ନ ଶୁଣାଇବା ପାଇଁ ଅନୁରୋଧ କରିଛନ୍ତି, କାରଣ ଦେଶବାସୀଙ୍କର ତାହା ଶୁଣିବାକୁ ଆଉ ଆଗ୍ରହ ନାହିଁ । ବରଂ ବ୍ୟାଘ୍ରଶିଶୁ, ହରିଣଶାବକଙ୍କୁ ସେଇ ବୀର ଗାଥା ଶୁଣାଇବାକୁ ସେ ପରାମର୍ଶ ଦେଇଛନ୍ତି ।

*'ତବ ଗୀତ ପାଇଁ ନାହିଁ ଆଉ ସ୍ଥାନ*
*ତବ ଗାଥା ଲାଗି ନାହିଁ ଦେଶେ କାନ*
*x x x x*
*ଯଦି ପୂର୍ବକଥା ପଡୁଅଛି ମନେ*
*କହ ବରୁଣେଇ ବ୍ୟାଘ୍ର ଶିଶୁ କାନେ*
*କହ ସେ ସ୍ୱାଧୀନ ହରିଣ ଶାବକେ*
*ତା' ରକ୍ତ ସ୍ପନ୍ଦନେ ବିଜୁଳି ଚମକେ ।'*

*(ଖୋରଧା ପ୍ରଥମ ଦର୍ଶନେ)*

ପୂର୍ବସୂରୀଙ୍କର ପ୍ରଭାବ ସାହିତ୍ୟ କ୍ଷେତ୍ରରେ ଆଦୌ ନିନ୍ଦନୀୟ ନୁହେଁ । ସେହି ପ୍ରଭାବର ନବ ରୂପାୟଣ ଓ ତହିଁରେ ନୂତନ ଚିନ୍ତାଧାରାର ସଂଯୋଜନ ବରଂ ଅଭିନନ୍ଦନୀୟ । କବିତ୍ୱର ସୁବର୍ଣ୍ଣ ସରସତା ଏପରି ପ୍ରଭାବ ଯୋଗୁ ମ୍ଳାନ ନହୋଇ ବରଂ ଜାଜ୍ଜ୍ୱଲ୍ୟମାନ ହୋଇଥାଏ । କବି ହୋଇଥାନ୍ତି ଅତୀତ ଓ ବର୍ତ୍ତମାନ ମଧ୍ୟରେ ଏକ ବିମୁଗ୍ଧ ଅନ୍ତରା ।

ଆବଶ୍ୟକୀୟ ପ୍ରଭାବ ସହିତ ନୂତନ ଚିନ୍ତା ଓ ଚେତନାର ସଂଯୋଜନା ଫଳରେ ପଦ୍ମଚରଣଙ୍କ ସୃଷ୍ଟିସମ୍ଭାର ବିଶେଷତଃ ପଦ୍ୟସୃଷ୍ଟି ସମ୍ଭାର ପାଇଛି ଅଶେଷ ଗୌରବ ଓ ଅସୀମ ପାଠକୀୟ ଶ୍ରଦ୍ଧା । ସମୟର ବେଳାଭୂମିରେ କବି ଛାଡ଼ି ଯାଇଛନ୍ତି ସୁସ୍ପଷ୍ଟ ପାଦଚିହ୍ନ ଯାହା ପାଠକମାନଙ୍କ ଦୃଷ୍ଟିକୁ ଏବେ ମଧ୍ୟ ଆକୃଷ୍ଟ କରୁଛି । ବିଶେଷତଃ 'ପଦ୍ମପାଖୁଡ଼ା' ବିବେକୀ ଗ୍ରାହକମାନଙ୍କ ଦ୍ୱାରା ଅଧିକ ଆଦୃତ ହୋଇଛି । ଦେଶର ଏବଂ ନିଜର ଅତୀତ ପ୍ରତି ଆମୁଖତା ଉକ୍ତ ଗ୍ରନ୍ଥରେ ଲିପିବଦ୍ଧ । ଏହି ପ୍ରସଙ୍ଗରେ ଅନ୍ନଦାଶଙ୍କର ରାୟ କହିଛନ୍ତି –*"କବିତାର ବିଷୟଗୁଡ଼ିକ ମଧ୍ୟ ସାକ୍ଷ୍ୟ ଦେଉଅଛି ଯେ କବି ନିଜର ଓ ଦେଶର ଅତୀତରେ ତନ୍ମୟ ହୋଇ ମଧୁପାନ କରୁଅଛନ୍ତି । ଯାହା ପଛରେ ପକାଇଦେଇ ଆସିଅଛନ୍ତି, ସେହିସବୁ ତାଙ୍କ ମନକୁ ଟାଣି ନେଇଅଛି ।"*

*-(ଉତ୍କଳ ସାହିତ୍ୟ, ୧୦ମ ସଂଖ୍ୟା ୧୩୩୫ ସାଲ)*

କବି ପଦ୍ମଚରଣଙ୍କ ମୃତ୍ୟୁରେ ଆଧୁନିକ ଓଡ଼ିଆ ସାହିତ୍ୟାକାଶରୁ ଏକ ଉଜ୍ଜ୍ୱଳ ତାରକା ଅନ୍ତର୍ହିତ ହୋଇଗଲା । କବିଙ୍କ ମୃତ୍ୟୁରେ 'ଉତ୍କଳ ସାହିତ୍ୟ' ପତ୍ରିକାରେ 'ପରଲୋକ ଗତ ପଦ୍ମଚରଣ' ଶୀର୍ଷକରେ ସଂପାଦକୀୟରେ ଯାହା ଉଲ୍ଲେଖ କରାଯାଇଥିଲା ତାହା ପ୍ରଣିଧାନଯୋଗ୍ୟ । ଏଥିରେ ଉଲ୍ଲେଖ କରାଯାଇଥିଲା- **"ପଦ୍ମଚରଣ ଦୀର୍ଘ ପଚାଶ ବର୍ଷ ଧରି ତାଙ୍କର ମହନୀୟ ଦାନ ଦ୍ୱାରା ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି । କେହି କେହି କବି ଗୋଟିଏ ଯୁଗକୁ ଉଦ୍‌ଭାସିତ କରି ତାଙ୍କ ଜୀବଦ୍ଦଶାରେ ମଧ୍ୟ ସାହିତ୍ୟାକାଶରୁ ଅସ୍ତମିତ ହୋଇଯାଇଥାନ୍ତି । ମାତ୍ର କବି ପଦ୍ମଚରଣ ରାଧାନାଥ ଯୁଗର ଶେଷରେ କବିତା ରଚନା କରି ଏବଂ ଏହି ଯୁଗ ଦ୍ୱାରା ପ୍ରଭାବିତ ହୋଇ ମଧ୍ୟ ସତ୍ୟବାଦୀ, ସବୁଜ ଏବଂ ଆଧୁନିକ ଯୁଗରେ ଆଜୀବନ ସାହିତ୍ୟ ସାଧନାରୁ ବିରତ ହୋଇନାହାନ୍ତି ।"**

*- (ଉତ୍କଳ ସାହିତ୍ୟ, ଧନୁସଂଖ୍ୟା, ୧୩୬୨ ସାଲ)*

ଏହି 'ପଦ୍ମପାଖୁଡ଼ା' ଯଥାର୍ଥରେ ଏକ ପଦ୍ମପାଖୁଡ଼ା ଯାହା ତଲ୍ଲୀନତାର ତୀର୍ଥ ଜଳରେ ଶିକ୍ତ ହୋଇ ଜୀବନବୋଧର ପୂଜା ପାଇଁ ପୂଜାଡାଲାରେ ସଜ୍ଜିତ ହୋଇ ରହିଛି ଏବଂ ତାର ନିରୂପମ ନିସର୍ଗ ଲାବଣ୍ୟରେ ପରିବେଶ ଉଦ୍‌ଭାସିତ ହେଉଛି ।



# ସୂର୍ଯ୍ୟମୁଖୀର କବି ପଦ୍ମଚରଣ

*"କବି ଅସୀମର ବଂଶୀ ହୋଇ ବାଜି ଉଠେ । ଯେଉଁମାନେ ତାହା ଶୁଣନ୍ତି ସେମାନେ ତାହା ବୁଝନ୍ତି ଏବଂ ଗୋଟାଏ ଖିଅ ଧରି ଜୀବନ ଭସାଇଦେଇ ଚାଲନ୍ତି । କବି ପ୍ରତିମା ଭିତରେ ପ୍ରାଣ ଦିଏ । କବି 'କିଛି ନାହିଁ' ଭିତରେ 'ସବୁ ଅଛି' ସୃଷ୍ଟି କରେ" ।*

*(ପ୍ରବନ୍ଧ - ଶିକ୍ଷା ଓ ମଣିଷ)- ଗୋପୀନାଥ ମହାନ୍ତି*

କବି ପଦ୍ମଚରଣ ପଟ୍ଟନାୟକଙ୍କର ସୂର୍ଯ୍ୟମୁଖୀ ହେଉଛି ଏକ ଗୀତିକବିତା ଗୁଚ୍ଛ । ଏଥିରେ ୯ ଗୋଟି ଗୀତିକବିତା ସନ୍ନିବେଶିତ । ସେଗୁଡ଼ିକର ଶୀର୍ଷକ ଏହିପରି :- ସେବାଧର୍ମ, ବୁଦ୍ଧଦେବଙ୍କର ଉପଦେଶ, ଭାରତ ସଭ୍ୟତା, ମାତାର ଶୋକ, ବସନ୍ତ ଉତ୍ସବ, କ୍ରୁଶବିଦ୍ଧ ଯିଶୁ, ମେଲାଣି ଗୀତ, କବି ପ୍ରୟାଣ, ଓ ପୁରୁଷର ଶକ୍ତିଅର୍ଚ୍ଚନା । କବିତାଗୁଡିକ ଭିନ୍ନଭିନ୍ନ ସମୟରେ ରଚିତ ହୋଇ 'ଉତ୍କଳ ସାହିତ୍ୟ' ଏବଂ 'ମୁକୁର' ପତ୍ରିକାରେ ପ୍ରକାଶିତ ହୋଇଥିଲା । ପରେ ସଙ୍କଳିତ ହୋଇ ୧୯୫୦ ମସିହାରେ ପୁସ୍ତକ ଆକାରରେ ପ୍ରକାଶିତ ହୋଇଥିଲା । କବିତାଗୁଡ଼ିକୁ ଆଲୋଚନାର ସୁବିଧା ସକାଶେ ଆମେ ଚାରି ଭାଗରେ ବିଭକ୍ତ କରିପାରିବା, ଯଥା :-

୧) ଜାତୀୟତାଭାବଭିତ୍ତିକ ।

୨) ମାନବିକ ମୂଲ୍ୟବୋଧଭିତ୍ତିକ ।

୩) ଶୋକାନୁଭୂତିମୂଳକ ।

୪) ଉପଦେଶାତ୍ମକ ।

**ଜାତୀୟତାଭାବଭିତ୍ତିକ :-** ଜାତି ଓ ଦେଶ ଗୋଟିଏ ସହ ଅନ୍ୟଟି ଓତପ୍ରୋତ ଜଡ଼ିତ । ଦେଶ ଗୋଟିଏ ଭୌଗୋଳିକ ପରିମିତିର ଅନ୍ୟନାମ ହେଲାବେଳେ ସେହି ପରିମିତିର ଆଧାରରେ ସଯତ୍ନବର୍ଦ୍ଧିତ ଏବଂ ପରିମିତି ପ୍ରତି ଅନୁରକ୍ତ ବ୍ୟକ୍ତିମାନଙ୍କର ସମଷ୍ଟି ହିଁ ଜାତି ପଦବାଚ୍ୟ । କହିବାର ତାତ୍ପର୍ଯ୍ୟ ହେଉଛି ଯେ ଦେଶଦେଶ ଭିତରେ ଯେପରି ବାହ୍ୟ ପରିବେଶର

ପରିବର୍ତ୍ତନଘଟେ ଜାତିଜାତିଭିତରେ ସେପରି ରୁଚିପୂର୍ଣ୍ଣ ମାନସିକତାରେ ପରିବର୍ତ୍ତନ ଘଟିଥାଏ । ଏହି ମାନସିକତାର ଭିତ୍ତିରେ ସଂସ୍କୃତି ସଂଗଠିତ । ଚୀନର ନାଗରିକମାନଙ୍କୁ ଚୀନ-ଜାତି ବୋଲି କୁହାଗଲାବେଳେ ଭାରତର ନାଗରିକମାନଙ୍କୁ ଭାରତ-ଜାତି ବୋଲି କୁହାଯାଏ । ପ୍ରତ୍ୟେକ ଜାତିକୁ ଧରିରଖିଛି ଏକ ଶକ୍ତି । ସେହି ଶକ୍ତି ପୁଣି ପ୍ରକାଶିତ ହୋଇଛି ଜାତିର ପ୍ରାଣ ଓ ମନରେ । ନିର୍ଦ୍ଦିଷ୍ଟ ପରଂପରା ଓ ପୁରୋଦୃଷ୍ଟି ଭିତ୍ତିରେ ସେହି ଜାତିର ସ୍ଥିତି ବଳିଷ୍ଠ ହୋଇଥାଏ । ଭାରତ ଜାତି ପ୍ରତି ଆନ୍ତରିକତା ହିଁ ଭାରତୀୟ ଜାତୀୟତା । ଅତୀତ ଗୌରବର ପର୍ଯ୍ୟାଲୋଚନା, ସାଂସ୍କୃତିକ ବିଭବର ନବମୂଲ୍ୟାୟନ ଏହି ଆନ୍ତରିକତାର ଅନ୍ତର୍ଭୁକ୍ତ ।

ଗୋଟିଏ ଜାତିର ସଂସ୍କୃତିକୁ ଆମେ ତିନିପ୍ରକାରେ ବିଚାର କରିପାରିବା । ପ୍ରଥମରେ - ସେ ଜାତିର ଚିନ୍ତାଧାରା ଓ ଆଦର୍ଶ, ଦ୍ୱିତୀୟରେ - ସୃଜନଶୀଳ ଆତ୍ମପ୍ରକାଶ ଓ ତୃତୀୟରେ - ତାହାର ବାହ୍ୟ ରୂପାୟଣ । ଏ ତିନିଗୋଟି କଥା ପରସ୍ପରଠାରୁ ଭିନ୍ନ ନୁହଁନ୍ତି, ବରଂ ପରସ୍ପର ସହ ସଂଲଗ୍ନ । ଭାରତୀୟ ସଂସ୍କୃତିକୁ ବିଚାରକୁ ନେଲେ ଆମେ ଦେଖିବା ଯେ ଏହାର ଚିନ୍ତା ଓ ଆଦର୍ଶ ଆଧ୍ୟାତ୍ମିକତାକୁ ଭିତ୍ତିକରି ସଂଗଠିତ । ଆଧ୍ୟାତ୍ମିକତା କହିଲେ ଆମେ ଆତ୍ମାର ପାଠ ବୋଲି ବୁଝିବା, ମନର ପାଠ ବୋଲି ବୁଝିବା ନାହିଁ । ଆତ୍ମାର ପାଠକୁ ପୁଣି ବୈରାଗ୍ୟର ପାଠ ବୋଲି ବୁଝିବା ନାହିଁ, ଅନୁରାଗର ପାଠ ବୋଲି ବୁଝିବା । କେହିକେହି କହିବାର ଶୁଣାଯାଏ ଯେ ଭାରତୀୟ ସଂସ୍କୃତି ହେଉଛି ବୈରାଗ୍ୟର ସଂସ୍କୃତି । ଏହା ଗୋଟିଏ ଭ୍ରମ । ବାସ୍ତବରେ ଭାରତୀୟ ସଂସ୍କୃତି ହେଉଛି ଅନୁରାଗର ସଂସ୍କୃତି, ଆଶାବାଦର ସଂସ୍କୃତି ଏବଂ ସର୍ବାଙ୍ଗୀନ ବିକାଶର ସଂସ୍କୃତି । ତା ନହୋଇଥିଲେ ଦୂର ଅତୀତରେ ଏଠାରେ ଶିଳ୍ପଶାସ୍ତ୍ର, କାମଶାସ୍ତ୍ର, ଚିକିତ୍ସାଶାସ୍ତ୍ର, ଜ୍ୟୋତିଷଶାସ୍ତ୍ର, ଶଲ୍ୟଶାସ୍ତ୍ର, ଗଣିତଶାସ୍ତ୍ର, ରସାୟନଶାସ୍ତ୍ର ପରି ଶାସ୍ତ୍ରମାନ ସୃଷ୍ଟି ହୋଇ ନଥାନ୍ତା । ଭାରତରେ ପ୍ରଥମେ ଉଦ୍‌ଘୋଷିତ ହୋଇଥିଲା 'ଚଲ୍ ପୃଥ୍ୱୀ ସ୍ଥିର ଭାତି' ଅର୍ଥାତ୍ ପୃଥିବୀ ଗତିଶୀଳ ଅଥଚ ତାହା ସ୍ଥିର ବୋଲି ଜଣାପଡୁଛି । ଏହାର ବହୁ ପରେ ଗାଲିଲିଓ ଏ କଥା କହିଥିଲେ । ଅବଶ୍ୟ ଏ କଥା ସ୍ୱୀକାର୍ଯ୍ୟ ଯେ ଭାରତୀୟ ସଂସ୍କୃତିର ଏହି ଦୀପ୍ତି ଓ କାନ୍ତି ତ୍ରୟୋଦଶ ଶତାବ୍ଦୀଠାରୁ କେତେକ କାରଣରୁ

ମଉଳିଯାଇଛି, ସୁପ୍ତ ହୋଇଯାଇଛି ମାତ୍ର ଲୁପ୍ତ ହୋଇନାହିଁ । କ୍ରମଶଃ ଏହାର ପୁନଃଜାଗରଣ ଘଟୁଅଛି ଏବଂ ଆଗାମୀ ଦିନରେ ଅଧିକରୁ ଅଧିକ ଘଟିବା ନିଶ୍ଚିତ । ଏହି ଦୀପ୍ତି ଦିଗନ୍ତବିସ୍ତାରୀ ହେବ ଯାହା ସମଗ୍ର ବିଶ୍ୱକୁ ଘେରି ରହିବ । ସେଦିନ ଭାରତ ହେବ ଚେତନା ସ୍ତରରେ ପୃଥିବୀର ଗୁରୁ । ବାହ୍ୟ ରୂପ ମାଧମରେ ଆତ୍ମାର ଅନୁସନ୍ଧାନ କରିବା ଥିଲା ଅତୀତରେ ଭାରତୀୟ ମାନସିକତା । ଏହି ମାନସିକତାର ବିକାଶ ଭବିଷ୍ୟତରେ ଅତୀତ ଠାରୁ ବହୁଗଣରେ ଅଧିକ ହେବ । ଆଧୁନିକ ଇଉରୋପୀୟ ସଂସ୍କୃତି ପରି ଏହା ବସ୍ତୁତାନ୍ତ୍ରିକତାରେ ଦିଗହରା ହେବ ନାହିଁ । ବସ୍ତୁର ଆଦର ଓ ଯତ୍ନ ଭବିଷ୍ୟତ ଭାରତରେ ରହିବା ସହିତ ଆତ୍ମାର ଆବିଷ୍କାର ପାଇଁ ସାଧନା ରହିବ । ଜଡତ୍ୱ ଓ ଚୈତନ୍ୟ ପରସ୍ପର ସହ ସମ୍ବନ୍ଧାନ୍ୱିତ ହୋଇ ଏଠାରେ ରହିବେ ।

ଗୋଟିଏ ଜାତି କେତେଦୂର ବିକଶିତ, ଏହା ଜଣାଯାଏ ମୁଖ୍ୟତଃ ସେ ଜାତିର ସାହିତ୍ୟ ଓ ଶିଳ୍ପକଳା ଦ୍ୱାରା । ସାହିତ୍ୟ ଧରିରଖେ ଜାତିର ମହତ୍ତ୍ୱକୁ, ସମନ୍ୱିତ କରେ ବିଶ୍ୱଚେତନା ସହ ଜାତିର ଚେତନାକୁ । ସମୟର ପରିଚୟ ପତ୍ର, ପ୍ରଗତିର ପ୍ରମାଣ ପତ୍ର ଭାବରେ ସାହିତ୍ୟ ସମ୍ମାନିତ ହୁଏ । ଏହି ପରିପ୍ରେକ୍ଷୀରେ ଶ୍ରୀଅରବିନ୍ଦଙ୍କର ମତ ଏହି ଯେ ଜାତିର ଶିଳ୍ପ, କବିତା ଓ ସାହିତ୍ୟରୁ ଆମେମାନେ ପାଉ ସେହି ଜାତିର ବୋଧିଶକ୍ତି, କଳ୍ପନାଶକ୍ତି, ପ୍ରାଣରଗତି, ଓ ସୃଜନବୁଦ୍ଧିର ସୃଜନଶୀଳ ପରିପ୍ରକାଶ ଓ ଜ୍ଞାନ ।

ସାରସ୍ୱତ ସାଧକଟିଏ ବୁଝିପାରେ ସମୟର ଆବଶ୍ୟକତା, ଦେଖିପାରେ ଭବିଷ୍ୟତର କିଛି ଚିତ୍ର ଓ ଶୁଣିପାରେ ଭବିଷ୍ୟତର କେତେକ ଶବ୍ଦ । ବେଳେବେଳେ କିଛି କବିତାର କେତେକ ପଂକ୍ତି ଭବିଷ୍ୟତର ଅଭିଷେକ ପାଇଁ ଗୋଟିଏ ଗୋଟିଏ ମନ୍ତ୍ର ହୋଇଯାଆନ୍ତି । କବି ସେତେବେଳେ ହୁଏ କେବଳ ଏକ ମାଧ୍ୟମ, ପଂକ୍ତିଗୁଡିକ ଏହି ମାଧମକୁ ଅବଲମ୍ବନ କରି ଭିନ୍ନ ଏକ ସ୍ତରରୁ ଅବତରଣ କରି ଆସନ୍ତି । ପଦ୍ମଚରଣଙ୍କର ଜାତୀୟତାବୋଧ ମୂଳକ ଗୀତିକବିତା 'ଭାରତ ସଭ୍ୟତା' ଭିତରେ ଏପରି କେତେକ ପଂକ୍ତି ଦେଖିବାକୁ ମିଳେ । ବାସନାର ବିନାଶରେ ଦୁଃଖର ବିନାଶ ବୋଲି ଭାରତ କହୁଥିଲାବେଳେ ଜଗତ ଗୁରୁତ୍ୱଦିଏ ବାସନା ଉପରେ । ପୁଣ୍ୟଭୂମି, ଜ୍ଞାନଭୂମି, ଓ ତପୋଭୂମି ଭାରତବର୍ଷ ଶିବିଙ୍କର ମହିମା ଗାଏ, ରାଜଧର୍ମର ପ୍ରଶସ୍ତି ଗାନ କରେ । ଭାରତୀୟ ସଂସ୍କୃତି ଅନ୍ୟ ଦେଶର ସଂସ୍କୃତିଠାରୁ ଭିନ୍ନ ଓ ସ୍ୱତନ୍ତ୍ର

ବୋଲି କବି ପଦ୍ମଚରଣ 'ଭାରତ ସଭ୍ୟତା' କବିତାରେ ଉଲ୍ଲେଖ କରିଛନ୍ତି । ଭାରତ ଇତିହାସ ଓ ଭାରତ ସଭ୍ୟତା ଉପରେ ଏହି କବିତାରେ ଆଲୋକପାତ କରାଯାଇଛି । ଭାରତର ଗିରି-ବନ-କାନନ-କେଦାରରେ ଝଂକୃତ ହୁଏ ଶାନ୍ତିର ସଂଗୀତ । କବିଙ୍କର ଅନୁଭବ ଏହିପରି-

*'ଭାରତର ଇତିହାସ ଭାରତ ସଭ୍ୟତା*
*ଦୁର୍ଲଭ ଏ ନିଖିଳ ସଂସାରେ*
*ଭାରତର ଉପାଦାନ ଭବ ଉପାଦାନୁ*
*ଭିନ୍ନ ସଦା ଭିତରେ ବାହାରେ'*

(ଭାରତ ସଭ୍ୟତା )

## ମାନବିକ ମୂଲ୍ୟବୋଧ ଭିତ୍ତିକ-

ବିଶ୍ୱରେ ପ୍ରାଚୁର୍ଯ୍ୟ ବଢ଼ି ଚାଲିଛି, ଶସ୍ୟ ଉତ୍ପାଦନ ବଢ଼ିଚାଲିଛି, ମଣିଷର ଆବଶ୍ୟକତା ବଢ଼ିଚାଲିଛି, ମାତ୍ର ମାନବିକତା କମିଆସୁଛି । ଅହଂଭାବରେ ଭାରାକ୍ରାନ୍ତହୋଇ ମନ ଭାରସାମ୍ୟ ହରାଇ ବସୁଛି । ସ୍ଥାନକାଳପାତ୍ରର ବିବେଚନା ନକରି ସେ ଅନେକ ଅକାର୍ଯ୍ୟ କରିବସୁଛି । ବିଶ୍ୱକୁ ବୋଝ ହୋଇଛି ଏ ଅହଂକାରୀ ମଣିଷ । ଆତଙ୍କବାଦରେ ଆତଙ୍କିତ ହୋଇଛି ଏଇ ବିଶ୍ୱ ଶତଶତ ବର୍ଷରେ ଗଠିତ ସଭ୍ୟତାକୁ ମୂହୂର୍ତ୍ତକରେ ଏହା ଭୂଲୁଣ୍ଠିତ କରିଦେଇପାରେ । ଆତଙ୍କବାଦକୁ ନିର୍ମୂଳ କରିବା ପାଇଁ ମାନବିକତା ହେଉଛି ମୂଳ ଅବ୍ୟର୍ଥ ଔଷଧ, ଯାହା ବିଶ୍ୱଗ୍ରାମ ଗଠନର ସ୍ୱପ୍ନକୁ କେବଳ ସାକାର କରିପାରିବ । ଧର୍ମ, ବର୍ଣ୍ଣ, ଦେଶ ଓ ପରିବେଶର ଉର୍ଦ୍ଧ୍ୱରେ ଏହାର ସ୍ଥିତି, ବିଶ୍ୱବୋଧ ଏହାର ଭିତ୍ତି । ଅନ୍ୟକୁ ସହ୍ୟକରିବା,ମର୍ଯ୍ୟାଦା ଦେବା ଏଥିନିମନ୍ତେ ଏକାନ୍ତ ଆବଶ୍ୟକ । ମାନବ ହେବ ଦେବମାନବ ଏଇ ମାନବିକତାର ସ୍ପର୍ଶରେ । ଲୁହାକୁ ସୁନା କରିଦେବ ମାନବିକତାର ପରଶମଣି । ଭାରତ ସାରାବିଶ୍ୱକୁ ଶିଖାଇଦେବ ଯେ ପରର ଉପକାରନିମନ୍ତେ କାର୍ଯ୍ୟକଲେ ତାହା ଈଶ୍ୱରଙ୍କ ସେବାରେ ପରିଣତ ହୁଏ । ଈଶ୍ୱର ତାକୁ ନିଜ ନିକଟରେ ସ୍ଥାନ ଦିଅନ୍ତି, ସୁଖଶାନ୍ତି ଭରିଦିଅନ୍ତି ତାହାର ପ୍ରାଣ ଓ ମନରେ । ଅନ୍ୟଆଖିରୁ ଲୁହ ପୋଛିଦେବା, ମଧୁର ବଚନରେ ଅନ୍ୟମନରେ ଆଶ୍ୱାସନା ଭରିଦେବାରେ ଯେଉଁ ମହତ୍ତ୍ୱ ଅଛି, ତାହାର ପଟାନ୍ତର ନାହିଁ ।

ଏହି ପ୍ରସଙ୍ଗରେ କବି କହିଛନ୍ତି -

*'ସହେ ଯେହୁ କଷ୍ଟ ତା ପାଇଁ ମୁକୁଟ*
*ସଜାଡ଼ି ରଖନ୍ତି ହରି*
*ଏ ଜୀବନ ଅନ୍ତେ ପିନ୍ଧାନ୍ତି ମସ୍ତକେ*
*ନିଜେ ପ୍ରଭୁ ସ୍ନେହ ଭରି'*

(ସେବା ଧର୍ମ )

କବିଙ୍କର ରଚିତ 'କ୍ରୁଶବିଦ୍ଧ ଯୀଶୁ' କବିତାରେ କୁହାଯାଇଛି, ମଣିଷ ଜାତି ଏକ, ଦେଶଭେଦରେ ଓ ସଂସ୍କୃତି ଭେଦରେ ମଣିଷ ଅଲଗା ଅଲଗା ନୁହେଁ । ଭେଦଭାବର ଊର୍ଦ୍ଧ୍ୱରେ ରହିବା ହିଁ ଯଥାର୍ଥ ମାନବିକତା । ସମୟର ଏଇ ଆବଶ୍ୟକତା ପୂରଣ ହେବା ଉଚିତ । ପୂରଣହେଲେ ଜୀବନ ଧନ୍ୟ ହେବ । ଏଇ ବିଶ୍ୱ ହେବ ଦେବତାର ଲୀଳାନଗର ଓ କ୍ରୀଡ଼ାଶିବିର । ଭାବ ହିଁ ହେବ ମାନବ ଏକତାର ମାନଦଣ୍ଡ ।

*'ଈଶ୍ୱର ତ ଏକ ବିଶ୍ୱାସ ତ ଏକ*
*ଅଭେଦ ମନୁଷ୍ୟ ଜାତି*
*ଇହୁଦି, ରୋମାନ୍ ହିନ୍ଦୁ, ମୁସଲମାନ*
*ଭାବର ଭବନେ ସାଥୀ'*

(କ୍ରୁଶବିଦ୍ଧ ଯୀଶୁ)

ସବୁ ଧର୍ମର ମୂଳତତ୍ତ୍ୱ ହେଉଛି ମାନବିକତା, ଏ କଥା କବି ଏହି କବିତାରେ ଉଲ୍ଲେଖ କରିଛନ୍ତି । ଧର୍ମର ବିଭିନ୍ନତା ରହିବ, ମାତ୍ର ଧର୍ମକୁ ନେଇ କଳହ ରହିବ ନାହିଁ । ଈଶ୍ୱରଙ୍କ ପ୍ରାପ୍ତି ନିମନ୍ତେ ପ୍ରତ୍ୟେକ ଧର୍ମ ଏକଏକ ମାଧ୍ୟମ ହେବ । ଭଗବାନ ଏକ । ମାଧ୍ୟମର ଭିନ୍ନତାରେ ସେ ଭିନ୍ନ ହୁଅନ୍ତି ନାହିଁ । ଗୋଟିଏ ପୋଖରୀର ଭିନ୍ନଭିନ୍ନ ତୁଠରୁ ସଂଗୃହୀତ ଜଳକୁ ଜଣେ ଭିନ୍ନଭିନ୍ନ ନାମ ଦେଲେ ହେଁ ଉପାଦାନ ଦିଗରୁ ଦେଖିଲେ ସେହି ଜଳ ଏକ ଓ ଅଭିନ୍ନ ହେଲାପରି ଭଗବାନଙ୍କୁ ଜଣେ ଭିନ୍ନଭିନ୍ନ ନାମ ଦେଲେ ହେଁ ଭଗବାନ ଏକ ଓ ଅଭିନ୍ନ ହୋଇ ରହିଥାନ୍ତି । ସେହି ଭଗବାନଙ୍କ ନିକଟରେ କେହି ବଡ଼ ବା ସାନ ନୁହଁନ୍ତି, ସମସ୍ତେ ସମାନ । ଧନୀ ଗରିବର ଭେଦ ତାଙ୍କ ପାଖରେ ନାହିଁ । ସେ ଦୟାମୟ, କାହାରିକୁ କଷ୍ଟ ଦିଅନ୍ତି ନାହିଁ । ମଣିଷ ନିଜର କର୍ମଫଳ ହିଁ ଭୋଗ କରେ, କର୍ମଫଳଜନିତ କଷ୍ଟପାଇଲେ ବୁଝିନପାରି ଭଗବାନଙ୍କୁ ଦୋଷ ଦିଏ ।

ମଣିଷମଣିଷ ଭିତରେ ସଦ୍‌ଭାବ, ସଂହତି, ସହାନୁଭୂତି ଦେଖିଲେ ଭଗବାନ ଖୁସି ହୁଅନ୍ତି । ସରଳ ବିଶ୍ୱାସଭରା ମନଟିକୁ ପରମ ପ୍ରଭୁ କାଳେକାଳେ ଲୋଡ଼ିଥାନ୍ତି ।

*'ଈଶ୍ୱର ଲୋଡ଼ନ୍ତି ଶୁଦ୍ଧଶାନ୍ତ ମନ*
*ସରଳ ବିଶ୍ୱାସଭରା*
*ପ୍ରେମ ବିଶ୍ୱାସରେ ଈଶ୍ୱର ରାଇଜ*
*ହୁଏ ଏହି ବସୁନ୍ଧରା'*

(କ୍ରୁଶବିଦ୍ଧ ଯୀଶୁ)

**ଶୋକାନୁଭୂତି ମୂଳକ-**

ଶୋକଗୀତି ଭାବରେ 'ମାତାର ଶୋକ' 'କବିପ୍ରୟାଣ ଓ' 'ପୁରୁଷର ଶକ୍ତି ଅର୍ଚ୍ଚନା' ଗ୍ରହଣୀୟ । 'ମାତାର ଶୋକ' କବିତାଟି ମହାରାଜ ଶ୍ରୀ ରାମଚନ୍ଦ୍ରଙ୍କ ବିୟୋଗରେ ରଚିତ ହୋଇ ଉତ୍କଳ ସାହିତ୍ୟରେ ପ୍ରକାଶିତ ହୋଇଥିଲା । ଉତ୍କଳଜନନୀଙ୍କ ଶୋକାକୁଳ ଭାବ ଏଥିରେ ଉପସ୍ଥାପିତ । ମାତୃହୃଦୟର ମମତା କବିଲେଖନୀରେ ଚମତ୍କାର ଭାବରେ ଅଭିବ୍ୟକ୍ତ ହୋଇଛି । ଦୁଃଖରେ ମ୍ରିୟମାଣ ହୋଇ ଉତ୍କଳମାତା ମହାକାଳକୁ ଦୁରନ୍ତ ଚୋର ବୋଲି ଆଖ୍ୟାୟିତ କରିଛନ୍ତି ।

'କାହିଁ କେଉଁ ନନ୍ଦନରେ ଥିଲା ଫୁଲ ଉଣା
ନେଲା ମୋ ଫୁଲଟି କିଏ ନ ବହି କରୁଣା
ମୋ ଦରିଦ୍ର ଉଦ୍ୟାନର ଗଲା ଶିରୀ ସରି
ହେ ଦୁରନ୍ତ ଚୋର, ତୋର କିବା ସୁଖ ହରି '

(ମାତାର ଶୋକ )

କବିବର ରାଧାନାଥଙ୍କ ବିୟୋଗରେ ରଚିତ ହୋଇଛି 'କବି ପ୍ରୟାଣ' କବିତା । କବିହୃଦୟର ମର୍ମଭେଦୀ ବ୍ୟଥା ପ୍ରକଟିତ ହୋଇଛି ଏହାର ଛତ୍ରେଛତ୍ରେ । ସମସ୍ତଙ୍କ ମୁଖରେ 'ଆହା' ଶବ୍ଦ । ପ୍ରକୃତିର ଚାରୁଚିତ୍ର ଆଉ କିଏ ଆଙ୍କିବ ? କିଏ ଭିନ୍ନଭିନ୍ନ ଅଞ୍ଚଳରୁ କିମ୍ବଦନ୍ତୀ ସଂଗ୍ରହ କରିବ ? - ଏ କଥା ଭାବିଭାବି ସମସ୍ତେ ମର୍ମାହତ । ରାଧାନାଥଙ୍କର ଦୟା ଓ ଅନୁକମ୍ପା ପ୍ରସଙ୍ଗ ଏଥିରେ ବର୍ଣ୍ଣିତ । ରାଧାନାଥଙ୍କ କେତେକ ପଂକ୍ତିକୁ ଖଞ୍ଜି କବି ଏହି ରଚନାଟିକୁ ଅଧିକ ହୃଦୟସ୍ପର୍ଶୀ କରିଛନ୍ତି । କବି ପଦ୍ମଚରଣଙ୍କୁ ମନ ଗବାକ୍ଷ ଫାଙ୍କରେ ଦିଶିଛି ରାଧାନାଥୀ ଗ୍ରାହକପଣର ସଖୀ ତୁଲ୍ୟ ନୀଳାମ୍ବୁ ଚିଲକା ।

ପଦ୍ମଚରଣଙ୍କ ବିଚାରରେ -

*'ଗଞ୍ଜାମ-ମଞ୍ଜୁଳ-ସରସୀ ଚିଲିକା*
*ସଖୀ ପରି ଥିଲା ତୁମପାଦେ ବିକା'*
(କବି ପ୍ରୟାଣ)

ରାଧାନାଥଙ୍କ ବିୟୋଗରେ ତାଙ୍କ ସାହିତ୍ୟର ଚିତ୍ର ଓ ଚରିତ୍ରମାନେ ମର୍ମାହତ । ସତେ ଅବା ତାଙ୍କ ପାଇଁ କିଏ ଲିଭାଇ ଦେଲା ବେଦରୁ ଗାୟତ୍ରୀ, ଚୋରାଇ ନେଲା ଦରିଦ୍ରର ଗଳାମାଳ । ଏମାନେ ନବମଲ୍ଲିକାପରି ସତେଜ ଥିଲେ, କାଳର ଦୁରନ୍ତ ବଲ୍ଲୀକ ଚେର କାଟିଦେବାରୁ ସହସା ମଉଳିଗଲେ । ଏହି ବିପର୍ଯ୍ୟୟକୁ ଦେଖି ଉତ୍କଳର ଗଗନପବନ ଦାରୁଣ ଦୁଃଖରେ ଭାରାକ୍ରାନ୍ତ । ତୁଣ୍ଡରେ ତାର ଏହିପରି କଥା -

*'ନନ୍ଦିକା, ଗଉରୀ ଉତ୍କଳନନ୍ଦିନୀ*
*ଉଷା,କଉଶଲ୍ୟା ଜନମଦୁଃଖିନୀ*
*ଚନ୍ଦ୍ରଭାଗା, ତୋର ଚରିତ୍ର ସୁନ୍ଦର*
*ଆଜି ଅବସାଦେ ଅବଶ କାତର'*

ଏହି କବିତା ଆକାରରେ ଦୀର୍ଘ, ପାଠକଙ୍କଭିତରେ ଯଥେଷ୍ଟ ଭାବାନ୍ତର ଆଣିବାକୁ ସମର୍ଥ । ମନେହୁଏ ରାଧାନାଥୀ ପ୍ରତିଭାର ଏହା ଯେପରି ଏକ ସୁଲଳିତ ଆକଳନ ।

ଅନ୍ୟ ଶୋକକବିତାଟି ଜଣେ ଅପରିଚିତା ସ୍ତ୍ରୀ ଲୋକର ଆତ୍ମାହୁତି ଘଟଣାକୁ କେନ୍ଦ୍ରକରି ରଚିତ । କବି ପଦ୍ମଚରଣ ତା ୨୧.୦୯.୧୯୦୮ ରିଖରେ ଏହି ଘଟଣାଟି ଘଟିଥିଲା ବୋଲି କବିତାତଳେ ତାରକା ଚିହ୍ନ ଦେଇ ଉଲ୍ଲେଖ କରିଛନ୍ତି । ଜଣେ ସ୍ତ୍ରୀ ଲୋକ ତାଙ୍କର ପତିଙ୍କର ନିର୍ଯ୍ୟାତନା ସହି ନ ପାରି କଟକ କାଠଯୋଡ଼ି ନଦୀର କଲେଜ ଘାଟରେ ନଦୀକୁ ଡେଇଁ ଆତ୍ମହତ୍ୟା କରିଥିଲେ । କବି ଏହି କବିତାରେ ନାରୀ ଉପରେ ଅତ୍ୟାଚାର କରୁଥିବା ପୁରୁଷଙ୍କୁ ଦୁର୍ବଳ, ଭୀରୁ ବୋଲି ବିଚାର କରିଛନ୍ତି ଏବଂ କହିଛନ୍ତି ଯେ ନାରୀର ଅବଦାନ ଅନେକ, ସେ ଦାନର ପ୍ରତିଦାନ ନାହିଁ । ନାରୀ ହେଉଛି ମାତୃଶକ୍ତି ସ୍ୱରୂପିଣୀ, ତ୍ୟାଗ, ସେବା, ସ୍ନେହର ମୂର୍ତ୍ତପ୍ରତୀକ ମର୍ତ୍ତ୍ୟଲକ୍ଷ୍ମୀ । ନାରୀର ସନ୍ତୋଷରେ ଦେବତାମାନେ ସନ୍ତୁଷ୍ଟ ହୁଅନ୍ତି ।

*'ଶୁଣିନାହୁଁ କିରେ ଦେଶ ଶାସ୍ତ୍ର କଥା*
*ନାରୀତୋଷେ ତୁଷ୍ଟ ସକଳ ଦେବତା'*

ଅତୀତ ଭାରତରେ ନାରୀର ମର୍ଯ୍ୟାଦା ଥିଲା ଅନନ୍ୟ । ସୀତା, ସାବିତ୍ରୀ ଦମୟନ୍ତୀ ପ୍ରଭୃତି ମହିୟସୀ ନାରୀମାନେ ଭାରତୀୟ ସଂସ୍କୃତିର ମୂର୍ତ୍ତିମନ୍ତ ପ୍ରତୀକ ସ୍ୱରୂପା । ସମଗ୍ର ବିଶ୍ୱ ଏପରି ନାରୀ ଚରିତ୍ରର ପରିକଳ୍ପନା ସହଜେ କରିପାରେ ନାହିଁ । ଭାରତୀୟ ନାରୀର ମହତ୍ତ୍ୱ କାଳେକାଳେ ପ୍ରତିଷ୍ଠିତ । କେତେକ କାରଣରୁ ଆଧୁନିକ ଭାରତରେ ନାରୀପ୍ରତି ସମ୍ମାନବୋଧ, କମିଯାଇଛି, ସମୟ ଆସିବ ଯେତେବେଳେ ପୁଣି ଏଇ ନାରୀର ମହତ୍ତ୍ୱ ସ୍ୱୀକୃତ ଓ ସମ୍ମାନିତ ହେବ, କବି ଏହି ଆଶା ପୋଷଣ କରିଛନ୍ତି । ନାରୀପୁରୁଷ ଉଭୟ ପରସ୍ପରକୁ ମର୍ଯ୍ୟାଦା ଦେଲେ ଭାରତୀୟ ଜୀବନ ପୂର୍ଣ୍ଣାଙ୍ଗହେବ,ମଧୁମୟ ହେବ ।

*'ଉଇଁଆସୁ ଦେଶେ ଅସ୍ତମିତ ରବି*
*ଦୂରେ ଯାଉଦୁଃଖ ଦୁରିତର ଛବି*
*ପ୍ରବୁଦ୍ଧ ଭାରତ ହସୁ ବହନ'*

**ଉପଦେଶାତ୍ମକ -**

ହିତୋପଦେଶ ଏବଂ ଜୀବନ ଚିନ୍ତା ମୁଖ୍ୟତଃ 'ବୁଦ୍ଧ ଦେବଙ୍କ ଉପଦେଶ' ଓ 'କ୍ରୁଶବିଦ୍ଧ ଯୀଶୁ' ଶୀର୍ଷକ କବିତା ଦୁଇଟିରେ ଉପସ୍ଥାପିତ । ଏଇ ଉପଦେଶ ଏବଂ ଜୀବନ ଚିନ୍ତା କୌଣସି ନିର୍ଦ୍ଦିଷ୍ଟ ଗୋଷ୍ଠୀ, ଜାତି ପାଇଁ ସୀମିତ ନୁହେଁ, ବରଂ ସମଗ୍ର ମାନବ ସମାଜ ପାଇଁ ଉଦ୍ଦିଷ୍ଟ । 'ବୁଦ୍ଧଦେବଙ୍କ ଉପଦେଶ' କବିତାରେ କୃଷାଙ୍କର ପୁତ୍ରର ମୃତ୍ୟୁ ଜନିତ ବ୍ୟାକୁଳତା ପ୍ରକଟିତ ହେବା ସହିତ ଭ୍ରମଭଂଜନ ମଧ୍ୟ ହୋଇଛି । ମୃତ ଶିଶୁପୁତ୍ରକୁ ଆଣି କୃଷା ଶରଣ ନେଲେ ବୁଦ୍ଧ ଦେବଙ୍କର । ତାଙ୍କର ଆକୁଳତା ଦେଖି ବୁଦ୍ଧଦେବ ତାକୁ ଯାହା ଘରୁ କେହି କେବେ ମରିନଥିବେ ତାଙ୍କ ଘରୁ ମୁଠାଏ ସୋରିଷ ଆଣିବା ପାଇଁ କହିଲେ । କୃଷା ଘରଘର ବୁଲି ଶେଷରେ ନିରାଶ ହେଲେ, ସୋରିଷ ମୁଠାଏ କାହାଘରୁ ଆଣିପାରିଲେ ନାହିଁ । ମୃତ ପୁତ୍ର ସହ ଫେରି ଆସି ବୁଦ୍ଧଦେବଙ୍କ ପାଦ ତଳେ ପ୍ରଣାମ ଜଣାଇ ଦୈବୀ-ବାଣୀରୁ ଯାହା ଶୁଣିଲେ ସେଥିରେ ସେ ପ୍ରକୃତିସ୍ଥ ହେଲେ । ଦୈବୀବାଣୀରୁ ଏହା ସ୍ପଷ୍ଟ ହେଲା ଯେ କର୍ମଫଳ ଭୋଗିବାକୁ ପଡ଼େ, ସେଥିରୁ କେହି ବାଦ୍ ପଡ଼ନ୍ତି ନାହିଁ । କେବଳ ସାଧନଭଜନ ଥିଲେ ଯେଉଁଠାରେ ବଡ଼ବିପଦ ପଡ଼ିବାର ଥାଏ, ସେଠାରେ ଛୋଟ ବିପଦରେ ତାହା କଟିଯାଏ । ଦୈବୀବାଣୀ ମୁଖରେ କବି କହିଛନ୍ତି-

**'ଯେ ଯାହାର କର୍ମଫଳେ ଯାଏ ଆସେ ନିତି**
**ଏହିପରି ଯୁଗଯୁଗ ଯାଉଅଛି ବିତି'**

ମଣିଷ ଜୀବନ କ୍ଷଣସ୍ଥାୟୀ, ଜନ୍ମପରି ମୃତ୍ୟୁ ଚିରନ୍ତନ ସତ୍ୟ, ଏଥିରେ ଶୋଚନା କରିବା ନିରର୍ଥକ । ଯେତେ ମର୍ମାହତ ହେଲେ ମଧ୍ୟ ମୃତ ଆଉ ଫେରିଆସେ ନାହିଁ । ଏପରି ଉପଦେଶମାନ ଉକ୍ତ କବିତାରେ ପ୍ରଦତ୍ତ ହୋଇଅଛି । 'କ୍ରୁଶବିଦ୍ଧ ଯୀଶୁ' କବିତାରେ ଯୀଶୁ କ୍ରୁଶବିଦ୍ଧ ଅବସ୍ଥାରେ ତାଙ୍କର ପ୍ରିୟ ଶିଷ୍ୟକୁ କେତେକ ଉପଦେଶ ପ୍ରଦାନ କରିଛନ୍ତି । ଜୀବନରେ ନିରପେକ୍ଷତାର ସ୍ଥାନ ବହୁ ଊର୍ଦ୍ଧ୍ୱରେ । ବିଚାର ବେଳେ ପିତାପୁତ୍ର, ବନ୍ଧୁମିତ୍ର ଅବା ଜ୍ଞାତିକୁଟୁମ୍ବର ମୋହ ରହିବା ବାଞ୍ଛନୀୟ ନୁହେଁ । ସ୍ୱାର୍ଥ, ହିଂସା, କ୍ରୋଧ ପ୍ରଭୃତି ରିପୁଗଣ ମଣିଷର ସର୍ବନାଶ କରିବାକୁ ଅପେକ୍ଷା କରିଥାଆନ୍ତି । ମଣିଷ ଏମାନଙ୍କ ପ୍ରତି ସତର୍କ ନହେଲେ ଏମାନେ ସଦଳବଳେ ମଣିଷକୁ ଗ୍ରାସ କରନ୍ତି । ସତ୍ୟ-ନ୍ୟାୟ ମାର୍ଗରେ ଗଲେ ଯେଉଁ ଦୁଃଖକଷ୍ଟ ମିଳେ ତାହା ବରଣୀୟ କାରଣ ସେ ପ୍ରକାର ଦୁଃଖକଷ୍ଟ ବରଣ ବୀରତ୍ୱର ଚିହ୍ନ । କବିଙ୍କ ଭାଷା ଏହିପରି -

*'ଘୂରି ଯାଉପଛେ ଜୀବନର ଗତି*
*ନାହିଁ କିଛି ମୋର ଡର*
*ସତ୍ୟପଥେ ମୁହିଁ ଧର୍ମ ପଥେ ମୁହିଁ*
*କି କରିବ କ୍ଷୁଦ୍ର ନର'*

ବିବେକ ହିଁ ମଣିଷର ଜାଗ୍ରତ ପ୍ରହରୀ । ଏହା ହେଉଛି ବ୍ୟକ୍ତିତ୍ୱର ସୁରମ୍ୟ ନୀଳମଣି ତୋରଣ । ଚେତନାର ବିକାଶ ନିମନ୍ତେ ବିବେକର ସଦୁପଯୋଗ ଏକାନ୍ତ ଜରୁରୀ । ବିବେକର ଜୟ ହେବ, ସତ୍ୟର ଜୟହେବ, ଭଲ କିଏ ଭେଲ କିଏ ଦିନେ ନା ଦିନେ ଜଣା ପଡ଼ିବ - ଏପରି ଚିନ୍ତା ଓ ବିଶ୍ୱାସ ପ୍ରକଟ କରାଯାଇଛି ଉକ୍ତ କବିତାରେ ।

ବିଭିନ୍ନ ଦିଗରୁ ବିଚାରକଲେ ଏହା ପ୍ରଣିଧାନଯୋଗ୍ୟ ଯେ 'ପଦ୍ମପାଖୁଡ଼ା'ରେ ପଦ୍ମଚରଣଙ୍କ କବିଚିତ୍ତ ମୁକୁଳିତ ହେଲାବେଳେ 'ସୂର୍ଯ୍ୟମୁଖୀ' ରେ ତାହା କୁସୁମିତ ହୋଇଛି । 'ପଦ୍ମପାଖୁଡ଼ା'ରେ ବ୍ୟକ୍ତିଗତ ଓ ଜାତିଗତ ଭାବାଭିବ୍ୟକ୍ତି ଥିଲାବେଳେ 'ସୂର୍ଯ୍ୟମୁଖୀ'ରେ ସାର୍ବଜନୀନ ଚିନ୍ତା ତଥା ବିଶ୍ୱଭାବନା ସ୍ଥାନ ପାଇଛି । ଏହା ସ୍ୱୀକାର୍ଯ୍ୟ ଯେ 'ସୂର୍ଯ୍ୟମୁଖୀ'ରେ କବିଙ୍କର ବହୁବର୍ଣ୍ଣା ଅନୁଭବ ଶବ୍ଦାୟିତ ହୋଇ ଅମର ବସନ୍ତର କୋଟି କୁସୁମ ଫୁଟାଇ ଦେଇଛି ।



# ପୂଜ୍ୟପୂଜା ବିଭବ ଓ କବି ଉପେନ୍ଦ୍ର ତ୍ରିପାଠୀ

*"ଆଧୁନିକ ଓଡ଼ିଆ ଶିଶୁ ସାହିତ୍ୟକୁ ପରିପୁଷ୍ଟ କରିବାକୁ ଯେଉଁମାନେ ଅନବଦ୍ୟ ପ୍ରୟାସ କରିଛନ୍ତି ସେମାନଙ୍କ ମଧ୍ୟରୁ ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ ଅଗ୍ରଗଣ୍ୟ ଜଣେ ନୀରବ ସାଧକ ଏବଂ ନିଷ୍ଠାପର ଶିଶୁସାହିତ୍ୟସ୍ରଷ୍ଟା ଭାବରେ ତାଙ୍କର ଅବଦାନକୁ ସର୍ବାନ୍ତକରଣରେ ସ୍ୱୀକାର କରିବାକୁ ହେବ ।"*

ପ୍ରଫେସର ପ୍ରଦୀପ ଚନ୍ଦ୍ର ତ୍ରିପାଠୀ

ଅନ୍ତର୍ମନର ସୁଶ୍ରୀ ଶୋଭନ ଅଭିବ୍ୟକ୍ତି ହେଉଛି କବିତା । ଶବ୍ଦ ମାଧ୍ୟମରେ ଚିତ୍ର ପ୍ରଦାନ କରିବାରେ ଯେଉଁ କବିତା ଯେତେ ଅଧିକ ସମର୍ଥ, ସେହି କବିତା ସେତେ ଆଦୃତ ଓ ପ୍ରତିଷ୍ଠିତ । ପରିବେଶ ବା ଘଟଣାର ସୁସଜ୍ଜିତ ବିବରଣୀ ଭିତରେ ଯେଉଁ ସ୍ୱର୍ଣ୍ଣକାତର କବି ଚିତ୍ତଟି ଅଭିଷିକ୍ତ, ତାହାହିଁ କବିତାର ଆତ୍ମା । କବି ଦୃଷ୍ଟି ଭିନ୍ନ, ସୃଷ୍ଟି ମଧ୍ୟ ଭିନ୍ନ । ସେ ସୃଷ୍ଟିରେ ଅଦିନ କଦମ୍ବ ଫୁଟେ, ଅଦିନ ମଳୟ ଛୁଟେ, ବର୍ଷା ବୈଶାଖ ଓ ବସନ୍ତର ସମନ୍ୱିତ ବାତାବରଣରେ ମନ ପୁଲକି ଉଠେ । ହସ ସେଠାରେ ଲୁହର ରୂପାନ୍ତର, ସ୍ନେହ ସେଠାରେ ମୋହର ଅନ୍ୟନାମ । ଆତ୍ମୀୟତାର ହାତ ବଢ଼ାଇ କବି ଚାହେଁ ଛୁଇଁଦେବାକୁ ବିଶ୍ୱପ୍ରକୃତିକୁ, ବିଶ୍ୱଜୀବନକୁ । ଜନମାନସର ଅନନ୍ୟ ଅନୁଭବ ପ୍ରତିଫଳିତ ହୁଏ କବି ମନର ସ୍ୱଚ୍ଛ ମୁକୁରରେ । ସେ ହୁଏ ବିଶ୍ୱମାନବର ପ୍ରତିନିଧି, ବିଶ୍ୱପ୍ରକୃତି ହୁଏ ତା' ପାଇଁ ଅମୂଲ୍ୟନିଧି । କ୍ଷଣକ ପାଇଁ ହେଲେ ମଧ୍ୟ ସେ ଆଉ କାହାର ଧୀରଲଳିତ ପାଦଶବ୍ଦ ଶୁଣିପାରେ, ଆନନ୍ଦରେ ଅଭିଭୂତ ହୋଇ ସ୍ୱକୀୟ ସୁକୁମାର ଅନୁଭବଟିକୁ ଲିପିବଦ୍ଧ କରେ । ସେଇ ଶକ୍ତିର ନିର୍ମଳ ନିରାଜନା ପାଇଁ ତା'ର ସୃଷ୍ଟି ସମ୍ଭାର ହୁଏ ସଜଡ଼ା ପୂଜାଡ଼ାଲା । କବି ହୁଏ ଚେତନାରେ ଯଥାର୍ଥ ପୂଜାରୀ ।

ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ ଓଡ଼ିଆ ଶିଶୁସାହିତ୍ୟ ଆକାଶର ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ । ଶିଶୁମାନଙ୍କ ସ୍ତରକୁ ମାନସିକତାରେ ଓହ୍ଲାଇଆସି ସେ ରଚନା କରିଛନ୍ତି ଅନେକ କବିତା । ବାସ୍ତବରେ ତାହା ହିଁ ଶିଶୁ ସାହିତ୍ୟ ଯାହା ରଚନା କରିବା ନିମନ୍ତେ ସାହିତ୍ୟିକକୁ ଶିଶୁ ମନସ୍ତତ୍ତ୍ୱକୁ ଯଥେଷ୍ଟ ମର୍ଯ୍ୟାଦା ଦେବାକୁପଡ଼େ ।

କବି ଶ୍ରୀଯୁକ୍ତ ତ୍ରିପାଠୀ ଶିଶୁ ମନସ୍ତତ୍ତ୍ୱକୁ ଯଥାଯୋଗ୍ୟ ମର୍ଯ୍ୟାଦା ଦେଇଛନ୍ତି । ଏହି ପ୍ରସଙ୍ଗରେ ବିଶିଷ୍ଟ ଶିଶୁ ସାହିତ୍ୟିକ ପ୍ରଫେସର ଡକ୍ଟର ଜଗନ୍ନାଥ ମହାନ୍ତି କହିଛନ୍ତି – ''ପଣ୍ଡିତ ତ୍ରିପାଠୀ ଥିଲେ ଜଣେ ଅଭିଜ୍ଞ ଓ ସମ୍ବେଦନଶୀଳ ଶିକ୍ଷକ । ଶିଶୁ ଓ କିଶୋର ମନକୁ ଚିହ୍ନି ସେମାନଙ୍କ ଭାଷାକୁ ଜାଣି ଓ ସେମାନଙ୍କ ପ୍ରିୟ ପରିଚିତ ବିଷୟବସ୍ତୁକୁ ଅନୁଭବ କରି ସେ ରଚନା କରିଛନ୍ତି ଅସଂଖ୍ୟ କବିତା ଯାହାର ଅନନ୍ୟ ଆକର୍ଷଣ ଚିରନ୍ତନ ।'' ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ ଗ୍ରନ୍ଥାବଳୀର ମୁଖବନ୍ଧରେ ଡକ୍ଟର ମହେଶ୍ୱର ମହାନ୍ତି କହିଛନ୍ତି ''ଉପେନ୍ଦ୍ରବାବୁଙ୍କର ସାମୁହିକ ସୃଷ୍ଟିର ଏକ ସଂକ୍ଷିପ୍ତ ସମୀକ୍ଷାରୁ ଜଣାପଡ଼େ ଯେ ପିଲାମାନଙ୍କ ପାଇଁ ତାଙ୍କ ସାହିତ୍ୟର ପରିସର ଅତ୍ୟନ୍ତ ବ୍ୟାପକ । ତାଙ୍କର ଆଭିମୁଖ୍ୟ ଏକମୁଖୀ ନୁହେଁ, ବହୁମୁଖୀ । ସେ ଜଣେ ପାଠ୍ୟପୁସ୍ତକ ପ୍ରଣେତା ନୁହନ୍ତି କିମ୍ବା ପାଠ୍ୟପୁସ୍ତକରୁ ତାଙ୍କ ସାହିତ୍ୟର ଜନ୍ମ ବୋଲି କହିହେବ ନାହିଁ ।''

କବି ଶ୍ରୀଯୁକ୍ତ ତ୍ରିପାଠୀ ଶିଶୁ ସାହିତ୍ୟ ସୃଷ୍ଟି ସହିତ ଦେଶର କେତେକ ବରପୁତ୍ରଙ୍କ ଉଦ୍ଦେଶ୍ୟରେ ଗଭୀର ଶ୍ରଦ୍ଧା ଓ କୃତଜ୍ଞତା ଭିତ୍ତିକ କିଛି କବିତା ମଧ୍ୟ ରଚନା କରିଛନ୍ତି । ତାଙ୍କ ରଚିତ ପୂଜ୍ୟପୂଜାଭିତ୍ତିକ 'ସ୍ମୃତି ଚିନ୍ତାମଣି' ଏକ କବିତା ଗୁଚ୍ଛ ଯହିଁରେ ୧୧ ଗୋଟି କବିତା ସନ୍ନିବେଶିତ । ପୂଜ୍ୟପୂଜା ଭାରତୀୟ ସଂସ୍କୃତିର ସୁବାସିତ ସୁରମ୍ୟବିଭୂତି । ଏହାଦ୍ୱାରା ପୂଜକର ଆତ୍ମବିକାଶ ଘଟେ । ପ୍ରଣାମ, ଦଣ୍ଡବତ ଓ ନମସ୍କାରର ମହତ୍ତ୍ୱ ଅନନ୍ୟ ଓ ଅସାଧାରଣ । ଏହା ସମ୍ମାନ ପ୍ରଦାନ ଓ ଆଶୀର୍ବାଦ ଗ୍ରହଣର ଏକଏକ ବଳିଷ୍ଠ ମାଧ୍ୟମ ।

'ସ୍ମୃତି ଚିନ୍ତାମଣି'ର ପ୍ରଥମ କବିତାଟି ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଉଦ୍ଦେଶ୍ୟରେ ରଚିତ । କବିତାର ଶୀର୍ଷକ 'କବୀନ୍ଦ୍ର ରବୀନ୍ଦ୍ରନାଥ' । କବିତାଟି ତା୧୭.୦୮.୧୯୪୧ରିଖରେ ରବୀନ୍ଦ୍ରନାଥଙ୍କ ଶ୍ରାଦ୍ଧ ଉପଲକ୍ଷେ ଆୟୋଜିତ ସଭାରେ ବାଲେଶ୍ୱରଠାରେ ପଠିତ ହୋଇଥିଲା ଏବଂ ପରେ 'ସହକାର' ପତ୍ରିକାରେ ପ୍ରକାଶିତ ହୋଇଥିଲା । ରବୀନ୍ଦ୍ରନାଥଙ୍କ ଲେଖନୀରେ ସାଧାରଣ ହୋଇଛି ଅସାଧାରଣ, ସାମାନ୍ୟ ହୋଇଛି ଅସାମାନ୍ୟ । ପଦମାଳାରେ ତାଙ୍କର ପ୍ରକଟିତ ହୋଇଛି ସୀମାତୀତ ଲଳିତଲାବଣ୍ୟ- ଏକଥା କହିଛନ୍ତି ପଣ୍ଡିତ ତ୍ରିପାଠୀ ।

*'ଗଛପତ୍ରେ ପିନ୍ଧାଇଲ ନବ ନବ ସାଜ*
*ଦୀନ ଭିକାରୀରେ କେତେ କଲ ରାଜରାଜ*
*କୁସୁମେ କୁସୁମେ ତୋଳି ସୁରଭି ତରଙ୍ଗ*
*ସାହିତ୍ୟ-ସବୁଜ କୁଞ୍ଜେ କଲ କେତେରଙ୍ଗ ।'*

ଦ୍ୱିତୀୟ କବିତାର ଶୀର୍ଷକ 'ପ୍ରେମାନନ୍ଦ ସାମନ୍ତ ସିଂହାର', କବିତାଟି ବିଦଗ୍ଧକବି ଅଭିମନ୍ୟୁ ସାମନ୍ତସିଂହାରଙ୍କ ନିମନ୍ତେ ଏକ ଶ୍ରଦ୍ଧାସୁମନ । ତା୫.୦୬.୧୯୪୨ ରିଖରେ ଅଭିମନ୍ୟୁ ସାମନ୍ତସିଂହାରଙ୍କ ଜନ୍ମପୀଠରେ ଅନୁଷ୍ଠିତ ସମାରୋହରେ ପଠିତ ଏହି କବିତାରେ କବି ଅଭିମନ୍ୟୁଙ୍କର ପ୍ରଶସ୍ତି ଉପସ୍ଥାପିତ। କବିଙ୍କର କୃତି ମଧ୍ୟରେ 'ରସବତୀ', 'ପ୍ରେମକଳା', 'ପ୍ରେମଚିନ୍ତାମଣି', 'ସୁଲକ୍ଷଣା' ଏବଂ 'ବିଦଗ୍ଧ ଚିନ୍ତାମଣି'ର ନାମ ଶ୍ରୀଯୁକ୍ତ ତ୍ରିପାଠୀ ଉଲ୍ଲେଖ କରିଛନ୍ତି । ରାଧାମାଧବର ଲୀଳାଲହରୀରେ ସିକ୍ତ ଅଭିମନ୍ୟୁ କୃତିତ୍ୱର ବେଳାଭୂମି ଯେତିକି ଆକର୍ଷଣୀୟ ସେତିକି ଆଦରଣୀୟ । ଏକଥା କହିବାକୁ ଯାଇ ଶ୍ରୀଯୁକ୍ତ ତ୍ରିପାଠୀ କହିଛନ୍ତି –

*'ହେ ଉତ୍କଳ କବିରବି ଅମର ବିଜ୍ଞାଣି*
*କି କୌଶଳେ ଚିତ୍ରି ଦେଲ ଛବିଳ ଉତ୍କଳେ*
*ବ୍ରଜରାଜ, ବ୍ରଜେଶ୍ୱରୀ, ବୃନ୍ଦାବନ ଠାଣି*
*ନତ ମୁଖେ ସାରା ବିଶ୍ୱ ସେ ସୁଷମା କଳେ ।'*

ତୃତୀୟ କବିତାର ନାମ 'କବି ଶେଖର ଚିନ୍ତାମଣି' । ଉକ୍ତ କବିତାଟି ଚିନ୍ତାମଣି ମହାନ୍ତିଙ୍କ ସ୍ମୃତି ସଂଖ୍ୟା ସହକାରରେ ପ୍ରକାଶିତ ହୋଇଥିଲା । ଉତ୍କଳ- ପ୍ରକୃତିର ଅନ୍ୟତମ ରମ୍ୟରୂପକାର, ଉତ୍କଳ ଭାରତୀଙ୍କର ଅନ୍ୟତମ ବରପୁତ୍ର ଚିନ୍ତାମଣିଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିଛନ୍ତି କବି ଶ୍ରୀଯୁକ୍ତ ତ୍ରିପାଠୀ। ମର ଦେହରେ ନଥିଲେ ମଧ୍ୟ ନିଜସ୍ୱ କୃତି ଓ କୃତିତ୍ୱ ଯୋଗୁ କବି ଚିନ୍ତାମଣି ଅମରତ୍ୱର ଅଧିକାରୀ।

*'ହେ ଅମର, ମର ତନୁ ଲୁଚାଇଛ ସିନା*
*କାଳେ କାଳେ କବି ତନୁ ଲୁଚିବ କି ତବ ?*
*ବଜାଇଛ କାବ୍ୟ-କୁଞ୍ଜେ ଯେ ଅଶ୍ରୁତ ବୀଣା*
*ଅମୃତ ଝଙ୍କାର ତା'ର ଚିର ଅଭିନବ ।'*

ଚତୁର୍ଥ କବିତାର ଶୀର୍ଷକ 'ଜାତିର ପିତା ମହାତ୍ମାଗାନ୍ଧି' । କବିତାଟି ୧୯୪୮ ମସିହା ଜାନୁୟାରୀ ୩୦ ତାରିଖ ଦିନ ଅର୍ଥାତ୍ ମହାତ୍ମାଗାନ୍ଧିଙ୍କର ମହାପ୍ରୟାଣ ଦିବସରେ ରଚିତ ହୋଇଥିଲା । ଏଥିରେ ଗାନ୍ଧିଜୀଙ୍କର ମହାପ୍ରୟାଣରେ ଦେଶର ହୋଇଥିବା ଅପୂରଣୀୟ କ୍ଷତି ସଂପର୍କରେ ବର୍ଣ୍ଣନା କରାଯାଇଛି । କବି ଶ୍ରୀଯୁକ୍ତ ତ୍ରିପାଠୀ ଗାନ୍ଧିଜୀଙ୍କୁ ଦଧୀଚି, ଦେବତାର ଦେବତା, କର୍ମବୀର, ଧର୍ମବୀର, ଜଗଦ୍‌ବୀର-ମଉଡ଼ମଣି ବୋଲି ବିଚାର କରିଛନ୍ତି ।

ଆମ ଦେଶର ଦୀପ ସ୍ୱରୂପ ଥିଲେ ମହାତ୍ମାଗାନ୍ଧି । ତାଙ୍କର ବିୟୋଗରେ ସମଗ୍ର ବିଶ୍ୱ ଅନ୍ଧକାରମୟ ହୋଇଗଲା ।

*'ଦେଶର ଆମ ଦୀପଟି ଥିଲା*
*ଅକାଳେ ଆଜି ଗଲାରେ ଲିଭି*
*ଦୁନିଆ ସାରା ଅନ୍ଧକାର*
*ସବୁରି ମୁଖେ କୁଆଡ଼େ ଯିବି ।'*

ପଞ୍ଚମ କବିତାର ନାମ 'ଯୁଗସ୍ରଷ୍ଟା ରାଧାନାଥ' । କବିତାଟି ରାଧାନାଥ ସ୍ମରଣିକାରେ ପ୍ରକାଶିତ । ରାଧାନାଥ ଜଳ-ସ୍ଥଳ-କାନନ-କେଦାରରେ ଦେଖି ଥିଲେ ପ୍ରାଣପ୍ରାଚୁର୍ଯ୍ୟର ଗଭୀର ଉଦ୍‌ବେଳନ । ରାଧାନାଥଙ୍କ ସୃଷ୍ଟି ସମ୍ଭାରକୁ ଆଧାର କରି ଓଡ଼ିଆ ସାହିତ୍ୟରେ ପୁଷ୍ପବୃଷ୍ଟି ହେଲା ବୋଲି କବି ଶ୍ରୀଯୁକ୍ତ ତ୍ରିପାଠୀ ଉକ୍ତ କବିତାରେ ଉଲ୍ଲେଖ କରିଛନ୍ତି । ସେ କହିଛନ୍ତି ଯେ କବି ରାଧାନାଥ ନନ୍ଦନକାନନରୁ କୁସୁମ ଚୟନ କରି ଉତ୍କଳ ଭାରତୀଙ୍କ ପଦବନ୍ଦନା କରିଥିଲେ ।

*'ନନ୍ଦନକାନନୁ*
*ଆହରିଛ ତୁମେ କବି, ଅମ୍ଳାନ କୁସୁମ*
*ଲାଗି ଯଜ୍ଞ ଧୂମ*
*ସବୁଜ ସଞ୍ଚାର ସୂଚୀ ଚିର ମଉସୁମ ।'*

ଷଷ୍ଠ କବିତାର ଶୀର୍ଷକ 'ପଲ୍ଲୀକବି ନନ୍ଦକିଶୋର' । ଏଥିରେ ନନ୍ଦକିଶୋରଙ୍କର କବିତ୍ୱର ମହତ୍ତ୍ୱ ଆକଳିତ । ପଲ୍ଲୀପ୍ରକୃତିର ରମ୍ୟ ରୂପକାର, ପଲ୍ଲୀସଂସ୍କୃତିର ଅକପଟ ଚିତ୍ରକର ନନ୍ଦକିଶୋରଙ୍କୁ ଶ୍ରୀଯୁକ୍ତ ତ୍ରିପାଠୀ ଆନନ୍ଦ -ସୁଷମାସ୍ୱାଦୀ ବୋଲି ଅଭିହିତ କରିଛନ୍ତି, ସାରସ୍ୱତ କୁଞ୍ଜବନର ବସନ୍ତ କୋକିଳ ବୋଲି ବିଚାର କରିଛନ୍ତି । ଉକ୍ତ କବିତାରେ ଶ୍ରୀଯୁକ୍ତ ତ୍ରିପାଠୀ କବିଙ୍କ ସ୍ମୃତି ପ୍ରତି ବିନମ୍ର ପ୍ରଣତି ଜଣାଇ କହିଛନ୍ତି-

*'କଳ୍ପନା ଅତୀତ ତବ ସାରସ୍ୱତ ଶକ୍ତି*
*ଘେନ ଦେବ ଦେବଲୋକେ ମୋର ନତ-ଭକ୍ତି ।'*

ସପ୍ତମ କବିତାଟି ପଣ୍ଡିତ ଗୋଦାବରୀଶଙ୍କ ସ୍ମୃତି ତର୍ପଣ ଅବକାଶରେ ରଚିତ ଓ ଗୋଦାବରୀଶ ସ୍ମରଣିକାରେ ପ୍ରକାଶିତ । କବିତାର ଶୀର୍ଷକ ସ୍ୱର୍ଗତ ଗୋଦାବରୀଶ ମିଶ୍ର । କବି ଶ୍ରୀଯୁକ୍ତ ତ୍ରିପାଠୀ କବି ଗୋଦାବରୀଶ ମିଶ୍ରଙ୍କୁ

ଶ୍ରୀବିଦ୍ୟାବାଗୀଶ, ନୀତିଶାସ୍ତ୍ରରେ ସୁନିପୁଣ, ଦୁର୍ନୀତି ଅନ୍ତକ, ଏ ଜାତିର ଈଶ, ଜାତିଗର୍ବ-ଗୌରବ-ଗାଥାର ରୂପକାର ରୂପେ ଚିତ୍ରଣ କରିଛନ୍ତି ।

*'ଥିଲ ତୁମେ ଏ ଜାତିର ଈଶ*
*ହେ ଗୋଦାବରିଶ !*
*ଭାରତୀଭଣ୍ଡାର ପରିପୂର୍ଣ୍ଣ ଜାତିଗର୍ବ ଗୌରବ ଗାଥାରେ ।'*

ଅଷ୍ଟମ କବିତାର ଶୀର୍ଷକ 'ସାହିତ୍ୟକ ସ୍ରଷ୍ଟା ବାଳକୃଷ୍ଣ' । କବିତାଟି 'ମାତୃଭୂମି'ର ବିଶେଷାଙ୍କରେ ପ୍ରକାଶିତ ହୋଇଥିଲା । ସାହିତ୍ୟିକ ବାଳକୃଷ୍ଣଙ୍କୁ କବି ଶ୍ରୀଯୁକ୍ତ ତ୍ରିପାଠୀ ମହାନିର୍ଭୀକ, ଚିର ଆୟୁଷ୍ମାନ ଭାବରେ ବିଚାର କରିଛନ୍ତି । ତାଙ୍କର ଉଦୟରାଗ ଠାରୁ ଅସ୍ତରାଗ ଅଧିକ ଦୀପ୍ତିମୟ ଓ ଜ୍ୟୋତିର୍ମୟ ଥିଲା । ସେ ମୃତ୍ୟୁଞ୍ଜୟ ମହାମନ୍ତ୍ରରେ ଦୀକ୍ଷିତ ଥିଲେ । ସାହିତ୍ୟିକ ବାଳକୃଷ୍ଣଙ୍କ ନିମନ୍ତେ ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିଛନ୍ତି ଶ୍ରୀଯୁକ୍ତ ତ୍ରିପାଠୀ ।

*'ଅତୀତ ତା' ଦେଇଛି ଉଜଳି*
*ସୁଯାତ୍ରୀ ସେ, ପଦ ପ୍ରାନ୍ତେ ତେଣୁ ଆଜି*
*ଢାଳେ ଶ୍ରଦ୍ଧାଞ୍ଜଳି ।'*

'ଜନ ନେତା ଜବାହାର' କବିତା ହେଉଛି ନବମ କବିତା । ଏହାର ରଚନାକାଳ ୧୯୬୪ ମସିହା ଜୁନ୍ ୧୬ ତାରିଖ । ଏଥିରେ ଜବାହରଙ୍କ ସ୍ମୃତିପ୍ରତି କବି ଗଭୀର ଶ୍ରଦ୍ଧା ନିବେଦନ କରିଛନ୍ତି । ଜବାହାର ଥିଲେ ଭାରତର ସ୍ୱାଧୀନତା ପ୍ରୟାସୀ ଏକ ବଳିଷ୍ଠ ବ୍ୟକ୍ତିତ୍ୱ । ତାଙ୍କ ମୃତ୍ୟୁରେ ସମଗ୍ର ଦେଶରେ ଶୋକର ଛାୟା ଖେଳି ଯାଇଥିଲା । ବିସ୍ମୟ ବିମୁଗ୍ଧ କଣ୍ଠରେ କବି ଗାଇଛନ୍ତି—

*'କି ବିଭୂତି ଧରି ହେ ଉନ୍ନତ*
*ଆସିଥିଲ ଏ ସୁପ୍ତ ଭାରତେ ?*
*'ନବୋଦିତ ଜାଗ୍ରତ ଜାଗ୍ରତ'*
*ମହାମନ୍ତ୍ର ବାଜିଲେ ଶ୍ରୀମନ୍ତେ ।'*

ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁଙ୍କ ଉଦ୍ଦେଶ୍ୟରେ ରଚିତ କବିତାଟି ଉକ୍ତ ଗୁଚ୍ଛର ଦଶମ କବିତା । ଏହି କବିତାଟି ଲକ୍ଷ୍ମୀ ନାରାୟଣ ସ୍ମରଣିକାରେ ପ୍ରକାଶିତ ହୋଇଥିଲା ।

ଶ୍ରୀଯୁକ୍ତ ସାହୁଙ୍କ ପ୍ରତି କବିଙ୍କର ଭକ୍ତିଅର୍ଘ୍ୟ ଏଥିରେ ଅର୍ପିତ । କବିତା ତାଙ୍କର ବନଝରଣା ପରି ସ୍ୱତଃସ୍ଫୂର୍ତ୍ତ ଓ ଶାନ୍ତି ପ୍ରଦାୟକ ।

ଶ୍ରୀଯୁକ୍ତ ସାହୁଙ୍କର ରୁଚିକର ମାର୍ଜିତ ବ୍ୟବହାର ସମସ୍ତଙ୍କୁ ପ୍ରୀତ କରିଥିଲା । ସମସ୍ତଙ୍କୁ ଆପଣାର କରିନେବାର ଅପୂର୍ବ ଦକ୍ଷତା ତାଙ୍କର ଥିଲା । କବି ଶ୍ରୀଯୁକ୍ତ ତ୍ରିପାଠୀ ତାଙ୍କ ପ୍ରତି ନମ୍ରନତ ହୋଇ କହିଛନ୍ତି –

*'କଳନାରେ ଆଜି ଅକଳନ ତୁମେ*
*ଗଭୀର ସାଗର ସମ*
*ଶୁଭ୍ର ଶୀତଳ ଆଲୋକରେ ରହି*
*ଘେନ ଏ ଅର୍ଘ୍ୟ ମମ ।'*

କବିତା ଗୁଚ୍ଛର ଏକାଦଶ କବିତାର ଶୀର୍ଷକ ହେଉଛି 'ସ୍ୱର୍ଗୀୟ ପଣ୍ଡିତ ନୀଳକଣ୍ଠ' । ପଣ୍ଡିତ ନୀଳକଣ୍ଠଙ୍କ ମହା ପ୍ରୟାଣରେ ଏକ ସ୍ୱତନ୍ତ୍ର ଜାତୀୟତାବାଦୀ ଅଧ୍ୟାୟର ଅବସାନ ଘଟିଲା । ଗଭୀର ପାଣ୍ଡିତ୍ୟର ଅଧିକାରୀ ପଣ୍ଡିତ ନୀଳକଣ୍ଠ ସତେ ଅବା ଦେବତାଙ୍କ ଦରବାରକୁ ମଣ୍ଡନ କଲେ । ଦେବତାମାନେ ଆନନ୍ଦରେ ବରଣ କରି ନେଲେ ଜ୍ଞାନୀ ଗୁଣୀ ପଣ୍ଡିତ ନୀଳକଣ୍ଠଙ୍କୁ । ଶ୍ରୀଯୁକ୍ତ ତ୍ରିପାଠୀଙ୍କ ଭାଷାରେ–

*' ନାହିଁରେ ନାହିଁ ସେତ ଆଉ ନାହିଁ*
*ଦେବେ ଯେ ବସିଥିଲେ ପଥ ଚାହିଁ*
*ମଥାର ମଣି କରି ରଥରେ ନେଲେ ବରି*
*ବୃଥାରେ ଆମେ ସିନା ହାଇଁ ପାଇଁ*
*କଥାର କୋହିନୂର ଆଉ କାହିଁ ?'*

ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ ଥିଲେ ମୂଲ୍ୟବୋଧର ମଣିଷ । ସାହିତ୍ୟ ପାଇଁ ସାହିତ୍ୟ ରଚନା ନକରି ସାହିତ୍ୟକୁ ଲୋକଶିକ୍ଷାର ବଳିଷ୍ଠ ମାଧ୍ୟମ ଭାବରେ ସେ ଗ୍ରହଣ କରିଥିଲେ । ତାଙ୍କର ଏହି ଅନୁଚିନ୍ତା କାଳେକାଳେ ଅନବଦ୍ୟ ଓ ଅଭିନନ୍ଦନୀୟ ହୋଇ ରହିବ ।



# ସେ ଗାଁର କିଆଫୁଲ ଓ କବି ଜୀବନାନନ୍ଦ

*କହିବା ବାହୁଲ୍ୟ ଯେ, ଜୀବନ ବାବୁଙ୍କ ସଂଗୀତଗୁଡ଼ିକ ଏଇ ଦୃଷ୍ଟିରୁ ଉଚ୍ଚାଙ୍ଗ ରଚନା । ଭାବ, ଶବ୍ଦ, ଛନ୍ଦ, ଧ୍ୱନି ଓ ଚୂନାଚୂନା ହାଲକା ରୂପକଗୁଡ଼ିକ ତାଙ୍କର ଗୀତିଗୁଡ଼ିକୁ ଉଭୟ କବିତା ଓ ସଂଗୀତର ଗୌରବରେ ଭୂଷିତ କରିଛନ୍ତି । ସାଧାରଣତଃ ଗୋଟିଏ ଗୀତର ପ୍ରଥମ ଘୋଷା ଧାଡ଼ି ଦୁଇଟିରେ ବା ଶେଷ ଧାଡ଼ି ଦୁଇଟିରେ ବା ଉଭୟ ଭିତରେ ସୂକ୍ଷ୍ମ ଭାବଟି ହଠାତ୍ ଗୁଞ୍ଜରି ଉଠେ ଏବଂ ମଝି ଧାଡ଼ି କେତୋଟି ସେହି ଗୁଞ୍ଜରଣକୁ ଧ୍ୱନି ଓ ସ୍ୱର ସଂଯୋଗରେ ଅଧିକ ବିସ୍ତାରିତ କରିଦିଅନ୍ତି, ପଲ୍ଲବିତ କରିଦିଅନ୍ତି, ଲୀଳାୟିତ କରିଦିଅନ୍ତି ବା ବିମୋଚିତ କରିଦିଅନ୍ତି ।*

*— ମହାପାତ୍ର ନୀଳମଣି ସାହୁ*
ସେ ଗାଁର କିଆଫୁଲ- ମୁଖବନ୍ଧ

'ସେ ଗାଁର କିଆଫୁଲ' ପୁସ୍ତକରେ କବି ଜୀବନାନନ୍ଦ ପାଣିଙ୍କର ରଚିତ ୭୫ ଗୋଟି ଗୀତିକବିତା ସନ୍ନିବେଶିତ । ପୁସ୍ତକଟି 'ରସରାଜଗୀତିକୁଞ୍ଜ' ଅନୁଷ୍ଠାନ ତରଫରୁ ପ୍ରକାଶିତ । ଶ୍ରୀଯୁକ୍ତ ପାଣି ଆଧୁନିକ ଓଡ଼ିଆ ଗୀତିକବିତା ରଚନା କ୍ଷେତ୍ରରେ ଜଣେ ଲବ୍ଧପ୍ରତିଷ୍ଠ ସ୍ରଷ୍ଟା । ତାଙ୍କର ଜନ୍ମ ହୋଇଥିଲା ୧୯୩୩ ମସିହା ମାର୍ଚ୍ଚ ମାସ ୧୩ ତାରିଖରେ ମୟୂରଭଂଜ ଜିଲ୍ଲାର ପ୍ରତାପପୁର ଗ୍ରାମରେ । ପିତାଙ୍କ ନାମଥିଲା ନକୁଳ ଚରଣ ପାଣି ଓ ମାତାଙ୍କ ନାମ ଚିତ୍ରମଣି ଦେବୀ । ଜୀବନାନନ୍ଦ ପାଣି ୧୯୫୪ ମସିହାରେ ଓଡ଼ିଶା ସରକାରଙ୍କ ଅଧୀନରେ ପ୍ରଶାସନିକ ସେବାରେ ନିଯୁକ୍ତି ପ୍ରାପ୍ତ ହୋଇଥିଲେ । ୧୯୭୦ ମସିହାରେ ସେ ଯୋଗଦେଲେ କେନ୍ଦ୍ର ସଂଗୀତ ଓ ନାଟକ ଏକାଡ଼େମୀରେ । ନୃତ୍ୟ, ସଂଗୀତର ଗବେଷଣା କ୍ଷେତ୍ରରେ ତାଙ୍କର କୃତିତ୍ୱ ଅନନ୍ୟସାଧାରଣ । ଏହି ଗବେଷଣାକୁ ଭିତ୍ତିକରି ସେ ଚାରିଗୋଟି ପୁସ୍ତକ ରଚନା କରିଛନ୍ତି । ଅବସର ଗ୍ରହଣ ପରେ ଅବଶିଷ୍ଟ ଜୀବନ ତାଙ୍କର ଅତିବାହିତ ହୋଇଥିଲା ସାହିତ୍ୟ ସାଧନା ଓ ସଂଗୀତ ତଥା ନୃତ୍ୟ ଗବେଷଣାରେ । ଚଳଚ୍ଚିତ୍ର ନିର୍ଦ୍ଦେଶନା କ୍ଷେତ୍ରରେ

ତାଙ୍କର ଆଗ୍ରହ ଓ ଆନ୍ତରିକତା ଥିଲା ସ୍ୱତନ୍ତ୍ର । ସେ ୧୯୯୮ ମସିହାର ସେପ୍‌ଟେମ୍ବର ମାସ ଏକ ତାରିଖରେ ମୃତ୍ୟୁବରଣ କରିଥିଲେ । ଆଲୋଚ୍ୟ 'ସେ ଗାଁର କିଆଫୁଲ' ପୁସ୍ତକର ମୁଖବନ୍ଧ ଲେଖିଛନ୍ତି ସ୍ୱନାମଧନ୍ୟ ସାହିତ୍ୟିକ ମହାପାତ୍ର ନୀଳମଣି ସାହୁ। ସେ ମୁଖବନ୍ଧର ଶୀର୍ଷକ ରଖିଛନ୍ତି 'ଭାବ ଓ ଉଚ୍ଛ୍ୱାସର ଗୀତିକବି ଜୀବନାନନ୍ଦ' । ଜୀବନାନନ୍ଦ ପାଣି ଏକାଧାରରେ ଗଦ୍ୟ କବିତା ଓ ଗୀତିକବିତାର ସ୍ରଷ୍ଟା । ତେବେ କବିଙ୍କର ଗୀତିକବିତା ପ୍ରତି ଆକର୍ଷଣ ସ୍ୱତନ୍ତ୍ର ଥିଲା, ଏକଥା ଶ୍ରୀଯୁକ୍ତ ସାହୁ ଉଲ୍ଲେଖ କରି କହିଛନ୍ତି, ''ଜୀବନ ବାବୁ ଆଧୁନିକ ମୁକ୍ତ ଗଦ୍ୟଛନ୍ଦରେ ମଧ ବହୁ ଚମତ୍କାର କବିତା ଲେଖିଛନ୍ତି । କିନ୍ତୁ ତାଙ୍କର ଗୀତିକବିତା ଗୁଡ଼ିକରେ ସେ ଏକ ଅନନ୍ୟ ବିଶେଷତ୍ୱ ପ୍ରଦର୍ଶନ କରିଛନ୍ତି ।'' କବିଙ୍କର ଆନନ୍ଦ ଗଦ୍ୟକବିତାର କବି ଭାବରେ ଯେତିକି ଗୀତିକବି ଭାବରେ ତହିଁରୁ ଅଧିକ, ଏକଥା ଉକ୍ତ ପୁସ୍ତକରେ ସନ୍ନିବେଶିତ 'ମୋ କଥା' ଶୀର୍ଷକ ଲେଖାରେ କବି ଜୀବନାନନ୍ଦ ଉଲ୍ଲେଖ କରିଛନ୍ତି । ତାଙ୍କର ଦୁଃଖ ଯେ ଗୀତିକବିତାକୁ ଯଥାର୍ଥ ମର୍ଯ୍ୟାଦା ମିଳୁନାହିଁ । ତାହା କିପରି ବାସିଫୁଲ ପରି ଅଲୋଡ଼ା ହୋଇଯାଉଛି । ବୁଦ୍ଧିଜୀବୀଙ୍କ ମହଲରେ ଅନାଦୃତ ହୋଇ ଅକାଳରେ ଝଡ଼ି ପଡୁଛି । କବିଙ୍କ ଭାଷାରେ ''ମୁଁ ଯଦି ଗଦ୍ୟ କବିତା ନ ଲେଖି କେବଳ ଗେୟ କବିତା ଲେଖିଥାଆନ୍ତି, ତା'ହେଲେ ତ ମୁଁ କବି ବୋଲି ପରିଗଣିତ ହୋଇନଥାନ୍ତି । ଯଦି ଗେୟ-କବିତା କବିତା ନୁହେଁ ତେବେ ରବୀନ୍ଦ୍ରନାଥ ଠାକୁରଙ୍କର ଗୀତାଞ୍ଜଳି କେମିତି ନୋବେଲ ପୁରସ୍କାର ପାଇଲା । ଆଶା କରୁଛି, ମରିଯିବା ପୂର୍ବରୁ ଓଡ଼ିଶାର ସୁଧୀ ସମାଜ ପାଖରୁ ଏ ପ୍ରଶ୍ନର ଉତ୍ତର ମୁଁ ପାଇବି ।'' ଅବଶ୍ୟ ଉତ୍ତର ପାଇଲେ କି ନାହିଁ ତାହା ତାଙ୍କୁ ହିଁ ଜଣା ।

ସଂଗୀତାତ୍ମକତା ସହିତ ଗୀତି କବିତାର ଗଠନଶୈଳୀ, ପ୍ରଭାବଶୀଳତା, ଶବ୍ଦଯୋଜନା, ଛନ୍ଦ ମାଧୁର୍ଯ୍ୟ, ସଂକ୍ଷିପ୍ତତା ପ୍ରତ୍ୟେକ ପାଠକକୁ ଅଭିଭୂତ କରେ । ରସବିଳାସ ତଥା ସାଙ୍ଗୀତିକଲାବଣ୍ୟର ସ୍ୱତନ୍ତ୍ରତା ଏଥିରେ ଲକ୍ଷ୍ୟଣୀୟ । ଗୀତିକବିତାରେ ଦୁଇଟି ମୁଖ୍ୟ ବିଭବ ଥାଏ । ଗୋଟିଏ ହେଉଛି ଗୀତିମୟତା ଓ ଅନ୍ୟଟି ହେଉଛି କବିତ୍ୱର ବର୍ଣ୍ଣବିଭା । କେବଳ ଗୀତିମୟତା ଥିଲେ ଏବଂ କବିତ୍ୱର ସମ୍ଭୂତି ନଥିଲେ ତାହା ଗୀତି କବିତା ହୁଏ ନାହିଁ କିମ୍ବା କେବଳ କବିତ୍ୱର ଦୀପ୍ତି ଥାଇ ଗୀତିମୟତା ନଥିଲେ ତାହା ଗୀତିକବିତା ହୁଏ ନାହିଁ ।

ଏବେ ଜନମାନସରେ ଗୀତିକବିତା ଅଧିକରୁ ଅଧିକ ପ୍ରଭାବ ବିସ୍ତାର କରୁଛି ଏବଂ ତଥାକଥିତ ଛନ୍ଦହୀନ ଜୀବନରେ ଛନ୍ଦମାଧୁର୍ଯ୍ୟ ଭରିଦେବା ପାଇଁ ଅଭୀପ୍‌ସା କରୁଛି । କେତକ ଅନୁଷ୍ଠାନ ତରଫରୁ ଆଜିକାଲି ଗୀତିକବିତା ସମ୍ପର୍କରେ ଅଧିକ ଆଲୋଚନା କରାଯାଉଥିବାର ଲକ୍ଷ୍ୟକରିହେଉଛି । କେତେକ ଅନୁଷ୍ଠାନ ତରଫରୁ ଭିନ୍ନଭିନ୍ନ ସମୟରେ ଗୀତିକବିତା ସଂପର୍କରେ ସଂପାନମାନ ଆୟୋଜିତ ହେଉଛି ।

ଆଲୋଚ୍ୟ ଗୀତିକବିତା ପୁସ୍ତକରେ ଭିନ୍ନଭିନ୍ନ ସ୍ୱାଦର ଗୀତିକା ସନ୍ନିବେଶିତ ।କେଉଁକେଉଁ ଗୀତିକାରେ ଅଛି ଆଧୁନିକ ଜୀବନର ବାସ୍ତବତା ତ ଆଉ କେଉଁଥିରେ ରହିଛି ପ୍ରୀତିପ୍ରବଣତାର କାଦମ୍ବରୀ ପରିବେଷଣ, ପୁଣି କେଉଁଥିରେ ଅଛି ଦେବତାର ନିରାଜନା ପାଇଁ ଭକ୍ତିଭାବନା । ଅବଶ୍ୟ ଏ ଭକ୍ତିଭାବ ଭିନ୍ନଢଙ୍ଗରେ ଉପସ୍ଥାପିତ । ଉପମା, ରୂପକ ପ୍ରଭୃତିର ସଫଳ ପ୍ରୟୋଗ କବିଙ୍କ ଲେଖନୀରେ ସଂଗଠିତ । କବିଚିତ୍ତ ଚାହିଁଛି ଘାସଫୁଲଟିଏ ହୋଇ ନମ୍ରତାର ପ୍ରତୀକ ହେବାକୁ । ରୂପ, ରସ ଓ ବାସର ଗର୍ବରେ ଉଦ୍ଧତ ହେବା ତାଙ୍କର ଲକ୍ଷ୍ୟ ନୁହେଁ । ସେ ପୁଣି ଚାହାନ୍ତି ନାହିଁ ବାସହୀନ କିଂଶୁକ ହେବାପାଇଁ । ତାଙ୍କ କଥାରେ ଘାସଫୁଲର ମହତ୍ତ୍ୱ ସ୍ୱତନ୍ତ୍ର ।

*'କରନା ଦେବତା କିଂଶୁକ ମୋତେ*
*କର ମୋତେ ଘାସଫୁଲ*
*ଅବହେଳା ଖାଲି ହେଉ ମୋ ଜୀବନେ*
*ରୂପ ଯଉବନ ମୂଲ ।'*

ଘାସଫୁଲ ହେବାକୁ କେହି ଚାହେଁନା, ଏହାହିଁ ଘାସଫୁଲର ସ୍ୱତନ୍ତ୍ର ବିଶେଷତ୍ୱ । ସେ ନିଜେ ତାହାର ତୁଳନା, ତାହାର କଳନା । କବି ଚାହିଁଛନ୍ତି ନିଜପରି ନିଜେ ହେବାକୁ, ଆଉ କାହାପରି ସେ ହେବାକୁ ଚାହାଁନ୍ତି ନାହିଁ ବା ଆଉ କିଏ ତାଙ୍କ ପରି ହେଉ ବୋଲି ସେ ଭାବନ୍ତି ନାହିଁ । ଜୀବନ ଅଗ୍ରଗତି ପାଇଁ ଅଭିପ୍ରେତ, କେବଳ ଗତି ପାଇଁ ନୁହେଁ । ଲକ୍ଷ୍ୟହୀନ ଜୀବନ ହେଉଛି ଦୁଃଖର ଜୀବନ । କବିଙ୍କ ଭାଷାରେ –

*'ଯଦି ଲକ୍ଷ୍ୟ ନାହିଁ ଅବା ପଥ ବି ନାହିଁ*
*ତେବେ ଚାଲିବାର ମାନେ କିଛି ହୁଏନା ।'*

ଚଲାପଥରେ ଆଗକୁ ଆଗକୁ ଚାଲିଗଲାବେଳେ ହତାଶାର ରାହୁ ଗ୍ରାସକରେ ମନର ଚନ୍ଦ୍ରକୁ । ସବୁକିଛି କ୍ଷଣକ ପାଇଁ ମଳିନ ପଡ଼ିଯାଏ, ବିବର୍ଣ୍ଣ

ହୋଇଯାଏ । ପାଦତଳୁ ମାଟି ଖସିଯାଏ, ମଥାରେ ଆକାଶ ଭାଙ୍ଗି ପଡ଼େ,ବାତଚକ୍ର ପ୍ରାୟ ମନ ଭ୍ରମେ; ଦିଗବିଦିଗ ଶୂନ୍ୟଶୂନ୍ୟ ଲାଗେ । ସେତେବେଳେ ନିଜର ଛାଇ ମଧ୍ୟ ନିଜକୁ ଅଚିହ୍ନା ଲାଗେ । କ୍ଲାନ୍ତିର କଣ୍ଟା ବିଛେଇ ହୋଇପଡ଼େ ଚଲାବାଟରେ ।

*'ମେଘ-ଉତ୍ତରୀ-ଘେରା ଗଗନେ ମୁଁ*
*ମଉଳା ଇନ୍ଦ୍ରଧନୁ*
*ସୁର ନୁହେଁ ଖାଲି ନୀରବତା ଭରା*
*ବ୍ୟଥାର କ୍ଳାନ୍ତବେଣୁ ।'*

ଆଶାବାଦର ମଳୟ ଛନ୍ଦରେ କେତେକ ଗୀତିକବିତା ଛନ୍ଦାୟିତ । ଆଶାର ସଞ୍ଚାର କାହାର ସ୍ପର୍ଶରେ ଘଟିଛି, ଏ ପ୍ରଶ୍ନ କବି ନିଜକୁ ନିଜେ ପଚାରି ତା'ର ଉତ୍ତର ପାଇନାହାନ୍ତି । ସେହି ଅମୃତମୟ ଅଥଚ ରହସ୍ୟ ରୋମାଞ୍ଚିତ ସ୍ପର୍ଶରେ କବିମାନସ କେବଳ ବିସ୍ମିତ ହୋଇଛି ।

*'ନୀଳ ଅମ୍ବରେ/ଗୁରୁ ଗମ୍ଭୀରେ*
*ମେଘ ଡମ୍ବରୁ ଉଠେବାଜି/ମନ ମନ୍ଦିରେ*
*ଗୀତି ଗୁଞ୍ଜରେ/କା'ର ମଞ୍ଜୀର ଉଠେ ଗୁଞ୍ଜି ।'*

ରହସ୍ୟବାଦୀ ରୋମାଣ୍ଟିକ ଭାବଧାରାରେ ରଚିତ ତାଙ୍କର କେତେକ କବିତା ଅତ୍ୟନ୍ତ ସୁଖପାଠ୍ୟ ଓ ଅନୁଭବ୍ୟ । ଭାଷାର ପରିଚ୍ଛନ୍ନତା ସହିତ ଭାବର ଯଥାଯୋଗ୍ୟତା ଏଥିରେ ସମନ୍ୱିତ । ଏ ରୋମାଣ୍ଟିକ ଅନୁଚିନ୍ତା କାହା ପାଇଁ ? ପ୍ରକୃତି ପାଇଁ ? କେଉଁଦୂର ପାହାଡ଼ ପାରରେ ଥିବା ନାୟିକା ପାଇଁ ? ଜୀବନର ଜୀବନ, ପ୍ରାଣର ପ୍ରାଣ ପରମାତ୍ମାଙ୍କ ପାଇଁ ? କବି-ମାନସର ଆତ୍ମବିଚ୍ଛିନ୍ନ ଏକ ଦରଦୀ ସତ୍ତା ପାଇଁ ? ତେବେ ଏତିକି ଅନୁଭବ୍ୟ ଯେ ସେ ଅନୁଚିନ୍ତା ଏକ ସ୍ମୃତିରେଖା ମାତ୍ର । ତାହା କେବଳ 'ତୁମେ'ରେ ହିଁ ପରିବ୍ୟାପ୍ତ । ଶୁଭ ଚେତନାର ସୁବର୍ଣ୍ଣକାନ୍ତି ଏହି 'ତୁମେ'ରେ ସଞ୍ଚରିତ ଏବଂ ଅନୁରାଗର କଦମ୍ବ ରୋମାଞ୍ଚ ଏଥିରେ ପ୍ରକଟିତ । କବିଙ୍କ ଉକ୍ତିରେ –

*'ତୁମକୁ ଛୁଇଁଲେ ମୋର*
*ମନେହୁଏ ସତେ ଅବା*
*ଆକାଶର ନୀଳିମାକୁ ଛୁଉଁଛି,*
*ଅଥବା ମଝିରାତିରେ*
*ଖରା ଝାଉଁଳା ପୃଥିବୀ*
*ଅସରାଏ ବର୍ଷାରେ ଭିଜୁଛି ।'*

ନିଃସଙ୍ଗତା, ଅନ୍ତଃସାରଶୂନ୍ୟତା, ବିଷାଦ ଓ ଅଶ୍ୱସ୍ତିବୋଧ ସାଂପ୍ରତିକ ଜନମାନସର ସାଧାରଣ ଅନୁଭବ । କବିବାଣୀରେ ଏ ସ୍ୱର ଅଧିକରୁ ଅଧିକ ଝଙ୍କୃତ । ସାଂପ୍ରତିକ ପରିବେଶରୁ ଆନନ୍ଦ, ଆତ୍ମୀୟତା, ସହାନୁଭୂତି ଓ ସହନଶୀଳତା ପ୍ରାୟତଃ ଅବଲୁପ୍ତ । ଅନ୍ୟପକ୍ଷରେ ଅସହାୟତା, ଆତ୍ମଗ୍ଲାନି ଓ ବେଦନାବୋଧର ଅଖଣ୍ଡ ରାଜତ୍ୱ ସ୍ପଷ୍ଟ ଅନୁଭୂତ । ଏକଥା ସମକାଳୀନ ପ୍ରତ୍ୟେକ କବିଙ୍କ ପରି ଅନୁଭବ କରିଛନ୍ତି କବି ଶ୍ରୀଯୁକ୍ତ ପାଣି । ସେ ସ୍ପଷ୍ଟ ଭାବରେ ଏହି ଭାବତରଙ୍ଗକୁ ସ୍ଥାନ ଦେଇଛନ୍ତି କେତେକ ଗୀତିକବିତାରେ । ଗଦ୍ୟଛନ୍ଦର କବିତାଠାରୁ ଭାବ ପରିବେଷଣରେ ଆଉପାଦେ ଆଗେଇ ଯାଇଛି ଶ୍ରୀଯୁକ୍ତ ଜୀବନାନନ୍ଦଙ୍କର ଗୀତିକବିତା ।

*'ତୁମେ ଦେହ ଜ୍ୟାମିତିରେ ବଙ୍କିମ ରେଖାଦେଇ*
*କବିତାର ଉତ୍ତାପ ଲେଖା*
*ମୋ ଗଣିତ ବହିସାରା ଖାଲିଶୂନ୍ୟରେ ଭରା*
*ନାହିଁ ଗୋଟେ କିଛି ହେଲେ ସଂଖ୍ୟା ।'*

କବି ସ୍ୱପ୍ନ ଦେଖିଛନ୍ତି ସତ, ମାତ୍ର ମାଟିକୁ ଭୁଲି ନାହାଁନ୍ତି । ବରଂ ସ୍ୱପ୍ନର ସବୁଜିମାକୁ ବାସ୍ତବ ପରିବେଶରେ ରୂପାୟିତ କରିବାକୁ ଚାହିଁଛନ୍ତି । ଆକାଶ ହେଉଛି ଜ୍ୟେଷ୍ଠ ବା ଅଗ୍ରଜଭୂତ, ସର୍ବାପେକ୍ଷା ଅଧିକ ପରିବ୍ୟାପ୍ତ, ଆକାଶରୁ ବାୟୁ, ବାୟୁରୁ ତେଜ, ତେଜରୁ ଅପ୍, ଅପ୍‌ରୁ ପୃଥିବୀର ସୃଷ୍ଟି । କ୍ଷିତି, ଅପ୍, ତେଜ, ମରୁତ୍ ଓ ବ୍ୟୋମ ପ୍ରଭୃତି ପଞ୍ଚମହାଭୂତକୁ ଭିନ୍ନ ଭିନ୍ନ ଇନ୍ଦ୍ରିୟ ମାଧ୍ୟମରେ ଅନୁଭବ କରାଯାଇପାରେ । ଆକାଶକୁ ଶବ୍ଦଦ୍ୱାରା, ବାୟୁକୁ ଶବ୍ଦ ଓ ସ୍ପର୍ଶଦ୍ୱାରା,ତେଜକୁ ଶବ୍ଦ, ସ୍ପର୍ଶ ଓ ରୂପଦ୍ୱାରା, ଅପ୍‌କୁ ଶବ୍ଦ ସ୍ପର୍ଶ ରୂପ ଓ ରସଦ୍ୱାରା ଏବଂ ପୃଥିବୀକୁ ଶବ୍ଦ ସ୍ପର୍ଶ ରୂପ ଓ ରସଦ୍ୱାରା ଅନୁଭବ କରାଯାଇପାରେ । ପୃଥିବୀ ଓ ଆକାଶ ମଧ୍ୟରେ ସଚେତନ ବ୍ୟକ୍ତି ହୁଏ ଯଥାର୍ଥରେ ମିଳନ ସୋପାନ । ମାଟିରୁ ଆକାଶକୁ ଓ ଆକାଶରୁ ମାଟିକୁ ଗତିକରେ ସଚେତନ ମଣିଷର ଭାବସତ୍ତା । କବି ଏହି ସଚେତନତାକୁ ସର୍ବଦା ମନରେ ଧରିରଖି ନ ପାରି ମର୍ମାହତ ହୋଇ କହିଛନ୍ତି -

*'କ୍ଷମା କର ମତେ ଧରାର ଫୁଲ ମୁଁ*
*ନଦେଖି ନିଜର ଛାଇ*
*ମଦିର ନୟନେ ନୀଳ ଆକାଶର*
*ନୀଳିମାରେ ରହେ ଚାହିଁ ।'*

ଅପାତ୍ରରେ ଦାନ ଦେଲେ, ଅବାଟରେ ଚାଲିଲେ ଆସେ କ୍ଳାନ୍ତି ଓ ଅନୁତାପ । ନବୁଝିପାରି ଗଙ୍ଗା କୂଳରେ ବସି ଶୋଷରେ ଜୀବନ ବିତେ, ନଜାଣି ପାରି କଳ୍ପଲତା ମୂଳରେ ଥାଇ ଉପାସ ରହିବାକୁ ହୁଏ । ଜୀବନକୁ ସାର୍ଥକ କରିବା ପାଇଁ ପ୍ରୟାସ ନକରି ପ୍ରେୟ ପଥରେ ଯାଇ ନିଜ ପାଖରେ ମଣିଷ ନିଜେ ଉପହାସର ପାତ୍ର ହୁଏ ।

*'ନଦୀ ତୀରେ ବସି ମରୀଚିକା ଦେଖି*
*ଛୁଟିଲି ତା'ପଛେ ନଦୀ ଉପେକ୍ଷି*
*ଉପହାସ ଖାଲି ସଞ୍ଚୟ କଲି*
*ଉପହାର ଦେଲି ହଜାଇ*
*ଦିନର ଆଲୋକେ ଜାଳିଲି ମୁଁ ଦୀପ*
*ଅନ୍ଧାରେ ଦେଲି ଲିଭାଇ ।'*

କବିଙ୍କର କେତେକ କବିତାରେ ଅଧ୍ୟାତ୍ମଚେତନାର ସୁଧା-ସଂଜୀବନୀ ଧାରା ପ୍ରବାହିତ ହେଲାବେଳେ ଅନ୍ୟାନ୍ୟ ବହୁ କବିତାରେ ପାର୍ଥିବ ପ୍ରୀତିପ୍ରବଣତାର ମୁଗ୍ଧ ସ୍ୱର ପ୍ରତିଧ୍ୱନିତ । ନିଜକୁ ପ୍ରାୟତଃ ନାୟକ ମନେକରି ସେ ଗାଇ ଉଠିଛନ୍ତି ନିଜସ୍ୱ ରାଗିଣୀ । ସେଥିରେ କେଉଁଠି ଅଛି ହତାଶାର ହିମଶୀତଳ ସ୍ପର୍ଶ ତ ଆଉ କେଉଁଠି ଆଶାବାଦର ବସନ୍ତ ବିଳାସ । କବି ଜୀବନାନନ୍ଦ ଜଣେ ଜୀବନବାଦୀ କବି । ହତାଶାରେ ସେ ହଜିଯାଇ ନାହାନ୍ତି ବରଂ ଆଶାର ଆଲୋକରେ ନିଜକୁ ପୁନଃପୁନଃ ଖୋଜିଛନ୍ତି । ତାଙ୍କର ଅଛି ସୀମାହୀନ ଆକୁଳତା ଆତ୍ମ-ଅନ୍ୱେଷଣ ନିମନ୍ତେ । ସ୍ୱରଝଙ୍କାରକୁ ଅତିକ୍ରମ କରି ଯେଉଁ ନୀରବତାର ସ୍ଥିତି ରହିଛି, କବି ସେହି ସ୍ଥିତିକୁ ପ୍ରଣତି ଜଣାଇଛନ୍ତି ।

*'ବେହେଲାରେ ମୋର ନାହିଁ ତାର*
*ଅଛି ବାଜିବାର ଆକୁଳତା*
*କେତେ ଯେ ବ୍ୟର୍ଥ ସାରେ-ଗା-ମା-ଗଲା*
*ଛୁଇଁ ଏଇ ନୀରବତା ।'*

ପ୍ରେମର ଅନ୍ୟ ନାମ ଜୀବନ ଓ ଜୀବନର ଅନ୍ୟ ନାମ ପ୍ରେମ । ପ୍ରେମରେ ପବନ ପ୍ରବାହିତ ହୁଏ, ପ୍ରେମରେ ସମୁଦ୍ର ଉଚ୍ଛୁଳେ । ପ୍ରେମ ବହୁ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ଅବତୀର୍ଣ୍ଣ ହୋଇପାରେ ।

ଶ୍ରୀମାଙ୍କ ଭାଷାରେ – ***"Love is the infallible physician, the supreme consoler, it is the conqueror, the sovereign teacher"*** । ପ୍ରେମରେ ଅଶ୍ରୁ ଅଛି, ପୁଲକ ଅଛି, ବେଳେବେଳେ ତଟସ୍ଥ ଅବସ୍ଥା ମଧ୍ୟ ଅଛି, ଏ ସମସ୍ତ ଅବସ୍ଥାର ପୁଷ୍କଳଚିତ୍ର କବିଙ୍କର ବହୁ କବିତାରେ ରୂପାୟିତ । ପଲ୍ଲୀଗୀତି ରଚନାରେ ତାଙ୍କର ସିଦ୍ଧହସ୍ତତା ସ୍ୱୀକାର୍ଯ୍ୟ ।

ପଲ୍ଲୀ ପରିବେଶର ପ୍ରେକ୍ଷାପଟରେ ସେ ସାଧାରଣ ତଥା ସାର୍ବଜନୀନ ଜୀବନ ଦର୍ଶନର ପର୍ଯ୍ୟାଲୋଚନା କରିଛନ୍ତି । ତାଙ୍କ ରଚନାରେ ବେଙ୍ଗ ପଚାରୁଛି ବେଙ୍ଗୁଲୀକୁ–

*'ପାଦ ଖସରା ନା ଶିଉଳି ଖସରା*
*ମୁଁ ତ ପାରୁନାହିଁ ଜାଣି ।'*

ଏହାର ଉତ୍ତରରେ ବେଙ୍ଗୁଲୀ ଯେ ପାଦ ଖସରା ନୁହେଁ କି, ଶିଉଳି ଖସରା ନୁହେଁ, ମନ ହେଉଛି ଖସରା । ମନ ହିଁ ଖସିଯାଏ ।

*'ବେଙ୍ଗୁଲୀ କହେ 'ଏ ମନଟା ଖସରା*
*ତାକୁ ତ କିଛି ନ ଦିଶେ*
*ଆଖି ଥାଉଁ ଥାଉଁ ଧିର ପାଣିରେ ବି*
*ଶିଉଳିରେ ଗୋଡ଼ଖସେ ।'*

ଅନ୍ୟ ଏକ ଗୀତିକବିତାରେ କାଉକୁ ଚାଉଳ ଦେଇ ବିରହିଣୀ ନାୟିକା ସ୍ମୃତିରୁ ସମ୍ଭାବନା ପର୍ଯ୍ୟନ୍ତ କେତେ କ'ଣ ଭାବି ଚାଲିଛି । ଆଉ ଏକ ଗୀତି କବିତାରେ ବିଦେଶୀ କାନ୍ତର ସ୍ମୃତିକୁ ପାଥେୟ କରି କାନ୍ତା ତାଙ୍କର ଶୁଭଚିନ୍ତା କରିଛି । ଅଝଟ ଶିଶୁକୁ ଗୀତଗାଇ ଶୁଆଇ ଦେଉଦେଉ ସେ କହିଛି –

*'କେତେଦିନ ହେଲା ଘରୁ ସେ ଗଲେଣି*
*ଦେଇ ନାହାନ୍ତି ଚିଟାଉ*
*ନ ଦିଅନ୍ତୁ ପଛେ ଥାଆନ୍ତୁ କୁଶଳେ*
*ଆହେ ପ୍ରଭୁ ମହାବାହୁ ।*
*ଶୁଣ ତୁ ନୋହିଲେ କାନକାଟି*
*ଆସି କାନକାଟି ଯିବନେଇ*
*ବାପା ତୋ ବିଦେଶୀ ଦୂରଦେଶୁ ଆସି*
*ଦେଖିବେ ତୋ କାନ ନାହିଁ ।'*

ଚଢେୟା ଚଢେୟାଣୀ ଗୀତରେ ନିଆଁ ଚାରିଜାତି ଓ ପାଣି ଚାରିଜାତିର ଅବତାରଣା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ବଣ ନିଆଁ, ମନନିଆଁ, ତୁଣ୍ଡ ନିଆଁ, ଚିରିଗୁଣୀ ନିଆଁ ଭିତରେ ମନ ନିଆଁ ସର୍ବାପେକ୍ଷା ଅଧିକ ଶକ୍ତିଶାଳୀ ବୋଲି କବି କହିଛନ୍ତି । ସେହିପରି ଚାରିପ୍ରକାର ପାଣି ଭିତରେ କାଚକେନ୍ଦୁ ପାଣି, ମରୀଚିକା ପାଣି, ନାଳି ପାଣି ଓ କୁମ୍ଭୀର ଆଖିର ପାଣି ପ୍ରଧାନ । ଏଥିମଧ୍ୟରୁ କାଚକେନ୍ଦୁ ପାଣି ହିଁ ଶ୍ରେଷ୍ଠ ଓ କୁମ୍ଭୀର ଆଖିରପାଣି ସବୁଠାରୁ ବିପଜ୍ଜନକ ।

*'ଅଭିଲା ପାଣି ସେ ଦରଦର ହୋଇ କୁମ୍ଭୀର ଆଖିରୁ ଝରେ*
*ସେ ଲୁହକୁ ଯଦି ପୋଛିବାକୁ ଯିବୁ ମରିବୁ ମଝି ନଈରେ ।'*

ଏପରି କେତେକ ବ୍ୟକ୍ତି ଅଛନ୍ତି ଯେଉଁମାନେ କୁମ୍ଭୀର କାନ୍ଦଣାରେ ସିଦ୍ଧହସ୍ତ । ତାଙ୍କ କାନ୍ଦଣାକୁ ସତ ମଣି ଯଦି କିଏ ତାଙ୍କ ଆଖିରୁ ଲୁହ ପୋଛିବାକୁ ଯାଏ ତେବେ ସେ ସର୍ବନାଶର ଶିକାର ହୁଏ । କାରଣ ସେ ଲୁହ ପ୍ରକୃତ ଲୁହ ନୁହେଁ, ତାହା ଛଳନାର ପ୍ରତୀକ ମାତ୍ର । ସେଥିପ୍ରତି ସଚେତନ ତଥା ସତର୍କ ରହିବା ଏକାନ୍ତ ଜରୁରୀ ବୋଲି କବି ଏହି ଗୀତିରେ ସୂଚନା ଦେଇଛନ୍ତି । କବିଙ୍କର ପଲ୍ଲୀଗୀତିଗୁଡ଼ିକ ଏକାଧାରରେ ସୁଖପାଠ୍ୟ ଓ ଶିକ୍ଷଣୀୟ । ଏଥିରେ ରହିଛି ବ୍ୟକ୍ତିଗତ ଓ ସାମାଜିକ ଅନୁଚିନ୍ତାର ବାସ୍ତବ ରୂପରେଖ, ଜୀବନକୁ ବୁଝିବାକୁ ଓ ବୁଝାଇବାକୁ ପ୍ରଶଂସନୀୟ ଉଦ୍ୟମ । କେବଳ ବାହ୍ୟସ୍ତରରେ ସେ ନିଜକୁ ବାନ୍ଧି ନରଖି ଜୀବନଚିନ୍ତାର ଗଭୀରତମ ଗଭୀରତାକୁ ସ୍ପର୍ଶ କରିବାକୁ ଅଭିଳାଷ କରିଛନ୍ତି । ସ୍ଥୂଳରୁ ସୂକ୍ଷ୍ମ ପରିତଳକୁ ଚେତନାରେ ଗତି କରି ସେ ଯେଉଁ ଉପଲବ୍ଧି ପାଇଛନ୍ତି, ତାହାର ଐଶ୍ୱର୍ଯ୍ୟକୁ ସହୃଦୟ ପାଠକବର୍ଗକୁ ପ୍ରଦାନ କରିଛନ୍ତି । ତାଙ୍କର ଗୀତିକବିତାଗୁଡ଼ିକ ଜୀବନ ଜିଜ୍ଞାସାର ଏକଏକ କଦମ୍ବକୁସୁମ ଯାହାର ଉତ୍‌ଫୁଲ୍ଲିତ ରୋମାଞ୍ଚିତ ଅଭିବ୍ୟକ୍ତି ପ୍ରତ୍ୟେକ ପାଠକକୁ ଆକୃଷ୍ଟ କରେ । ଡ଼ଃ ହରିହର ମିଶ୍ରଙ୍କ ମତରେ "ଗୀତର ଅର୍ଥଠାରୁ ଧ୍ୱନି ଓ ଗୀତକୁ ଜୀବନ ଦର୍ଶନର ଚୂଡ଼ାନ୍ତ ବକ୍ତବ୍ୟରେ ପରିଣତ କରି ଜୀବନାନନ୍ଦ ଭାରତୀୟ ଗୀତିକବିତାରେ ଆଧୁନିକ ସଂଗୀତର ମୌଳିକ ରୂପରେଖ ଦେବାକୁ ଆଜୀବନ ପ୍ରୟାସ କରିଛନ୍ତି ।" ପ୍ରକୃତିର ସ୍ଥିତି ଓ ଭିନ୍ନଭିନ୍ନ ପରିସ୍ଥିତିରେ ଭିନ୍ନଭିନ୍ନ ଅନୁଭୂତି କବି ଜୀବନାନନ୍ଦଙ୍କୁ ବିମୁଗ୍ଧ କରିଛି । ସେହି ଭାବମୁଗ୍ଧତାର ଅକପଟ ଅଭିବ୍ୟକ୍ତି ତାଙ୍କର ଗୀତିକବିତାରେ ମୂର୍ତ୍ତିମନ୍ତ ହୋଇଛି । ଗୀତିକବିତା ରଚନାକ୍ଷେତ୍ରରେ ତାଙ୍କର ଅସାଧାରଣ କୃତିତ୍ୱ ଯୋଗୁଁ ସେ ସ୍ମରଣୀୟ ହୋଇ ରହିଛନ୍ତି ।



# ନାରୀକବି ସୁନ୍ଦରମଣି ପଟ୍ଟନାୟକଙ୍କ ସୃଷ୍ଟିରେ ଦେଶାତ୍ମବୋଧ

*ଶ୍ରୀମତୀ ସୁନ୍ଦରମଣି ପଟ୍ଟନାୟକ, 'କାବ୍ୟଭାରତୀ', ଓଡ଼ିଆ ସାହିତ୍ୟରେ ଏକ ପରିଚିତ ନାମ । କେବଳ ସମାଜସେବାକୁ ନିଜ ଜୀବନର ବ୍ରତ ଭାବରେ ଗ୍ରହଣ ନ କରି ସାହିତ୍ୟର ଚିରନ୍ତନ ମୂଲ୍ୟବୋଧରେ ବିଶ୍ୱାସ ରଖି ସେ ଓଡ଼ିଶାର ସାରସ୍ୱତ ଭଣ୍ଡାରକୁ ମଧ୍ୟ ସମୃଦ୍ଧ କରିପାରିଛନ୍ତି । ପ୍ରତ୍ୟେକ ପୁସ୍ତକ ତାଙ୍କର ନିଜସ୍ୱ ସାଧନାର ପରିଚୟ ଦେଇଥାଏ । ସିଦ୍ଧହସ୍ତା ସୁଲେଖିକା କାବ୍ୟଭାରତୀ ଶ୍ରୀମତୀ ପଟ୍ଟନାୟକ ତାଙ୍କର ପ୍ରତିଟି ରଚନାରେ ଓଡ଼ିଆତ୍ୱକୁ ପ୍ରତିଷ୍ଠା କରିପାରିଛନ୍ତି ।*

(ଡଃ ପ୍ରସନ୍ନ କୁମାର ପାଢଶାଣୀ)

କବି ସୁନ୍ଦରମଣି ପଟ୍ଟନାୟକ ଏକାଧାରରେ ସମାଜସେବିକା, ନାରୀନେତ୍ରୀ ତଥା ରାଜନୈତିକ କର୍ମୀ । କବି ପ୍ରତିଭାର ଅଧିକାରିଣୀ ଶ୍ରୀମତୀ ପଟ୍ଟନାୟକ ସ୍ୱରଚିତ କାବ୍ୟ 'ପଦ୍ମାବତୀ' ପାଇଁ କାବ୍ୟଭାରତୀ ଉପାଧି ପ୍ରାପ୍ତ ହୋଇଛନ୍ତି । ତାଙ୍କଦ୍ୱାରା ରଚିତ ଗ୍ରନ୍ଥମାନଙ୍କ ମଧ୍ୟରୁ କେତେକ ପ୍ରକାଶିତ ହୋଇଛି ଏବଂ ଆଉ କେତେକ ଅପ୍ରକାଶିତ ଅବସ୍ଥାରେ ରହିଛି । ପ୍ରକାଶିତ ଗ୍ରନ୍ଥଗୁଡ଼ିକ ଭିତରେ 'ପଦ୍ମାବତୀ', 'କିଶୋରୀ ଚନ୍ଦ୍ରାନନ ଚମ୍ପୂ', 'ସୁଭଦ୍ରା ପରିଣୟ', 'କୋଣାର୍କ', 'ପଲ୍ଲୀଶ୍ରୀ', 'ରକ୍ତ କରବୀ' ଓ 'ଅନ୍ତିମ ସୂର୍ଯ୍ୟ' ଅନ୍ତର୍ଭୁକ୍ତ । ଏଥିରୁ 'ପଦ୍ମାବତୀ' ଏବଂ 'ସୁଭଦ୍ରା ପରିଣୟ' କାବ୍ୟର ଗୌରବ ଅର୍ଜନ କଲାବେଳେ ଅନ୍ୟଗୁଡ଼ିକ କବିତା ଗୁଚ୍ଛ ଭାବରେ ପ୍ରତିଷ୍ଠା ଅର୍ଜନ କରିଛନ୍ତି । ତାଙ୍କର ସ୍ୱର୍ଣ୍ଣକାତର କବିଚିତ୍ତ ଆକାଶରୁ ସାଉଁଟି ଆଣିଛି ଇନ୍ଦ୍ରଧନୁର ସପ୍ତରଙ୍ଗ ଏବଂ ଧରିତ୍ରୀରୁ ମଧୁମଞ୍ଜୁଳ ଭାବସମ୍ଭାର । ସରଳ ଲଳିତ ଭାଷାରେ କବି ହୃଦୟର ଭାବ ହୋଇଛି ମୂର୍ତ୍ତିମନ୍ତ । ପାଠକର ମନ ତାଙ୍କ ସୃଷ୍ଟି ସମ୍ଭାରର ଛତ୍ରେଛତ୍ରେ ପାଇଛି ଆନନ୍ଦର ଅପୂର୍ବସନ୍ଧାନ । ପ୍ରକୃତି ଚିତ୍ରଣର ଉଦ୍‌ଭାସରେ ପାଠକର ମନ ନେତ୍ର କେତେବେଳେ ଝଲସିଯାଇଛି ତ ଆଉ କେତେବେଳେ ଦେଶପ୍ରେମର ପବିତ୍ର ପ୍ରବାହରେ ସିକ୍ତ ହୋଇଯାଇଛି ।

ଦେଶ ଓ ଜାତିର ଯଶଗାନ ତଥା ଜୟଗାନରେ ଶତମୁଖ ହୋଇ କବି ଶ୍ରୀମତୀ ପଟ୍ଟନାୟକ ଯେଉଁ କେତେକ କବିତା ରଚନା କରିଛନ୍ତି, ସେଥିମଧ୍ୟରୁ ପ୍ରତ୍ୟେକ କବିତା ହୋଇଛି ଆକର୍ଷଣୀୟ ଓ ଆଦରଣୀୟ ।

ସ୍ୱତଃସ୍ଫୂର୍ତ୍ତତା ତାଙ୍କ କବିତାର ମର୍ମବାଣୀ । କୋଇଲିର କୁହୁତାନ, ନଦୀର ତରଙ୍ଗ, ଫୁଲର ବିକାଶ ପରି ସ୍ୱତଃସ୍ଫୂର୍ତ୍ତ ହୋଇଛି ତାଙ୍କର ଭାବନା । କବିଚିତ୍ତ ତାଙ୍କର କେତେବେଳେ ହଜିଯାଇଛି ଦୂର ଆକାଶର ସୀମାହୀନ ନୀଳବଳୟରେ, ଆଉ କେତେବେଳେ ମାଟିର ମଧୁ ମହକରେ । ବହୁ ଭାବର ମହାମିଳନ ତୀର୍ଥ ଭାବରେ କବି ମନର ସ୍ଥିତି ହୋଇଛି ସ୍ୱତନ୍ତ୍ର ଓ ଅଭିନବ । ଭାବବିଭୋରତା ହୋଇଛି ତାଙ୍କର ବହୁ କବିତାର ଅନ୍ତଃସ୍ୱର ।

'ସପ୍ତରଶ୍ମି' ହେଉଛି ଶ୍ରୀମତୀ ପଟ୍ଟନାୟକଙ୍କର ଏକ ଅନବଦ୍ୟ କୃତି । ଏଥିରେ ସାତଜଣ ଭାରତୀୟ ମହିୟସୀ ମହିଳାଙ୍କର ମହତ୍ତ୍ୱ ପ୍ରସଙ୍ଗ ଉପସ୍ଥାପିତ । ସେମାନଙ୍କ ମଧ୍ୟରେ ସୀତା, ସାବିତ୍ରୀ, ଦୁର୍ଗାବତୀ, ଲକ୍ଷ୍ମୀବାଈ, ଶୁକଦେଈ, ପଦ୍ମିନୀ, ସଂଯୁକ୍ତା ଅନ୍ତର୍ଭୁକ୍ତ । କବିତାଗୁଡ଼ିକର ନାମକରଣ ଏହପରି - ବନବାସିନୀ ସୀତା, ସାବିତ୍ରୀ, ଦୁର୍ଗାବତୀ, ଲକ୍ଷ୍ମୀବାଈ, ବୀରାରାଣୀ ଶୁକଦେଈ, ପଦ୍ମିନୀ, ସ୍ୱୟମ୍ବରେ ସଂଯୁକ୍ତା । ପୁସ୍ତକଟି ୧୯୫୭ ମସିହାରେ ରଚିତ । ଏଥିରେ ଭାରତୀୟ ସଂସ୍କୃତିରେ ଥିବା ନାରୀତ୍ୱର ଦୀପ୍ତିମୟତା ପ୍ରକଟିତ ହେବା ସଙ୍ଗେସଙ୍ଗେ ଉତ୍ତରଦାୟାଦମାନଙ୍କ ପାଇଁ ସମୁଚିତ ଦିଗଦର୍ଶନ ରହିଛି । ଦେଶାତ୍ମବୋଧର ନିଦର୍ଶନ ପୁସ୍ତକର ଛତ୍ରେଛତ୍ରେ ପ୍ରକଟିତ । ରାମାୟଣର କଥାବସ୍ତୁକୁ ନେଇ 'ବନବାସିନୀ ସୀତା' କବିତା ରଚିତ ହେଲେ ହେଁ ଏଥିରେ କବିଙ୍କର ଭାବାନୁସାରୀ ଶବ୍ଦଯୋଜନା ଅତ୍ୟନ୍ତ ହୃଦୟଗ୍ରାହୀ । ବନଭୂମିରେ ନିର୍ବାସିତା ସୀତାଙ୍କର ମର୍ମନ୍ତୁଦ ଯନ୍ତ୍ରଣାର ଚିତ୍ର ପରିବେଷିତ ହୋଇଛି । ସୀତାଙ୍କର ଭୂଲୁଣ୍ଠିତ ଦୃଶ୍ୟ କବିଙ୍କ ଲେଖନୀରେ ଏହିପରି ଅଭିବ୍ୟକ୍ତ -

'ଲୀଳା ସୌଦାମିନୀ ଲୋଟିପଡ଼େ କି ଭୂତଳେ
ଲୀଳା - କମଳା ଚଞ୍ଚଳା କିବା ଧରାକୋଳେ'

ଭାରତୀୟ ସଂସ୍କୃତିର ପୁଣ୍ୟ ସୌରଭରେ ସୀତା ଚରିତ୍ର ଯୁଗେ ଯୁଗେ ସୁରଭିତ । ସେହି ଚରିତ୍ରର ମହନୀୟତାକୁ ରୂପାୟିତ କରିବା ନିମନ୍ତେ କବି ଯଥା ସମ୍ଭବ ପ୍ରଯତ୍ନ କରିଛନ୍ତି । ଆଧୁନିକ ଯୁଗରେ ମଧ ଏପରି ଚରିତ୍ରର ମହତ୍ତ୍ୱ ଅବିସମ୍ବାଦିତ ହୋଇ ରହିଛି । ଏତେବେଳେ ଭାରତୀୟ ନାରୀ ସମାଜ ସୀତାଙ୍କ ଆଦର୍ଶରେ ପ୍ରଭାବିତ ହେବା ଏକାନ୍ତ କାମ୍ୟ ବୋଲି ମତଦେଇ ସ୍ୱାମୀ ବିବେକାନନ୍ଦ କହିଛନ୍ତି -"ଭାରତର ନାରୀମାନଙ୍କୁ ଆଧୁନିକ କରିବା ଉଦ୍ଦେଶ୍ୟରେ ଯଦି ଆମେ ସେମାନଙ୍କୁ ସୀତାଙ୍କ ଆଦର୍ଶରୁ ବିଚ୍ୟୁତ କରିବାର

ଚେଷ୍ଟାକରିବୁ, ତେବେ ଆମର ସକଳ ଉଦ୍ୟମ ହିଁ ବିଫଳ ହେବ ।'' ଆଲୋଚ୍ୟ କବିତାରେ ଗଙ୍ଗାଧର ମେହେରଙ୍କର 'ତପସ୍ୱିନୀ' କାବ୍ୟର ପ୍ରଭାବ ସ୍ପଷ୍ଟ ହେଲେ ହେଁ କବିଙ୍କର ବର୍ଣ୍ଣନାପାଟବ ଯେ ଅତ୍ୟନ୍ତ ମର୍ମସ୍ପର୍ଶୀ, ଏଥିରେ ବହୁଭାଷଣ ନାହିଁ ।

'ଦୁର୍ଗାବତୀ' କବିତାରେ ବୀରତ୍ୱର ଝମକଝଙ୍କାର ପ୍ରତିଧ୍ୱନିତ । ଚନ୍ଦେଲ ବଂଶୀୟ ରାଜା ଶାଳିବାହାନଙ୍କର ଦୁହିତା ଦୁର୍ଗାବତୀଙ୍କୁ ଗଡ଼ରାଜ୍ୟର ରାଜା ଦଲପତ୍ ସିଂହ ବିବାହ କରିଥିଲେ । ପୁତ୍ର ବୀରନାରାୟଣର ଜନ୍ମପରେ ରାଜା ଦଲପତ୍ ମୃତ୍ୟୁ ବରଣ କରିଥିଲେ । ଫଳତଃ ରାଣୀ ଦୁର୍ଗାବତୀଙ୍କୁ ରାଜ୍ୟର ଶାସନ ଓ ସୁରକ୍ଷାଭାର ନେବାକୁ ପଡ଼ିଥିଲା । ରାଣୀଙ୍କର ରଣନୈପୁଣ୍ୟ ଅସାଧାରଣ ଥିଲା । ମୋଗଲ ସମ୍ରାଟ ଆକବରଙ୍କ ସେନାପତି ଆସଫ ଖାଁ ସେତେବେଳେ ରାଣୀଙ୍କର ଯଶଗାଥା ଶୁଣି ବିସ୍ମିତ ହୋଇଥିଲେ । ଗଡ଼ରାଜ୍ୟକୁ କବଳିତ କରିବା ପାଇଁ ବହୁ ପ୍ରକାରେ ସେ ଚେଷ୍ଟା କରିଥିଲେ । ଖ୍ରୀ:ଅ ୧୫୬୪ରେ ଆସଫ ଖାଁ ଛ' ସହସ୍ର ଅଶ୍ୱାରୋହୀ ଓ ଦଶସହସ୍ର ପଦାତିକ ସେନା ସହ ଗଡ଼ମଣ୍ଡଳକୁ ଆକ୍ରମଣ କରିବା କଥା ଇତିହାସରୁ ଜଣାଯାଏ । ଅସୀମ ସାହସର ସହ ଦୀର୍ଘ ସମୟଧରି ଯୁଦ୍ଧ କଲାପରେ ପ୍ରତିପକ୍ଷର ଶରାଘାତରେ ଆହତ ଦୁର୍ଗାବତୀ ପରାଜିତ ହୋଇ ମଧ ଶତ୍ରୁକବଳିତ ହେବାକୁ ଚାହିଁନଥିଲେ । ତାହା ପୂର୍ବରୁ ସେ ନିଜହାତରେ ଛୁରିକାଘାତରେ ମୃତ୍ୟୁବରଣ କରି ଅସୀମ ବୀରତ୍ୱର ପରିଚୟ ଦେଇଥିଲେ । କବିଙ୍କ ଭାଷାରେ-

'ରଣଭୂମିର ବକ୍ଷେଲୋଟିଲେ
ମହିଳା - ମହଲ ଧ୍ରୁବତାରା
ପୁଷ୍ପଭୂଷଣ ବର୍ଜିଣ ଅଙ୍ଗ
ବରଣ କଲା ରକ୍ତଧାରା'

'ସାବିତ୍ରୀ' କବିତାଟି ଅମିତ୍ରାକ୍ଷର ଛନ୍ଦରେ ରଚିତ । ବନବର୍ଣ୍ଣନାର ବିମଳ ଆଲେଖ୍ୟ ଯଥାଯୋଗ୍ୟ ଶବ୍ଦମାଳାରେ ଏଥିରେ ଅଙ୍କିତ । କବିତାର କଥାବସ୍ତୁ ମହାଭାରତର ବନପର୍ବରୁ ଆନୀତ । କବିଙ୍କ ଲେଖନୀରେ ଉକ୍ତ କଥାବସ୍ତୁ ସାହିତ୍ୟିକ ସୁଲଳିତ ସ୍ପର୍ଶପାଇ ପାଠକୀୟ ଶ୍ରଦ୍ଧା ଅର୍ଜନ କରିଛି । ସତ୍ୟବାନଙ୍କ ମୃତ୍ୟୁରେ ସାବିତ୍ରୀଙ୍କର ବିଳାପଧ୍ୱନି କବିଙ୍କ ହୃଦୟରେ ଶତ ପ୍ରତିଧ୍ୱନି ତୋଳିଛି । କବି କହିଛନ୍ତି-

'ବ୍ୟାକୁଳେ ଲୋଟିଲା ତଳେ, କାନନ କେତକୀ
ଧୂଳି ଧୂସରିତା ସତେ, ବୃନ୍ତଚ୍ୟୁତା ହୋଇ
କି'ଅବା କନକ ଗୌରୀ ଶିବ ବିହୁନରେ
ଲୋଟନ୍ତି କନ୍ଦର କୋଳେ, ବ୍ୟଥା ଗୀତ ଗାଇ'

ଶିବପାର୍ବତୀଙ୍କ ନାମ ଉଲ୍ଲେଖ କରିବା ଏଠାରେ ଅଧିକ ଯୁକ୍ତିଯୁକ୍ତ ହୋଇଛି । ସୀତାରାମଙ୍କ ନାମ ଉଲ୍ଲେଖ କରିଥିଲେ ତାହା ଯୁକ୍ତିସଙ୍ଗତ ହୋଇନଥାନ୍ତା କାରଣ ରାମଙ୍କ ସହ ବର୍ଣ୍ଣସାଦୃଶ୍ୟ ସତ୍ୟବାନ୍‌ଙ୍କର ନଥିଲା, ବରଂ ଶିବଙ୍କ ସହ ବର୍ଣ୍ଣସାଦୃଶ୍ୟ ସତ୍ୟବାନଙ୍କର ଥିଲା । ଅର୍ଥାତ୍ ସତ୍ୟବାନଙ୍କର ବର୍ଣ୍ଣ ଗୌର ଥିଲା । ଏଥିରୁ କବିଙ୍କର ସୂକ୍ଷ୍ମ ଅନୁଶୀଳନ ସାମର୍ଥ୍ୟ ବାରିହୋଇପଡ଼େ ।

ଲକ୍ଷ୍ମୀବାଈଙ୍କର ଦୀପ୍ତବ୍ୟକ୍ତିତ୍ୱ ଓ ବୀରବିକ୍ରମ ଅନନ୍ୟ । ନିଜ ରାଜ୍ୟରକ୍ଷା, ସମ୍ମାନର ସୁରକ୍ଷା ଓ ପ୍ରଜାମାନଙ୍କର କଲ୍ୟାଣକଳ୍ପେ ରଣାଙ୍ଗନରେ ଅବତୀର୍ଣ୍ଣ ହେବାର ଆହ୍ୱାନକୁ ସେ ବିନାଦ୍ୱିଧାରେ ଗ୍ରହଣ କରିଥିଲେ । ଇଂରେଜ ଫଉଜସହ ଯୁଦ୍ଧ କରି ସେ ପରାସ୍ତ ହେଲେ ମଧ୍ୟ ନିଜର ବୀରତ୍ୱ ମାଧ୍ୟମରେ କେବଳ ଝାନ୍‌ସୀର ନୁହେଁ ସମଗ୍ର ଭାରତବର୍ଷର ମହତ୍ତ୍ୱକୁ ସୁରକ୍ଷିତ କରିରଖିବା ସଙ୍ଗେସଙ୍ଗେ ନାରୀଜାତିର ମର୍ଯ୍ୟାଦାକୁ ବହୁଗୁଣିତ କରିଯାଇଛନ୍ତି । ଦୀର୍ଘଦିନ ଧରି ଚାଲିଥିବା ଯୁଦ୍ଧରେ ଲକ୍ଷ୍ମୀବାଈଙ୍କ ଅପୂର୍ବ ସାହସରେ ବିସ୍ମିତ ହୋଇ ଇଂରେଜ ସୈନ୍ୟମାନେ ଭାରତୀୟ ନାରୀର ଶକ୍ତି ଓ ସାମର୍ଥ୍ୟକୁ ପ୍ରଶଂସା ନ କରି ରହିପାରି ନାହାନ୍ତି । କବିଙ୍କ ଭାଷାରେ -

**'ବିକ୍ରମରେ ନାରୀ ସିଂହୀରୂପଧରି**
**ଚାଲିଲେ, ରଣ ନିଶି ଦିବସ**
**ଦୀର୍ଘ ଦିନ ବ୍ୟାପି ଯୁଦ୍ଧ ବିଭୀଷିକା**
**ନ ହେଲେ ତିଳେ କେହି ଅବଶ'**

'ବୀରାରାଣୀ ଶୁକଦେଈ' କବିତାର ଆବେଦନ ସ୍ୱତନ୍ତ୍ର । ବାଙ୍କିର ରାଜା ଖୋରଧାର ରାଜାଙ୍କ ଦ୍ୱାରା ପରାଜିତ ହୋଇ ମୃତ୍ୟୁ ଦଣ୍ଡରେ ଦଣ୍ଡିତ ହେଲେ । ଏ ସମ୍ବାଦ ପାଇ ରାଣୀ ଶୁକଦେଈ ବୀରବେଶରେ ଅବତୀର୍ଣ୍ଣହେଲେ ଏବଂ ଖୋରଧାର ରାଜାଙ୍କ ସହ ଯୁଦ୍ଧକଲେ । ଯୁଦ୍ଧରେ ଖୋରଧାର ରାଜା ପରାସ୍ତ ଓ ବନ୍ଦୀ ହେଲେ । ପରାଜିତ ଖୋରଧାରାଜା ନିଜେ ବାଙ୍କୀ ରାଣୀଙ୍କ ଦ୍ୱାରା ନିହତ ହେବାକୁ ପରାମର୍ଶ ଜଣାଇଲେ । ଏ କଥା ଶୁଣି ରାଣୀ ଶୁକଦେଈ ଅନ୍ୟ ଜଣେ ନାରୀର ବୈଧବ୍ୟର କାରଣ ହେବାପାଇଁ ସମ୍ମତ ହେଲେ ନାହିଁ । ପ୍ରତିଶୋଧ ଯେ ଏକ ମାରାତ୍ମକ ଶତ୍ରୁ ଯାହା ଅନ୍ତରକୁ ଟିକ୍‌ଟିକ୍ କରି ଖାଇଯାଏ- ଏକଥା ରାଣୀ ଅନୁଭବ କରିଥିଲେ । ରାଣୀଙ୍କ ମୁଖରେ କବିଙ୍କ ଭାଷା ଏହିପରି-

**'ରମଣୀ ମୁଁ ରମଣୀର ଚିର ସର୍ବନାଶ**
**କରି ନପାରିବି କରେ, କହି ଶୁକଦେଈ**
**ମୁକ୍ତ କଲେ ରାଜ କରୁ ଶୃଙ୍ଖଳର ପାଶ**
**ଦୟା, କ୍ଷମା, ପ୍ରୀତିଧାରା ବକ୍ଷେ ଢାଳିଦେଇ'**

ରାଣୀଙ୍କର ମାନବିକ ମୂଲ୍ୟବୋଧର ତୁଳନା ନାହିଁ । ନିଜର ମାନବିକତା ବଳରେ ମଣିଷ ଦିବ୍ୟତ୍ୱ ଅର୍ଜନ କରେ ଏବଂ ମରି ମଧ୍ୟ ଅମରହୋଇ ରହିପାରେ- ଏହି ଦିଗ୍‌ଦର୍ଶନ ଆଲୋଚ୍ୟ କବିତାରୁ ମିଳୁଅଛି ।

'ପଦ୍ମିନୀ' ଶୀର୍ଷକ କବିତାରେ ପଦ୍ମିନୀଙ୍କର ବିଚାରବୋଧ ଓ ପ୍ରତ୍ୟୁତ୍ପନ୍ନମତିତା ଉପସ୍ଥାପିତ ହେଲାବେଳେ 'ସ୍ୱୟମ୍ବରେ ସଂଯୁକ୍ତା' କବିତାରେ ସଂଯୁକ୍ତାଙ୍କର ରଣରଙ୍ଗିନୀ ରୂପର ଚିତ୍ର ପ୍ରକଟିତ ହୋଇଛି । ଭାରତୀୟ ନାରୀ ଯେ ଏକାଧାରରେ ସ୍ନେହମୟୀ, ଶକ୍ତିମୟୀ ଓ ମର୍ଯ୍ୟାଦାସମ୍ପନ୍ନା, ଏହା ଏହି କବିତାଗୁଚ୍ଛ 'ସପ୍ତରଶ୍ମି' ଉଦ୍‌ଘୋଷଣା କରୁଅଛି ।

କବି ଶ୍ରୀମତୀ ପଟ୍ଟନାୟକ ଜାତୀୟତାବୋଧ ଏବଂ ମାନବିକତାବୋଧ ଉପରେ ଯଥେଷ୍ଟ ଗୁରୁତ୍ୱ ଆରୋପ କରିଛନ୍ତି । ଭାରତୀୟ ସଂସ୍କୃତି ତଥା ଉତ୍କଳୀୟ ସଂସ୍କୃତିର ଗୁରୁ ଗୌରବରେ ସେ ହୋଇଛନ୍ତି ଆହ୍ଲାଦିତା । ଭାରତୀୟ ସଂସ୍କୃତିର ନିଜସ୍ୱ ପ୍ରଚୁର ଜୀବନୀ ଶକ୍ତି ରହିଛି, ଯାହା ବଳରେ ବହୁ ଘାତ- ପ୍ରତିଘାତ ସହି ତାହା ଆଜି ମଧ୍ୟ ବଞ୍ଚି ରହିଛି ବୋଲି କବି ଉଲ୍ଲେଖ କରିଛନ୍ତି ।

ଭାରତବର୍ଷ ହେଉଛି ତ୍ୟାଗ, ତିତିକ୍ଷାର ଦେଶ, ମହାନୁଭବତାର ଦେଶ, ମାନବବାଦର ମୂଳଭୂମି । ଯୁଗେ ଯୁଗେ ଏଠାରୁ ଶୁଭେଚ୍ଛାର ଭାବ ତରଙ୍ଗ ସମଗ୍ର ବିଶ୍ୱକୁ ପ୍ରସରି ଯାଇଛି । ଏହି ପରିପ୍ରେକ୍ଷାରେ ସ୍ୱାମୀବିବେକାନନ୍ଦଙ୍କ ଉକ୍ତି ସ୍ମରଣକୁ ଆସେ- "Sacred Motherland is a land of religion and philosophy, the birth place of Spiritual Giants, the land of renunciation, where and where alone, from the most, ancient to the most modern times, there has been the highest ideal of life open to man." ଅର୍ଥାତ୍‌- ଆମର ପବିତ୍ର ମାତୃଭୂମି ଧର୍ମଦର୍ଶନର ଦେଶ, ଆଧ୍ୟାତ୍ମିକ ମହାମାନବମାନଙ୍କର ଜନ୍ମସ୍ଥାନ,ତ୍ୟାଗର କ୍ଷେତ୍ର ଯେଉଁଠାରେ ଏବଂ ଯେଉଁଠାରେ ହିଁ ଅତିପୁରାଣକାଳରୁ ଅଧୁନାତନ ସମୟ ପର୍ଯ୍ୟନ୍ତ ଜୀବନର ଶ୍ରେଷ୍ଠ ଆଦର୍ଶ ସମ୍ମୁଖରେ ଉପସ୍ଥାପିତ ହୋଇଆସିଛି ।

'ସ୍ୱର୍ଣ୍ଣରେଣୁ' କବିତା ଗ୍ରନ୍ଥରେ ସନ୍ନିବେଶିତ 'ଭାରତମାତା' କବିତାରେ ବ୍ୟାସ, ବାଲ୍ମୀକିଙ୍କ ଠାରୁ ଆରମ୍ଭ କରି ରବୀନ୍ଦ୍ରନାଥ, ବଙ୍କିମଚନ୍ଦ୍ରଙ୍କ ପର୍ଯ୍ୟନ୍ତ ବହୁ କବିଙ୍କ ପ୍ରତି ସେ ସମ୍ମାନ ଜଣାଇଛନ୍ତି । ପରାଧୀନ ଭାରତର ମୁକ୍ତିପାଇଁ ସଂଗଠିତ ସ୍ୱାଧୀନତା ଆନ୍ଦୋଳନ ସଂପର୍କରେ ରଚିତ କବିତାଗୁଡ଼ିକ

ତାଙ୍କର ଅତ୍ୟନ୍ତ ଆକର୍ଷଣୀୟ । ମହାତ୍ମାଗାନ୍ଧୀଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିଛନ୍ତି କବି ଶ୍ରୀମତୀ ପଟ୍ଟନାୟକ । ତତ୍କାଳୀନ ପରିବେଶର ଆହ୍ୱାନରେ ସମାଜର ବିଭିନ୍ନ ଗୋଷ୍ଠୀ କିପରି ସଚେତନ ହୋଇ ଉଠିଥିଲେ, ସେ କଥା କହିବାକୁ ଯାଇ କବି କହିଛନ୍ତି –

*'ଛାତ୍ର ତେଜିଲେ ବିଦ୍ୟା*
*କର୍ମଚାରୀ ଏ କର୍ମ*
*କୃଷକ ଭୁଲିଲେ କୃଷିର ଧନ୍ଦା*
*ଭକ୍ତ ଭୁଲିଲେ ଧର୍ମ ।'*

*(ଭାରତ-ସ୍ୱାଧୀନତା ସଂଗୀତ)*

'ସୈନିକର ବିଦାୟ' ଶୀର୍ଷକ କବିତାରେ ଜଣେ ସୈନିକର ମୁଖରେ ଦେଶପ୍ରେମର ବାର୍ତ୍ତା ଅଭିବ୍ୟକ୍ତ ।

*'ସଇନିକ ସେ ନପାରିବ ରହି*
*ପ୍ରିୟାର ପଣତ ତଳେ*
*ଅଗ୍ରଦୂତ ସେ ଅଗ୍ରେ ଚାଲିବ*
*ତୋପ କମାଣର ତାଳେ ।'*

କବିଙ୍କର ଅନ୍ୟତମ କବିତା 'ସୈନିକର ଅଭିଯାନ'ରେ ଦେଶପ୍ରେମର ରୂପାୟାନ ଅତୀବ ଆକର୍ଷଣୀୟ । ଜୀବନଠାରୁ ଦେଶର ସମ୍ମାନ ବଡ଼, ଦେଶ ସେବା ହିଁ ଶ୍ରେଷ୍ଠ କର୍ମ ବୋଲି ଏଥିରେ କୁହାଯାଇଛି । ଏହି ଦେଶକୁ ଶତ୍ରୁ କବଳିତ କରିବାର ଦୃଶ୍ୟ ସୈନିକ ପକ୍ଷରେ ଆଦୌ ସହନୀୟ ହୋଇନାହିଁ । ଶତ୍ରୁରଭେରୀ ଶବ୍ଦ ଶୁଣି ଅସ୍ଥିର ହୋଇଛି ସୈନିକର ମନ । ସେ ଯୁଦ୍ଧକ୍ଷେତ୍ରକୁ ସହସା ବାହାରି ପଡ଼ିଛି ।

*'ଦେଶମାତୃର ଅର୍ଚ୍ଚନା ସାଥେ*
*ଜୀବନ ନୁହେଁରେ ବଡ଼*
*ଲାଗୁରେ ମୃତ୍ୟୁ ଶୀତଳ ସ୍ପର୍ଶ*
*ହୋଇଯାଏ ପଛେ ଜଡ଼ ।'*

ଦେଶପ୍ରୀତିରେ ଉଦ୍‌ବୁଦ୍ଧ କବିମାନସ ସ୍ୱରଚିତ କବିତା ମାଧ୍ୟମରେ ନିଜର ଭାବଧାରାକୁ ପ୍ରକାଶ କରିଛି । କବିଙ୍କର ଅନ୍ୟତମ ସାର୍ଥକ କବିତା 'ଏଇ ମୋ ଦେଶ'ରେ ଦେଶମାତୃକାର ଜୟଗାନ କରାଯାଇଛି । ଦେଶର ଶହିଦମାନଙ୍କୁ ସ୍ମରଣ ପୂର୍ବକ କବି ସେମାନଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି

ଅର୍ପଣ କରିଛନ୍ତି । ମହାତ୍ମାଗାନ୍ଧୀ, ସୁବାସ ବୋଷ, ଲାଲା ଲଜପତରାୟ, ଜବାହାରଲାଲ, ଲାଲ ବାହାଦୂର ଏବଂ ଓଡ଼ିଶାର ବାଜିରାଉତ, ଲକ୍ଷ୍ମଣ ନାୟକ ଇତ୍ୟାଦି ବୀର ପୁରୁଷମାନଙ୍କର କୃତିତ୍ୱକୁ ସ୍ମରଣ କରିଛନ୍ତି । ଦେଶର ମହତ୍ତ୍ୱକୁ ଅବତାରଣା କରିବାକୁ ଯାଇ କବି କହିଛନ୍ତି –

*'ଏଇ ମୋ ଦେଶର ପହିଲି ସୂର୍ଯ୍ୟ*
*କିରଣ ବିଛେ ଦୂରେ*
*ଏଇ ମୋ ଦେଶର ତଟିନୀ କଣ୍ଠେ*
*ସଂଗୀତ ଭରପୂରେ ।'*

କବିଙ୍କର ମୁଗ୍ଧ ଅନୁଭବରେ ଦେଶର ପ୍ରତି ଜଳବିନ୍ଦୁ ହୋଇଛି ଅମୃତର ବିନ୍ଦୁ, ଧୂଳିକଣା ହୋଇଛି ସୁବାସ ଚନ୍ଦନ, ଫୁଲ ହୋଇଛି ନନ୍ଦନକାନନର ସୁଗନ୍ଧସୁମନ । ଭାରତ ବର୍ଷର ଉନ୍ନତିରେ ବିଶ୍ୱର ଉନ୍ନତି । ଚାରିଯୁଗରେ ଯୁଗପରିବର୍ତ୍ତନ ଓ ନୂତନ ଯୁଗ ଗଠନର ବାର୍ତ୍ତା ଭାରତବର୍ଷରୁ ବିଚ୍ଛୁରିତ ହୋଇଛି । ଭାରତୀୟ ଜାତୀୟତା ଓ ଉତ୍କଳୀୟ ଜାତୀୟତା ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା କରିଛନ୍ତି କବି ଶ୍ରୀମତୀ ପଟ୍ଟନାୟକ । ସେ ମର୍ମେମର୍ମେ ଉପଲବ୍ଧି କରିଛନ୍ତି 'କପିଳ ସଂହିତା'ର ଉକ୍ତିଟିର ଯଥାର୍ଥତାକୁ -

***'ବର୍ଷାଣାଂ ଭାରତଃ ଶ୍ରେଷ୍ଠୋ ଦେଶାନାଂ ଉତ୍କଳଃ ସ୍ମୃତଃ ।***
***ଉତ୍କଳସ୍ୟ ସମୋ ଦେଶୋ ଦେଶୋ ନାସ୍ତି ମହୀତଳେ ॥'***

ଭାରତୀୟ ସଂସ୍କୃତିର ମହତ୍ତ୍ୱ ଓ ମୂଲ୍ୟବୋଧ ଅନନ୍ୟ ସାଧାରଣ । ଜୀବନର ଲକ୍ଷ୍ୟକୁ ବୁଝି ଅନ୍ୟକୁ ବୁଝାଇଦେବାର ସାମର୍ଥ୍ୟ ଏଥିରେ ଥିବାରୁ ସମଗ୍ର ବିଶ୍ୱ ପାଇଁ ଏହାର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସମଗ୍ର ମାନବଜାତିର ନବଜନ୍ମ ସକାଶେ କର୍ମକରିବାର ଯୋଗ୍ୟତା, କ୍ଷମତା ଓ ଦକ୍ଷତା ଭାରତବର୍ଷର ଅଛି । ପାଶ୍ଚାତ୍ୟର ବିଜ୍ଞାନ, ଯୁକ୍ତି, ଉନ୍ନତିଶୀଳତା ସହ ପ୍ରାଚ୍ୟର ଆଧ୍ୟାତ୍ମିକତାକୁ ସମନ୍ୱିତକରି ଭାରତ ଦେବ ଏକ ନୂତନ ଦିଗ୍‌ଦର୍ଶନ । ନିଜତ୍ୱ ଉପରେ ପ୍ରତିଷ୍ଠିତ ରହି ସେ ପୃଥିବୀର ନେତୃତ୍ୱ ନେବ, ଭାରତ ହେବ ପୃଥିବୀର ଗୁରୁ । ଭାରତର ସୁରକ୍ଷା ହିଁ ପୃଥିବୀର ସୁରକ୍ଷା । ଶ୍ରୀମାଙ୍କ ମତରେ " ପୃଥିବୀର କଲ୍ୟାଣ ନିମିତ୍ତ ଭାରତକୁ ରକ୍ଷାକରିବାକୁ ହେବ, କାରଣ ଭାରତ ହିଁ ଏକମାତ୍ର ଦେଶ ଯାହା ଶାନ୍ତି ଓ ନୂତନ ସାମାଜିକ ଶୃଙ୍ଖଳା ସ୍ଥାପନ କରିବାରେ ପୃଥିବୀକୁ

ନେତୃତ୍ୱ ଦେବ ।'' ଏପରି ମହିମାମୟ ଦେଶର ପ୍ରଶସ୍ତି ଗାନ କରି ବଙ୍କିମଚନ୍ଦ୍ର ସେଦିନ କହିଥିଲେ-

' ନମାମି କମଳାଂ ଅମଳାଂ ଅତୁଳାଂ
ସୁଜଳାଂ ସୁଫଳାଂ ମାତରମ୍
ଶ୍ୟାମଳାଂ ସରଳାଂ ସୁସ୍ମିତାଂ ଭୂଷିତାଂ
ଧରଣୀଂ ଭରଣୀଂ ମାତରମ୍'

ଅନ୍ୟ ଦେଶର କେତେକ ଚିନ୍ତାବିତ୍ ମଧ ଭବିଷ୍ୟତ ଭାରତର ଚିତ୍ର ପ୍ରଦାନ କରିଛନ୍ତି । ସେମାନେ କହିଛନ୍ତି ଯେ ଭାରତରୁ ବିଚ୍ଛୁରିତ ହେବ ସମଗ୍ର ବିଶ୍ୱକୁ ମାନବିକତାର ମହାମନ୍ତ୍ର । ଏହି ପରିପ୍ରେକ୍ଷୀରେ ଜର୍ମାନ ମନୀଷୀ ମାକସ୍‌ମୁଲରଙ୍କ ଉକ୍ତି ସ୍ମରଣକୁ ଆସେ - "If I were to ask to myself from what literature, we here in Europe, we who have been nurtured almost exclusively at the thoughts of Greek, Romans may draw that corrective which is most wanted in order to make our inner life more perfect, more Universal, infact more truly human, a life, not for this life only but a transfigured and eternal life - I should point to India."

- *(India what can it teach us)*

ଅର୍ଥାତ୍ -''ଯଦି ମୁଁ ନିଜକୁ ପଚାରେ ଆମେ ୟୁରୋପୀୟମାନେ ଯେଉଁମାନେ କି ପୂର୍ଣ୍ଣଭାବରେ ଗ୍ରୀକ୍ ଓ ରୋମାନ ଚିନ୍ତାଧାରାରେ ବଢ଼ି ଆସିଛୁ, ଆମର ଅନ୍ତର୍ଜୀବନକୁ ଆହୁରି ପୂର୍ଣ୍ଣ, ଆହୁରି ସାର୍ବଜନୀନ ଓ ବାସ୍ତବରେ ମାନବିକ କରିବାକୁ ହେଲେ, କେବଳ ଏହି ଜୀବନ ପାଇଁ ନୁହେଁ, ଏକ ରୂପାନ୍ତରିତ ଚିରନ୍ତନ ଜୀବନ ଦିଗରେ ଆମେ ଅଗ୍ରସର ହେଲେ, କେଉଁ ଦେଶର ସାହିତ୍ୟରୁ ଆମେ ଯଥାର୍ଥ ଗଠନମୂଳକ ପ୍ରେରଣା ପାଇବୁ, ତେବେ ମୁଁ ନିର୍ଦ୍ଦେଶ କରିବି, ତାହା ହେଉଛି ଭାରତବର୍ଷ'' ।

କବିଙ୍କର ଅନ୍ତର ଆତ୍ମପ୍ରସାଦରେ ଭରିଯାଇଛି ଏ କଥା ହୃଦୟଙ୍ଗମ କରି ଯେ ଭାରତବର୍ଷରେ ନୂତନ ସକାଳ ଆସିବ, ନବଚେତନାର ଅରୁଣୋଦୟ ଘଟିବ, ଶୁଭଙ୍କର ସ୍ୱର୍ଣ୍ଣାଭ କିରଣରେ ଦିଗଦିଗନ୍ତ ଝଲସି ଉଠିବ । ବିକଶିତ ସେହି ଚେତନାର ସ୍ପର୍ଶରେ ପ୍ରବୁଦ୍ଧ ହୋଇ ଭାରତବର୍ଷ ସମଗ୍ର ବିଶ୍ୱକୁ ଯଥାର୍ଥ ଦିଗ୍‌ଦର୍ଶନ ଦେବ ।





ଡକ୍ଟର ଶରତ ଚନ୍ଦ୍ର ରଥ

**ଡକ୍ଟର ଶରତ ଚନ୍ଦ୍ର ରଥ**ଙ୍କର ଜନ୍ମ ସାକ୍ଷୀଗୋପାଳ ନିକଟସ୍ଥ ବୀରରାମଚନ୍ଦ୍ରପୁର ଶାସନରେ । ସେ କୃତିତ୍ୱର ସହ ବିଭିନ୍ନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ସଙ୍ଗେସଙ୍ଗେ ୧୯୭୭ ମସିହାରେ ଓଡ଼ିଆ ଏମ୍.ଏ. ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ଦୁଇଟି ସ୍ୱର୍ଣ୍ଣପଦକ ଲାଭକରିଥିଲେ । ସାହିତ୍ୟର ସମାଲୋଚନା କ୍ଷେତ୍ରରେ ଲେଖନୀ ଚାଳନା କରିବା ସହିତ ଗୀତି କବିତା ରଚନା କ୍ଷେତ୍ରରେ ମଧ ସେ ଲେଖନୀ ଚାଳନା କରିଛନ୍ତି । ଗୀତି କବିତା ତାଙ୍କ ପ୍ରାଣର ବାଣୀ, ହୃଦୟବାର୍ତ୍ତାର ମୂର୍ତ୍ତ ସ୍ୱରୂପ । ତାଙ୍କର ଆଠଗୋଟି ସମାଲୋଚନା ଗ୍ରନ୍ଥ, ଛଅଗୋଟି ଗୀତି କବିତା ପୁସ୍ତକ ଏବଂ ଗୋଟିଏ ଆଧୁନିକ କବିତା ପୁସ୍ତକ ଅଦ୍ୟାବଧି ପ୍ରକାଶିତ । ନିକଟ ଅତୀତରେ ପ୍ରକାଶିତ ତାଙ୍କର ସଂକଳିତ 'ସାହିତ୍ୟ ସମ୍ବାଦ' ଓ 'ମାତୃକଥାମୃତ' 'ସାବିତ୍ରୀ ଉପାଖ୍ୟାନ' ର ଉପାଦେୟତାକୁ ଓଡ଼ିଆ ସାହିତ୍ୟଜଗତରେ ସମ୍ମାନର ସହ ଗ୍ରହଣ କରାଯାଇଛି । ଭାଷାର ଲାଳିତ୍ୟ, ଉପସ୍ଥାପନା ଶୈଳୀର ମହତ୍ତ୍ୱ ତାଙ୍କର ସ୍ୱତନ୍ତ୍ର ବିଶେଷତ୍ୱ । ଉଭୟ ଗଦ୍ୟ ଓ ପଦ୍ୟ ରଚନା କ୍ଷେତ୍ରରେ ତାଙ୍କର ସ୍ୱର୍ଣ୍ଣକାତର ସ୍ରଷ୍ଟାମାନସ ପ୍ରତ୍ୟେକ ପାଠକକୁ ଆକୃଷ୍ଟ କରିଥାଏ । ସେ ଏବେ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆବିଭାଗରେ ଅଧ୍ୟାପନା ରତ । ଆଜି ଏଇ ଅବସରରେ ତାଙ୍କୁ ସାଦର ଅଭିନନ୍ଦନ ଜଣାଉଛି ।

— ପ୍ରକାଶକ